# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**August- 2020**

୭୭ ଭାଗ ୧ ମ ସଂଖ୍ୟା ଶ୍ରାବଣ–ଭାଦ୍ର ଅଗଷ୍ଟ – ୨୦୨୦



---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ଅଗଷ୍ଟ– ୨୦୨୦





# ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– *ରବୀନ୍ଦ୍ରନାଥ ଠାକୁର*

# ବନ୍ଦେ ମାତରମ୍

ସୁଜଲାମ୍, ସୁଫଲାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।॥

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଓଡ଼ିଶାର ଅମର ଶହୀଦ


ଜୟୀ ରାଜଗୁରୁ




ବୀର ସୁରେନ୍ଦ୍ର ସାଏ






ବାଜି ରାଉତ




ଦିବାକର ପରିଡ଼ା

# ଓଡ଼ିଶାର ଅମର ଶହୀଦ





ରଘୁନାଥ ମହାନ୍ତି





ଲକ୍ଷ୍ମଣ ନାଏକ





ବିର୍ସା ମୁଣ୍ଡା

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ





ଉତ୍କଳମଣି ଗୋପବନ୍ଧୁ ଦାସ







ସ୍ୱଭାବକବି ଗଂଗାଧର ମେହେର





ମହାରାଜା କୃଷ୍ଣଚନ୍ଦ୍ର ଗଜପତି
ନାରାୟଣ ଦେବ

# ନବ ଉତ୍କଳର ନିର୍ମାତାଗଣ



ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ





ପଣ୍ଡିତ ନୀଳକଣ୍ଠ ଦାସ







ବ୍ୟାସକବି ଫକୀରମୋହନ ସେନାପତି





କବିବର ରାଧାନାଥ ରାୟ

# ନବ ଉତ୍କଳର ନିର୍ମାତାଗଣ



ମାଳତୀ ଚୌଧୁରୀ





ମା' ରମାଦେବୀ







ଡକ୍ଟର ହରେକୃଷ୍ଣ ମହତାବ





ମହାନ ଜନନାୟକ ବିଜୁ ପଟ୍ଟନାୟକ



ପୁରୀ ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖ ଭାଗ ତୋରଣ ମାଳାରେ ଶୋଭିତ ।



କୋଭିଡ୍-୧୯କୁ ଦୃଷ୍ଟିରେ ରଖି ରଥଯାତ୍ରା ପ୍ରସ୍ତୁତି ଅବସରରେ ପୁରୀଠାରେ
ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ୍ ତ୍ରିପାଠୀ ଓ ଆରକ୍ଷୀ ମହାନିର୍ଦ୍ଦେଶକ ଶ୍ରୀ ଅଭୟ ।





କରୋନା ଭୂତାଣୁର ବ୍ୟାପକତାକୁ ରୋକିବା ନିମନ୍ତେ ବିବିଧ ପଦକ୍ଷେପ ।





ପୁରୀ ରଥଯାତ୍ରା ନିମନ୍ତେ ପ୍ରସ୍ତୁତ ରଥ  ଓ ରଥୀ ।




ଶ୍ରୀମନ୍ଦିରରେ ପ୍ରବେଶ ପୂର୍ବରୁ ସେବାୟତମାନଙ୍କର ସ୍କାନିଂ କରାଯାଉଛି ।



କରୋନା ଭୂତାଣୁର ଭୟାବହତା ସତ୍ତ୍ୱେ ପ୍ରତିଷେଧକ ବ୍ୟବସ୍ଥା ସହ ରଥଟଣା ନିମନ୍ତେ ପ୍ରସ୍ତୁତି ।



କୋଭିଡ୍-୧୯ କଟକଣା ଭିତରେ ସେବାୟତମାନଙ୍କ ଦ୍ୱାରା ରଥ ଟଣାଯାଉଛି ।




ଲୋକସେବା ଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ
ଦୂରଦର୍ଶନ ମାଧ୍ୟମରେ କାଳିଆ ଠାକୁରଙ୍କୁ ଭକ୍ତିପୂତ ପ୍ରଣତି ଜଣାଉଛନ୍ତି ।





ଠାକୁରଙ୍କ ନିକଟରେ ଅଧର ପଣା ଲାଗି ।



ଶ୍ରୀବଳଭଦ୍ରଙ୍କ ସୁନାବେଶ ।



ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସୁନାବେଶ ।

# ଲୋକଙ୍କ ଜୀବନ ରକ୍ଷା ପାଇଁ ସମ୍ବଳର ଅଭାବ ରହିବ ନାହିଁ

ଶ୍ରୀ ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ




ଲୋକଙ୍କ ଜୀବନ ରକ୍ଷା ହେଉଛି ଆମର ପ୍ରାଥମିକତା । ତେଣୁ ଲୋକଙ୍କ ଜୀବନ ରକ୍ଷାରେ ସମ୍ବଳ କେବେ ବି ବାଧକ ହେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଦୃଢତାର ସହ ଘୋଷଣା କରିଛନ୍ତି । କୋଭିଡ-୧୯ ସମ୍ପର୍କରେ ବିଧାୟକମାନଙ୍କ ଏକ ସଚେତନତା କର୍ମଶାଳାକୁ ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଲେ ଯେ ଏହି ମହାମାରୀ ବିରୁଦ୍ଧରେ ଲଢେଇରେ ସମ୍ବଳର କେବେ ବି ଅଭାବ ରହିବ ନାହିଁ ।

**କୋଭିଡ ଯୋଦ୍ଧା ଦରମା ପାଇଁ ନୁହେଁ, ଲୋକଙ୍କ ଜୀବନ ରକ୍ଷା ପାଇଁ ମିଶନ ଭଳି ସେବା କରିଚାଲିଛନ୍ତି**

କୋଭିଡ ଯୋଦ୍ଧାମାନଙ୍କର ନିଷ୍ଠା ଓ ତ୍ୟାଗର ଉଚ୍ଚ ପ୍ରଶଂସା କରି ମୁଖ୍ୟମନ୍ତ୍ରୀ କହିଥିଲେ କୋଭିଡ ଯୋଦ୍ଧା ଭାବରେ କାମ କରୁଥିବା ଓଡ଼ିଆ ଭାଇଭଉଣୀମାନେ ଦରମା ପାଇଁ ନୁହେଁ, ଏହି ଲଢେଇକୁ ଏକ ମିଶନ ଭାବରେ ଗ୍ରହଣ କରି ଲୋକଙ୍କ ଜୀବନ ରକ୍ଷା ପାଇଁ ଦିନରାତି ସେବା ଯୋଗାଇ ଚାଲିଛନ୍ତି । ସେମାନଙ୍କ ତ୍ୟାଗ ଓ ନିଷ୍ଠା ସାରା ଓଡ଼ିଶା ପାଇଁ ପ୍ରେରଣା । ସେମାନଙ୍କ ଭିତରେ, ସେମାନଙ୍କ ତ୍ୟାଗରେ ଜଣେ ଜଣେ ଗୋପବନ୍ଧୁ ଦାସ, ମଧୁବାବୁ, ମା' ରମାଦେବୀ ଓ ପାର୍ବତୀ ଗିରି ଭଳି ମହାନ୍ ଦେଶସେବକ ରହିଛନ୍ତି । ସେହି ଯୋଦ୍ଧାମାନଙ୍କ ତ୍ୟାଗକୁ ଓଡ଼ିଆ ଜାତି ସବୁଦିନ ପାଇଁ ମନେ ରଖିବ ଏବଂ ଏହା ଭବିଷ୍ୟତ ପିଢ଼ିକୁ ପ୍ରେରଣା ଦେବ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ କୋଭିଡ ଯୋଦ୍ଧାମାନଙ୍କୁ ଉତ୍ସାହିତ କରିବା ପାଇଁ ସେ ସେମାନଙ୍କ ସହିତ ବ୍ୟକ୍ତିଗତ ଭାବରେ କଥା ହେଉଛନ୍ତି । ଏହି କଷ୍ଟସାଧ୍ୟ ଲଢେଇରେ ସେମାନଙ୍କ ମନୋବଳକୁ ଉଚ୍ଚ ରଖିବା ପାଇଁ ସେମାନଙ୍କ ତ୍ୟାଗକୁ ଆମେ ସମସ୍ତେ ସମ୍ମାନ ଜଣାଇବା ସହିତ ପୂରା ସହଯୋଗ କରିବା ପାଇଁ ମୁଖ୍ୟମନ୍ତ୍ରୀ ଓଡ଼ିଶାବାସୀଙ୍କୁ ନିବେଦନ କରିଥିଲେ ।

ଓଡ଼ିଶା ଆଜି ଏହି ଆହ୍ୱାନକୁ ଦୃଢତାର ସହ ମୁକାବିଲା କରୁଛି । ଏହି ଲଢେଇରେ ସାମିଲ ହୋଇ ଆଗ ଧାଡିରେ ରହି ଅଦୃଶ୍ୟ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ଜାରି ରଖିଥିବା କୋଭିଡ ଯୋଦ୍ଧାମାନଙ୍କ ପ୍ରତି ମୁଖ୍ୟମନ୍ତ୍ରୀ ଗଭୀର କୃତଜ୍ଞତା ଜଣାଇଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସେମାନଙ୍କ କଠିନ ପରିଶ୍ରମ, ତ୍ୟାଗ ଯୋଗୁଁ ଆଜି ଆମ ରାଜ୍ୟର ୧୮ ହଜାର ଲୋକ କୋଭିଡରୁ ଆରୋଗ୍ୟ ଲାଭ କରିଛନ୍ତି । ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଆମେ ଅଧିକ ଲୋକଙ୍କ ଜୀବନ ରକ୍ଷା କରିପାରିଛୁ । ଏକ ଅନିଶ୍ଚିତ ପରିବେଶ ଭିତରେ ନିରନ୍ତର ଭାବରେ କାମ କରିବା ସହଜ କଥା ନୁହେଁ । କିନ୍ତୁ ନିଜେ ସଂକ୍ରମିତ ହେବା ସତ୍ତ୍ୱେ ନିଜ ପରିବାର ଲୋକମାନେ ସଂକ୍ରମିତ ହେବା ସତ୍ତ୍ୱେ ଏବଂ ଅନେକ କ୍ଷେତ୍ରରେ ନିଜେ ମୃତ୍ୟୁବରଣ କରୁଥିଲେ ମଧ୍ୟ, ଆମର କୋଭିଡ ଯୋଦ୍ଧାମାନେ ଯେଭଳି ବୀରତ୍ୱର ସହ ଗତ ୧୫୦ ଦିନ ହେଲା କାମ କରିଚାଲିଛନ୍ତି, ତା'ର ପଟାନ୍ତର ନାହିଁ ।

ଗତ ମାର୍ଚ୍ଚ ୧୩ ତାରିଖରେ ରାଜ୍ୟ ବିଧାନସଭାରେ ତାଙ୍କ ସମ୍ବୋଧନ ବିଷୟରେ ସ୍ମରଣ କରାଇ ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ପୃଥିବୀ ଇତିହାସରେ ବହୁତ କମ୍ ସମୟ ମାନବଜାତି ତା' କଳ୍ପନା ବାହାରେ ଏଭଳି ଏକ ଆହ୍ୱାନର ସମ୍ମୁଖୀନ ହେଇଛି । ପ୍ରାୟ ଗତ ୫ ମାସ ହେଲା ସାରା ବିଶ୍ୱର ବିଭିନ୍ନ ଦେଶକୁ ଏହି ମହାମାରୀ ପ୍ରଭାବିତ କରିଛି । ଏପରିକି ଯେଉଁ ଦେଶମାନେ ମହାମାରୀରୁ ମୁକ୍ତ ହୋଇସାରିଥିଲେ, ସେମାନେ ମଧ୍ୟ ପୁଣି ଥରେ ତା' କବଳକୁ ଆସିଯାଇଛନ୍ତି । ଭାରତର ପ୍ରତ୍ୟେକ ରାଜ୍ୟ ଏହାଦ୍ୱାରା କ୍ଷତିଗ୍ରସ୍ତ ହୋଇଛନ୍ତି ଏବଂ ପ୍ରତି ଦୁଇ ଦିନରେ ଏକ ଲକ୍ଷ ନୂଆ ସଂକ୍ରମିତ ସୃଷ୍ଟି ହେଉଛନ୍ତି । ଭାରତ ଆଜି ବିଶ୍ୱର ତୃତୀୟ ସ୍ଥାନରେ ଅଛି ।

ଓଡ଼ିଶାରେ କୋଭିଡ ରୋଗୀଙ୍କ ଚିକିତ୍ସା ବ୍ୟବସ୍ଥା ସମ୍ପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଯାତ୍ରାରୁ ସଂଗରୋଧ, ପରୀକ୍ଷା, ଟ୍ରାସିଂ, ଚିକିତ୍ସା, ଖାଦ୍ୟ, ରହଣି ସବୁକିଛି ଏଠାରେ କୋଭିଡ ରୋଗୀଙ୍କୁ ମାଗଣାରେ ଯୋଗାଇ ଦିଆଯାଉଛି । ଯେତେବେଳେ ଅନ୍ୟ ରାଜ୍ୟର ଡାକ୍ତରଖାନାଗୁଡିକ କୋଭିଡ ଚିକିତ୍ସା ପାଇଁ ଲକ୍ଷ ଲକ୍ଷ ଟଙ୍କା ଦାବି କରୁଛନ୍ତି, ଓଡ଼ିଶା ସରକାର ସବୁକିଛି ମାଗଣାରେ ଯୋଗାଉଛନ୍ତି । ସାରା ବିଶ୍ୱରେ ଯେକୌଣସି ଅଞ୍ଚଳରେ କୋଭିଡ ରୋଗ ପାଇଁ ଶ୍ରେଷ୍ଠ ଚିକିତ୍ସା ମିଳୁଛି, ତାକୁ ଆମେ ଓଡ଼ିଶାରେ କାର୍ଯ୍ୟକାରୀ କରୁଛୁ ଏବଂ କେହି ଲୋକ ଯେପରି ଏହି ସୁବିଧାରୁ ବଞ୍ଚିତ ନହେବେ, ସେଥିପାଇଁ ମାଗଣାରେ ଯୋଗାଇ ଦେଉଛୁ ।

ଏହି ଅବସରରେ ପ୍ଲାଜମା ଚିକିତ୍ସା ପଦ୍ଧତିର ଉତ୍ସାହଜନକ ସଫଳତା ଏବଂ କୋଭିଡ ଟିକା ସମ୍ପର୍କରେ ସେରମ୍ ଇନ୍‌ଷ୍ଟିଚ୍ୟୁଟରେ ସି.ଇ.ଓଙ୍କ ସହ ତାଙ୍କ ଆଲୋଚନା ବିଷୟରେ ମୁଖ୍ୟମନ୍ତ୍ରୀ ଅବତାରଣା କରିଥିଲେ ।

ମହାମାରୀର କୁପ୍ରଭାବ ସମ୍ପର୍କରେ ଆଲୋଚନା କରି ମୁଖ୍ୟମନ୍ତ୍ରୀ କହିଥିଲେ ଏହି ମହାମାରୀ ଦ୍ୱାରା ପୃଥିବୀର ପ୍ରତ୍ୟେକ ପରିବାର କ୍ଷତିଗ୍ରସ୍ତ ହୋଇଛନ୍ତି । ସ୍ଥାନୀୟ, ଜାତୀୟ ଏବଂ ବିଶ୍ୱସ୍ତରରେ ଅର୍ଥନୀତିକୁ ଏହା ବିପୁଳ ଭାବରେ କ୍ଷତିଗ୍ରସ୍ତ କରିଛି । ଆମ ରାଜ୍ୟ ଓଡ଼ିଶା ବିଭିନ୍ନ ଜୀବିକା କାର୍ଯ୍ୟକ୍ରମ ତଥା ଶିଳ୍ପ ପାଇଁ କିଛି ନୂଆ ଉଦ୍ୟମ ଜରିଆରେ ଅର୍ଥନୀତିକୁ ଚଳଚଞ୍ଚଳ କରିବା ପାଇଁ ଉଦ୍ୟମ କରିଛି । ଏହା ଫଳପ୍ରଦ ହେବ ବୋଲି ମୁଖ୍ୟମନ୍ତ୍ରୀ ଆଶାବ୍ୟକ୍ତ କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଅତୀତରେ ଓଡ଼ିଶା ଅନେକ ବିପର୍ଯ୍ୟୟର ମୁକାବିଲା କରିଛି । ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିବା ଏବଂ ପୁଣିଥରେ ଦୃଢ ଭାବରେ ପୂର୍ବସ୍ଥିତିକୁ ଫେରିଆସିବାର ଶକ୍ତି ପ୍ରତିଟି ଓଡ଼ିଆଙ୍କ ରକ୍ତରେ ରହିଛି । ମହାମାରୀ ଚାଲିଯିବା ପରେ ଓଡ଼ିଶା ଅଧିକ ଦୃଢ ଓ ସମୃଦ୍ଧ ଭାବରେ ତା'ର ସ୍ଥିତି ଜାହିର କରିବ ବୋଲି ମୁଖ୍ୟମନ୍ତ୍ରୀ ଦୃଢ ଆଶାପୋଷଣା କରିଥିଲେ ।

ଏହି ଅବସରରେ ବିଧାନସଭାର ମାନ୍ୟବର ବିଧାୟକମାନେ ବ୍ୟକ୍ତିଗତଭାବେ ନିଜର ଯତ୍ନ ନେବା ସହିତ ସେମାନଙ୍କ ଅଞ୍ଚଳରେ ଏହି ପରିସ୍ଥିତିରେ ପ୍ରେରଣାଦାୟୀ ନେତୃତ୍ୱ ଦେବା ପାଇଁ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ପରାମର୍ଶ ଦେଇଥିଲେ । କୋଭିଡରେ ସଂକ୍ରମିତ ହୋଇଥିବା ୩ଜଣ ବିଧାୟକ ଆରୋଗ୍ୟ ଲାଭ କରିଥିବାରୁ ମୁଖ୍ୟମନ୍ତ୍ରୀ ଆନନ୍ଦବ୍ୟକ୍ତ କରିଥିଲେ ।

ବିଧାୟକମାନେ ସେମାନଙ୍କ ଅଞ୍ଚଳରେ କୋଭିଡ ଯୋଦ୍ଧାମାନଙ୍କର ଯତ୍ନ ନେବା ସହିତ ପ୍ଲାଜମା ଦାନକୁ ଉତ୍ସାହିତ କରିବା ଏବଂ ସାମାଜିକ ଦୂରତା, ମାସ୍କ ବ୍ୟବହାର ଓ ହାତ ଧୋଇବା ସମ୍ପର୍କରେ ବ୍ୟାପକ ସଚେତନତା ସୃଷ୍ଟି ଦିଗରେ କାମ କରିବାକୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ଏହି ଅବସରରେ ରାଜ୍ୟର ସାଢେ ଚାରି କୋଟି ଓଡ଼ିଆ ଭାଇଭଉଣୀଙ୍କୁ କୋଭିଡ ନିର୍ଦ୍ଦେଶାବଳୀକୁ ଅନୁପାଳନ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିବେଦନ କରିଥିଲେ । ସେ କହିଥିଲେ ଯେ ପ୍ରାକୃତିକ ବିପର୍ଯ୍ୟୟ ହେଉ ବା ମହାମାରୀ ପ୍ରତ୍ୟେକଟି ମଣିଷର ଜୀବନ ରକ୍ଷା କରିବା ତାଙ୍କର ପ୍ରାଥମିକ ଦାୟିତ୍ୱ । ସରକାର କୋଭିଡ ନିୟମାବଳୀକୁ କାର୍ଯ୍ୟକାରୀ କରିବା ପାଇଁ ସବୁ ଘରେ ବା ସବୁ ରାସ୍ତାରେ ରହିବା ସମ୍ଭବ ନୁହେଁ । ସମସ୍ତେ ଏକାଠି ହୋଇ ଏହି ମହାମାରୀ ବିରୁଦ୍ଧରେ ଲଢେଇ କରିବା ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଦାୟିତ୍ୱ ବୋଲି ମତ ଦେଇ ମୁଖ୍ୟମନ୍ତ୍ରୀ ସମସ୍ତଙ୍କ ସହଯୋଗ କାମନା କରିଥିଲେ ।

ଏହି ଅବସରରେ ବିଧାୟକମାନଙ୍କୁ ସମ୍ବୋଧନ କରି ବାଚସ୍ପତି ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର କରୋନା ଯୁଦ୍ଧରେ ମୁଖ୍ୟମନ୍ତ୍ରୀଙ୍କ ଦୂରଦୃଷ୍ଟିର ଉଚ୍ଚ ପ୍ରଶଂସା କରିଥିଲେ । ସେ କହିଥିଲେ ଯେ ମୁଖ୍ୟମନ୍ତ୍ରୀ ମାର୍ଚ୍ଚ ୧୩ ତାରିଖରୁ କୋଭିଡ ରୋଗ ସମ୍ପର୍କରେ ପ୍ରଥମେ ବିଧାନସଭାରେ ସଚେତନତା କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । କୋଭିଡ ରୋଗ ସମ୍ପର୍କରେ ସରକାରଙ୍କ ନିର୍ଦ୍ଦେଶାବଳୀର କଡାକଡି ଅନୁପାଳନ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ବିରୋଧୀଦଳ ନେତା ଶ୍ରୀ ପ୍ରଦୀପ୍ତ ନାୟକ ତାଙ୍କର ଅଭିଭାଷଣରେ କୋଭିଡ ରୋଗର ନିୟନ୍ତ୍ରଣ ପାଇଁ ସମସ୍ତେ ମିଳିମିଶି କାମ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । କଂଗ୍ରେସ ବିଧାୟକ ଦଳର ନେତା ଶ୍ରୀ ନରସିଂହ ମିଶ୍ର କୋଭିଡ ସ୍ଥିତିର ଅନୁଧ୍ୟାନ ପାଇଁ ଏକ ହାଉସ କମିଟି ଗଠନ ପାଇଁ ସରକାରଙ୍କୁ ପରାମର୍ଶ ଦେଇଥିଲେ ।

ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ ରାଜ୍ୟରେ କରୋନା ପରିଚାଳନା ସମ୍ପର୍କରେ ଏକ ଉପସ୍ଥାପନା ରଖିଥିଲେ । ବିଶ୍ୱ, ଦେଶ ଓ ରାଜ୍ୟରେ କରୋନା ପରିସ୍ଥିତି, ରାଜ୍ୟର କୋଭିଡ ରଣନୀତି, ଭିତ୍ତିଭୂମି, କୋଭିଡ ପରିଚାଳନାରେ ଟେକ୍‌ନୋଲୋଜିର ପ୍ରୟୋଗ, ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମ ଓ ସରକାରୀ ସହାୟତା, ଅର୍ଥନୈତିକ ପ୍ରଭାବ, ଅର୍ଥନୀତିର ପୁନରୁଦ୍ଧାର ପାଇଁ ପଦକ୍ଷେପ ଆଦି ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରି ବିଧାୟକମାନଙ୍କୁ ରାଜ୍ୟ ସରକାରଙ୍କ ପକ୍ଷରୁ ନିଆଯାଉଥିବା ପଦକ୍ଷେପ ସମ୍ପର୍କରେ ଅବଗତ କରାଇଥିଲେ । ଦୁଇ ଜଣ କରୋନା ଯୋଦ୍ଧା– ଜଣେ ଡାକ୍ତର ଓ ଜଣେ ଆଶାକର୍ମୀ ସେମାନଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମ, କାର୍ଯ୍ୟକ୍ଷେତ୍ରରେ ସେମାନେ ଅନୁଭବ କରୁଥିବା ଦୈନନ୍ଦିନ ଆହ୍ୱାନ ଓ ବ୍ୟକ୍ତିଗତ ଅନୁଭୂତି ସମ୍ପର୍କରେ ବର୍ଣ୍ଣନା କରିଥିଲେ ।

*(କୋଭିଡ୍ ୧୯ ସଚେତନତା କର୍ମଶାଳାରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ)*



# ଡାକ୍ତର ଓ ରୋଗୀମାନଙ୍କ ମଧ୍ୟରେ ଆଶା ସଞ୍ଚାର କରିଛି ପ୍ଲାଜ୍‌ମା ଥେରାପି


**ଶ୍ରୀ ନବୀନ ପଟ୍ଟନାୟକ**
**ମୁଖ୍ୟମନ୍ତ୍ରୀ**





କୋଭିଡ ରୋଗର ଚିକିତ୍ସାରେ ପ୍ଲାଜ୍‌ମା ଥେରାପି ଆମ ରାଜ୍ୟରେ ଉତ୍ସାହଜନକ ସଫଳତା ଆଣିଛି । ଆନନ୍ଦର କଥା ଏହି ଚିକିତ୍ସା ପଦ୍ଧତି ଦ୍ୱାରା କଟକର ଜଣେ ୪୮ ବର୍ଷୀୟ ମହିଳା ସୁସ୍ଥ ହୋଇ ଘରକୁ ଫେରିଛନ୍ତି । ଡାକ୍ତର ଓ ରୋଗୀମାନଙ୍କ ମଧ୍ୟରେ ଆଶା ସଞ୍ଚାର କରିଛି ପ୍ଲାଜ୍‌ମା ଥେରାପି । ଆତ୍ମବିଶ୍ୱାସ ମଧ୍ୟ ବୃଦ୍ଧି କରିଛି ।

ରାଜ୍ୟରେ ଆରମ୍ଭ ହୋଇଛି ପ୍ଲାଜ୍‌ମା ଥେରାପି । କଟକରେ ପ୍ଲାଜ୍‌ମା ବ୍ୟାଙ୍କ ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଥିଲେ ଯେ 'ମୋ ପାଇଁ ପ୍ରତିଟି ଲୋକର ଜୀବନ ମୂଲ୍ୟବାନ । ଓଡ଼ିଶାବାସୀଙ୍କୁ ସର୍ବୋତ୍ତମ ଚିକିତ୍ସା ସୁବିଧା ଯୋଗାଇବା ମୋର ଲକ୍ଷ୍ୟ ।' ପ୍ଲାଜ୍‌ମା ଥେରାପି ଏ ଦିଗରେ ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଦେଶରେ ପ୍ଲାଜ୍‌ମା ଥେରାପି ଚିକିତ୍ସା ସୁବିଧା ମିଳୁଥିବା ଅଳ୍ପ କେତୋଟି ରାଜ୍ୟ ମଧ୍ୟରେ ଓଡ଼ିଶା ଅନ୍ୟତମ ।

କଟକର ଏସ୍‌ସିବି ଓ ରାଉରକେଲାର ଆଇଜିଏଚ୍‌ରେ ପ୍ଲାଜ୍‌ମା ବ୍ୟାଙ୍କ ପ୍ରତିଷ୍ଠା ହେବା ସହ କଟକ, ଭୁବନେଶ୍ୱର ଓ ବ୍ରହ୍ମପୁରରେ ଆରମ୍ଭ ହୋଇଛି ପ୍ଲାଜ୍‌ମା ଥେରାପି । ଭୁବନେଶ୍ୱର ଓ ବ୍ରହ୍ମପୁରରେ ମଧ୍ୟ ପ୍ଲାଜ୍‌ମା ବ୍ୟାଙ୍କ କରାଯିବା ପାଇଁ ସ୍ଥିର କରାଯାଇଛି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିବେଦନକ୍ରମେ କୋଭିଡରୁ ଆରୋଗ୍ୟ ଲାଭ କରୁଥିବା ବ୍ୟକ୍ତିମାନେ ପ୍ଲାଜ୍‌ମା ଦାନ ପାଇଁ ଆଗେଇ ଆସୁଥିବା ଆନନ୍ଦର କଥା ।




ଜଣେ କୋଭିଡରୁ ସୁସ୍ଥ ହେବାର ଚାରି ସପ୍ତାହ ପରେ ପ୍ଲାଜ୍ମା ଦାନ କରିପାରିବେ । ଜଣେ ବ୍ୟକ୍ତି ଚାହିଁଲେ ଏକାଧିକବାର (ପ୍ରତି ଦୁଇ ସପ୍ତାହରେ ଥରେ) ପ୍ଲାଜ୍ମା ଦେଇପାରିବେ । ଗୋଟିଏ ୟୁନିଟ୍ ପ୍ଲାଜ୍ମା ଦ୍ୱାରା ଦୁଇ ଜଣଙ୍କ ଚିକିତ୍ସା କରାଯାଇ ପାରିବ ।

ଗୁରୁତର କୋଭିଡ ରୋଗୀଙ୍କ ଚିକିତ୍ସାରେ ପ୍ଲାଜ୍ମା ଥେରାପିର ମହତ୍ତ୍ୱପୂର୍ଣ୍ଣ ଭୂମିକାକୁ ଦୃଷ୍ଟିରେ ରଖି ପ୍ଲାଜ୍ମା ଦାନକୁ ଉତ୍ସାହିତ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କୁ ବିଭିନ୍ନ ଜିଲ୍ଲାର ଦାୟିତ୍ୱ ଦେଇଛନ୍ତି । ମନ୍ତ୍ରୀମାନେ ସେମାନଙ୍କୁ ଦାୟିତ୍ୱ ଦିଆଯାଇଥିବା ଜିଲ୍ଲା ଗସ୍ତ କରି ଆରୋଗ୍ୟ ଲାଭ କରିଥିବା କୋଭିଡ ରୋଗୀମାନଙ୍କ ସହିତ ଯୋଗାଯୋଗ ରଖି ସେମାନଙ୍କୁ ପ୍ଲାଜ୍ମା ଦାନ ପାଇଁ ଉତ୍ସାହିତ କରିବେ ଏବଂ ଏଥିପାଇଁ ଆବଶ୍ୟକ ବ୍ୟବସ୍ଥା ମଧ୍ୟ କରିବେ । ନିୟମିତ ବ୍ୟବଧାନରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପ୍ଲାଜ୍ମା ଦାନର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରିବେ ବୋଲି କହିଛନ୍ତି ।



# କୋଭିଡ ଯୋଦ୍ଧାଙ୍କ ବଳିଦାନକୁ ବ୍ୟର୍ଥ ହେବାକୁ ଦେବୁ ନାହିଁ

## ମୁଁ ଜିତିବି, ମୋ ଓଡ଼ିଶା ଜିତିବ ଏବଂ ମାନବ ଜାତି ବି ଜିତିବ




**ଶ୍ରୀ ନବୀନ ପଟ୍ଟନାୟକ**
**ମୁଖ୍ୟମନ୍ତ୍ରୀ**

ଗତ ୫ ମାସ ଧରି ଓଡ଼ିଶାରେ କୋଭିଡ ବିରୁଦ୍ଧରେ ଲଢେଇ ଜାରି ରହିଛି । ଏହି ଲଢେଇର ଆଗଧାଡିରେ ରହିଥିବା କୋଭିଡ ଯୋଦ୍ଧାମାନଙ୍କ ତ୍ୟାଗ ଓ ଉତ୍ସର୍ଗୀକୃତ ସେବା ଯୋଗୁଁ ରାଜ୍ୟର କୋଭିଡ ଆରୋଗ୍ୟଙ୍କ ସଂଖ୍ୟା ବୃଦ୍ଧି ପାଇଛି । ଏହାକୁ କୋଭିଡ ଯୁଦ୍ଧର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ବୋଲି ବର୍ଣ୍ଣନା କରି ଏହାକୁ ସବୁ ଶ୍ରେୟ କୋଭିଡ ଯୋଦ୍ଧା ଓ ଓଡ଼ିଶାବାସୀଙ୍କର ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଛନ୍ତି । ଜୀବନକୁ ବାଜି ଲଗାଇ ସେମାନେ ଯେପରି ସେବା କରିଚାଲିଛନ୍ତି, ମୁଖ୍ୟମନ୍ତ୍ରୀ ତା'ର ଉଚ୍ଚ ପ୍ରଶଂସା ମଧ୍ୟ କରିଛନ୍ତି ।

ଏହି ଲଢେଇରେ ୨୫ ଜଣ କୋଭିଡ ଯୋଦ୍ଧା ସେମାନଙ୍କ ଜୀବନ ବଳିଦାନ ଦେଇ ସେବା, ତ୍ୟାଗ ଓ ମାନବିକତାର ଅନନ୍ୟ ଉଦାହରଣ ସୃଷ୍ଟି କରିଛନ୍ତି । ସେହି ଯୋଦ୍ଧାମାନଙ୍କର ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଆହ୍ୱାନକ୍ରମେ ସାରା ରାଜ୍ୟ ଅଗଷ୍ଟ ୫ ତାରିଖ ସଂଧ୍ୟା ୬ଟାରେ ଏକ ମିନିଟ୍ ନିରବ ପ୍ରାର୍ଥନା କରି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛି । ଏହି ନିରବ ପ୍ରାର୍ଥନାରେ ସାରା ରାଜ୍ୟର ଜନସାଧାରଣ, ବିଭିନ୍ନ ଅଫିସ୍, ଅନୁଷ୍ଠାନର କର୍ମଚାରୀ ଭାଗ ନେଇ ଶହୀଦ କରୋନା ଯୋଦ୍ଧାଙ୍କ ପ୍ରତି ଜାତିର କୃତଜ୍ଞତା ଅର୍ପଣ କରିଛନ୍ତି ।

- **ଶହୀଦ କୋଭିଡ ଯୋଦ୍ଧାଙ୍କୁ ନିରବ ପ୍ରାର୍ଥନା ଜରିଆରେ ସାରା ରାଜ୍ୟରେ ଶ୍ରଦ୍ଧାଞ୍ଜଳି**
- **ଲଢେଇକୁ ମଜବୁତ କରିବାକୁ ଶପଥ ଗ୍ରହଣ**

ନିଜ ପରିବାର ଓ ବ୍ୟକ୍ତିଗତ ସୁଖ ସୁବିଧାକୁ ପଛରେ ପକାଇ ଆମର କୋଭିଡ ଯୋଦ୍ଧାମାନେ ଉତ୍ସର୍ଗୀକୃତ ମନୋଭାବ, ତ୍ୟାଗ ଓ ନିଷ୍ଠାର ସହ ଯେପରି ସେବା କରିଚାଲିଛନ୍ତି, ତାଙ୍କୁ ଉତ୍ସାହିତ କରିବା ଏବଂ ତାଙ୍କର ଏହି ମହତ୍ କାର୍ଯ୍ୟକୁ ଦୃଢ ସମର୍ଥନ ଦେବା ପାଇଁ ଏହି ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟବାସୀଙ୍କୁ ସହଯୋଗ, ସଚେତନତା ଓ କୋଭିଡ ଯୋଦ୍ଧାଙ୍କୁ ଉତ୍ସାହିତ କରିବାର ଶପଥ ପାଠ କରାଇଥିଲେ । ମୁଁ ଜିତିବି, ମୋ ଓଡ଼ିଶା ଜିତିବ ଓ ମାନବ ଜାତି ବି ଜିତିବ, ଏହି ସଂକଳ୍ପ ନେଇ କରୋନା ବିରୁଦ୍ଧରେ ଲଢେଇକୁ ମଜବୁତ କରିବା ସହିତ କୋଭିଡ ନିୟମାବଳୀର ଅନୁପାଳନ ଓ କୋଭିଡ ଯୋଦ୍ଧାଙ୍କୁ ପୂର୍ଣ୍ଣ ସହଯୋଗ ଓ ସମ୍ମାନ ଜଣାଇବା ପାଇଁ ମଧ୍ୟ ସମସ୍ତେ ଶପଥ ନେଇଥିଲେ ।

# ସ୍ୱାଧୀନତା ଦିବସ– ୨୦୨୦ ଅବସରରେ
# ଓଡ଼ିଶାର ମାନ୍ୟବର ରାଜ୍ୟପାଳ
# **ପ୍ରଫେସର ଗଣେଶୀ ଲାଲଙ୍କ**
# **ବାର୍ତ୍ତା**



ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ, ଉତ୍କଳ ପ୍ରଦେଶର ଭଉଣୀ ଓ ଭାଇମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭକାମନା ଜଣାଉଛି । ଆଜିର ଏହି ଐତିହାସିକ ଦିବସରେ ଆସନ୍ତୁ, ଆମ ସ୍ୱାଧୀନତା ସଂଗ୍ରାମର ମହାନ୍ ଜାତୀୟବାଦୀ ନେତୃବୃନ୍ଦଙ୍କର ଅମୂଲ୍ୟ ଅବଦାନ ଓ ତ୍ୟାଗର ସ୍ମୃତିଚାରଣ କରିବା । ୧୯୪୭ ମସିହା ଆଜିର ଏହି ଦିନରେ ଜାତିର ପିତା ମହାତ୍ମା ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦର୍ଶିତ ଅହିଂସା ମାର୍ଗକୁ ପାଥେୟ କରି ଆମେ ବ୍ରିଟିଶ ଶାସନ କବଳରୁ ସ୍ୱାଧୀନତା ହାସଲ କରିଥିଲୁ ।

ଦେଶ ଜାତି ପାଇଁ ନିଜର ଜୀବନ ଉତ୍ସର୍ଗ କରିଥିବା ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ମୌଲାନା ଅବୁଲ୍ କାଲାମ ଆଜାଦ୍‌ଙ୍କ ପରି ଆମ ଦେଶର ଅନେକ ସ୍ୱାଧୀନତା ସଂଗ୍ରାମୀ ଏବଂ ମହାନ୍ ଦେଶପ୍ରେମୀ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଚାଖି ଖୁଣ୍ଟିଆ, ଶହୀଦ୍ ଲକ୍ଷ୍ମଣ ନାୟକ, ବିର୍ସା ମୁଣ୍ଡା, ରଘୁଦିବାକର, ବୀର ସୁରେନ୍ଦ୍ର ସାଏଙ୍କ ପରି ଆମ ରାଜ୍ୟର ଆହୁରି ଅନେକ ବୀରପୁତ୍ରଙ୍କ ପ୍ରତି ଆସନ୍ତୁ, ଆଜିର ଏହି ପବିତ୍ର ଦିବସ ଅବସରରେ ଆମେ ଆମର ସମ୍ମାନପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା । ଦେଶର ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଭୂମିକା ନିର୍ବାହ କରିଥିବା ଆମ ରାଜ୍ୟର ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ପାର୍ବତୀ ଗିରି ଏବଂ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପରି ଅନେକ ମହାମନୀଷୀଙ୍କ ତ୍ୟାଗପୂତ ଅବଦାନ କାଳକାଳକୁ ସ୍ମରଣୀୟ ହୋଇ ରହିବ । ଆମର ପ୍ରିୟ ମାତୃଭୂମିର ସ୍ୱାଧୀନତା ନିମନ୍ତେ ନିଜର ପ୍ରାଣ ବିସର୍ଜନ କରିଥିବା ଅଗଣିତ ଦେଶପ୍ରେମୀଙ୍କ ସହ ଦେଶର ଶାନ୍ତି ଓ ନିରାପତ୍ତା ବଜାୟ ରଖିବା ନିମନ୍ତେ ଆତ୍ମବଳିଦାନ ଦେଇଥିବା ବୀର ଯବାନ୍‌ଙ୍କୁ ଆଜିର ଏହି ଦିବସ ପାଳନ ଅବସରରେ ଆମେ ଆମର ବିନମ୍ର ପ୍ରଣତି ଜଣାଉଛୁ । ଆମ ଦେଶର ସୀମା ସୁରକ୍ଷା ଦାୟିତ୍ୱରେ ଥାଇ ତଥା ଏହାର

ସାର୍ବଭୌମତ୍ୱ ରକ୍ଷାକରିବାକୁ ଯାଇ ସର୍ବୋଚ୍ଚ ତ୍ୟାଗ ସ୍ୱୀକାର କରିଥିବା ଅମର ଶହୀଦ, ବୀର ଯବାନ ଏବଂ କାର୍ଯ୍ୟରତ ପଦାଧିକାରୀଙ୍କ ନିକଟରେ ଆମେ ଚିର ଋଣୀ ।

ଅଧୁନା, କୋଭିଡ-୧୯ ମହାମାରୀ ସାରା ବିଶ୍ୱ ନିମନ୍ତେ ଏକ ଭୟାବହ ପରିସ୍ଥିତି ସୃଷ୍ଟି କରିଛି ଏବଂ ଆମ ରାଜ୍ୟ ଓଡ଼ିଶା ମଧ୍ୟ ଏହାର ସଠିକ୍ ମୁକାବିଲା କରୁଛି । ଆମ କୋଭିଡ ଯୋଦ୍ଧା ତଥା ଆଗଧାଡିର କୋଭିଡ କାର୍ଯ୍ୟକର୍ତ୍ତା, ଜନସାଧାରଣ ଏବଂ ରାଜ୍ୟ ସରକାରଙ୍କ ସହଯୋଗ ଅତ୍ୟନ୍ତ ପ୍ରଶଂସନୀୟ । ଏପରି ମହାମାରୀ ବିରୁଦ୍ଧରେ ଲଢେଇ କରିବା ତଥା ଜନସାଧାରଣଙ୍କ ଜୀବନ ରକ୍ଷା କରିବା ନିମନ୍ତେ ରାଜ୍ୟ ସରକାର ସମସ୍ତ ପଦକ୍ଷେପ ଗ୍ରହଣ କରିଛନ୍ତି । ପ୍ରାକୃତିକ ବିପର୍ଯ୍ୟୟ ପ୍ରସ୍ତୁତି ତଥା ଏହାର ପରିଚାଳନା ଦିଗରେ ଉଲ୍ଲେଖନୀୟ କାର୍ଯ୍ୟ ନିମନ୍ତେ ଓଡ଼ିଶା ଜାତୀୟ ସ୍ତରରେ ନିଜର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଛି । ଆମ ରାଜ୍ୟ ବିପର୍ଯ୍ୟୟ ପରିଚାଳନା କ୍ଷେତ୍ରରେ ପୂର୍ବ ଅଭିଜ୍ଞତା ସହ ଦକ୍ଷତାଭିତ୍ତିରେ ସୁଚାରୁରୂପେ କାର୍ଯ୍ୟ ସମ୍ପାଦନ କରିଆସିଛି ଏବଂ ଏଥିପାଇଁ ଦେଶ ତଥା ଦେଶ ବାହାରେ ଉଚ୍ଚ ପ୍ରଶଂସିତ ହୋଇପାରିଛି । ବର୍ତ୍ତମାନର ମହାମାରୀ ଦୃଶ୍ୟପଟ୍ଟରେ ରାଜ୍ୟର ବଳିଷ୍ଠ କାର୍ଯ୍ୟକ୍ରମ ଏବଂ ଉକ୍ତ ମହାମାରୀର ବିଲୋପ ନିମନ୍ତେ ଦୂରଦୃଷ୍ଟିସମ୍ପନ୍ନ ପ୍ରସ୍ତୁତି ଏବଂ ସୁଦୂରପ୍ରସାରୀ ଆଭିମୁଖ୍ୟ ଜାତୀୟ ସ୍ତରରେ ସ୍ୱୀକୃତ ହୋଇପାରିଛି ।

ପ୍ଲାଜ୍‌ମା ଥେରାପି ଗୁରୁତର ପୀଡିତ ରୋଗୀମାନଙ୍କ ଆରୋଗ୍ୟ କ୍ଷେତ୍ରରେ ବେଶ୍ ସହାୟକ ସାବ୍ୟସ୍ତ ହେଉଥିବାରୁ ଏହି ପ୍ଲାଜ୍‌ମା ଥେରାପିକୁ ଆଶାର କିରଣ ରୂପେ ବିବେଚନା କରାଯାଉଛି । ଏହାକୁ ଦୃଷ୍ଟିରେ ରଖି, ରାଜ୍ୟରେ ଗୁରୁତର ଭାବେ ପୀଡିତ କୋଭିଡ ରୋଗୀମାନଙ୍କ ଚିକିତ୍ସା ନିମନ୍ତେ ଆରୋଗ୍ୟ ପ୍ରଦାନକାରୀ ପ୍ଲାଜ୍‌ମା ଥେରାପି ପ୍ରଚଳନ କରାଯାଇଛି । ରାଜ୍ୟ ସରକାର ୫ଗୋଟି ପ୍ଲାଜ୍‌ମା ବ୍ୟାଙ୍କ ପ୍ରତିଷ୍ଠା କରିଛନ୍ତି ଏବଂ ଯୋଗ୍ୟ ପ୍ଲାଜ୍‌ମା ଦାତାମାନେ ସ୍ୱେଚ୍ଛାକୃତଭାବେ ପ୍ଲାଜ୍‌ମା ଦାନ ନିମନ୍ତେ ଆଗେଇ ଆସୁଛନ୍ତି । ଏହି ମହାମାରୀର ବ୍ୟାପକତାକୁ ସଫଳ ଭାବେ ରୋକିବା ଦିଗରେ ଗୋଷ୍ଠୀ ସହଭାଗିତା, ବୈଷୟିକ ଜ୍ଞାନକୌଶଳର ସଫଳ ପ୍ରୟୋଗ ଏବଂ ବିକେନ୍ଦ୍ରୀକୃତ ନିଷ୍ପତ୍ତି ଗ୍ରହଣକୁ ଓଡ଼ିଶା ଉତ୍ସାହିତ କରୁଛି ।

ରାଜ୍ୟ ସରକାର କୋଭିଡ-୧୯ ନିମନ୍ତେ ମାର୍ଗଦର୍ଶିକା ଜାରି କରିଛନ୍ତି ଏବଂ ଜନସାଧାରଣ ଏହାକୁ ମାନିବା ନିମନ୍ତେ ନିବେଦନ କରିଛନ୍ତି । ରାଜ୍ୟ ସରକାରଙ୍କ ବିଚାରରେ ଏହା ହେଉଛି ଏକ ସ୍ୱତଃସ୍ଫୂର୍ତ୍ତ ପ୍ରତିବଦ୍ଧତା ଯେ ରାଜ୍ୟରେ କୌଣସି ବ୍ୟକ୍ତିବିଶେଷ ଉନ୍ନତ ଚିକିତ୍ସା ସୁବିଧାରୁ ବଞ୍ଚିତ ହେବେ ନାହିଁ । କୋଭିଡ ପୀଡିତ ରୋଗୀମାନଙ୍କ ରେକର୍ଡ ସଂଖ୍ୟକ ଆରୋଗ୍ୟ ହାର କ୍ଷେତ୍ରରେ ଓଡ଼ିଶା ଉଦାହରଣ ସୃଷ୍ଟି କରିପାରିଛି । ଅଧିକ ସଂଖ୍ୟକ ସନ୍ଦିଗ୍ଧ ରୋଗୀଙ୍କ ପରୀକ୍ଷା ନିମନ୍ତେ ଗୁରୁତ୍ୱାରୋପ କରାଯାଉଛି ।

କୋଭିଡ-୧୯ ମହାମାରୀ ପରିସ୍ଥିତି ମଧ୍ୟରେ ନିଯୁକ୍ତି ସୁଯୋଗ ସୃଷ୍ଟି ପ୍ରତି ମଧ୍ୟ ରାଜ୍ୟ ସରକାର ବିଶେଷ ଗୁରୁତ୍ୱ ଦେଉଛନ୍ତି ଏବଂ ବିଭିନ୍ନ କ୍ଷେତ୍ରରେ ଥିବା ଜୀବିକା ସମ୍ଭାବନାକୁ ବୃଦ୍ଧି କରିବା ନିମନ୍ତେ ବହୁ ପଦକ୍ଷେପ ଗ୍ରହଣ କରିଛନ୍ତି ।

ଗୁରୁତର ଭାବେ ପୀଡ଼ିତ କୋଭିଡ ରୋଗୀମାନଙ୍କର ଚିକିତ୍ସା ନିମନ୍ତେ ଉନ୍ନତ ଚିକିତ୍ସା ପଦ୍ଧତି ଗ୍ରହଣ କରିଥିବା କେତେକ ରାଜ୍ୟ ମଧ୍ୟରୁ ଓଡ଼ିଶା ଅନ୍ୟତମ । ୨୫ ହଜାର କୋଭିଡ ରୋଗୀଙ୍କ ଆରୋଗ୍ୟ କ୍ଷେତ୍ରରେ ଓଡ଼ିଶା ସଫଳ ହୋଇପାରିଛି । ଏହା ଜନସାଧାରଣଙ୍କ ଜୀବନ ରକ୍ଷା କରିବା ନିମନ୍ତେ ଅବିରତ ଭାବେ କାର୍ଯ୍ୟରତ ହଜାର ହଜାର ଆଗଧାଡ଼ିର କୋଭିଡ ଯୋଦ୍ଧାମାନଙ୍କ ନିଷ୍ଠାପର ତଥା ଉତ୍ସର୍ଗୀକୃତ ମନୋଭାବ ଯୋଗୁଁ ସମ୍ଭବ ହୋଇପାରିଛି । ଏହି ମାରାତ୍ମକ ରୋଗରେ କେତେକ କୋଭିଡ ଯୋଦ୍ଧା ମଧ୍ୟ ଆତ୍ମବଳିଦାନ ଦେଇଛନ୍ତି । ବିଶ୍ୱସ୍ତରୀୟ ଏହି ମହାମାରୀ ବିରୁଦ୍ଧରେ ଲଢେଇରେ ଅବତୀର୍ଣ୍ଣ ଡାକ୍ତର, ପୋଲିସ କର୍ମଚାରୀ, ସ୍ୱାସ୍ଥ୍ୟକର୍ମୀ, ଆଶାକର୍ମୀ, ଏ.ଏନ୍.ଏମ୍., ପି.ଆର୍.ଆଇ. ଓ ସଫେଇ କର୍ମଚାରୀମାନଙ୍କୁ ସେମାନଙ୍କ ସର୍ବୋଚ୍ଚ ତ୍ୟାଗ ନିମନ୍ତେ ମୁଁ ଅଭିବାଦନ ଜଣାଉଛି । ରାଜ୍ୟ ସରକାରଙ୍କ ନିଷ୍ଠାପର ତଥା ସମନ୍ୱିତ ଉଦ୍ୟମ ସହ ଓଡ଼ିଶାର ଜନସାଧାରଣଙ୍କ ସହଯୋଗ ବଳରେ ଆମେ ଯେକୌଣସି ସଙ୍କଟର ସଫଳ ମୁକାବିଲା କରିପାରିବା ଏବଂ ଏହାକୁ ଅତିକ୍ରମ କରିପାରିବା । କୋଭିଡ-୧୯ ରୋଗରୁ ସୁସ୍ଥ ହୋଇଥିବା ବ୍ୟକ୍ତିବିଶେଷ ଆଗେଇ ଆସି ପ୍ଲାଜ୍ମା ଦାନ କରିବାକୁ ମୁଁ ନିବେଦନ କରୁଛି ଏବଂ ଅନ୍ୟମାନେ ମଧ୍ୟ ଏପରି ମହତ କାର୍ଯ୍ୟରେ ଆଗେଇ ଆସିବାକୁ ଉତ୍ସାହିତ କରୁଛି ।

ଆସନ୍ତୁ, ଆମର ଜନସାଧାରଣଙ୍କ ଜୀବନର ସୁରକ୍ଷା ନିମନ୍ତେ ଏକାଠି ହୋଇ କାର୍ଯ୍ୟ କରିବା ଏବଂ ସାହସ ଓ ଧୈର୍ଯ୍ୟର ସହ ଏହି ମହାମାରୀକୁ ସାମ୍ନା କରିବା ପାଇଁ ସଙ୍କଳ୍ପ ନେବା । ଏଥିସହିତ ନିଜକୁ, ନିଜ ପରିବାରକୁ ଏବଂ ବନ୍ଧୁବାନ୍ଧବଙ୍କୁ ଏହି ଭୂତାଣୁ କବଳରୁ ସୁରକ୍ଷା ଦେବା ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ଜାରି କରାଯାଇଥିବା ମାର୍ଗଦର୍ଶିକାକୁ ମାନି ଚଳିବା । କୋଭିଡ ନିୟମାବଳୀକୁ କଡ଼ାକଡ଼ିଭାବେ ପାଳନ କରି ଆମେ ଅଧିକ ସଫଳଭାବେ ଏହି ମହାମାରୀ ବିରୁଦ୍ଧରେ ଲଢ଼ିବାରେ ସମର୍ଥ ହେବା ସହ ଅନେକ ଜୀବନ ରକ୍ଷା କରିପାରିବା ।

**ଜୟ ହିନ୍ଦ୍ ।**

# ସ୍ୱାଧୀନତା ଦିବସ- ୨୦୨୦ ଅବସରରେ
# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ଅବସରରେ ଆପଣମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି । ଏହି ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ବୋଷ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ, ଡକ୍ଟର ଆମ୍ବେଦକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବୀରସୁରେନ୍ଦ୍ର ସାଏ, ଶହୀଦ ଲକ୍ଷ୍ମଣ ନାୟକ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ଡକ୍ଟର ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶରେ ଏକତା ଓ ସୁରକ୍ଷା ପାଇଁ ଶହୀଦ ହୋଇଥିବା ଅମର ଯବାନମାନଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆପଣମାନେ ଜାଣନ୍ତି ଗତ ୫ ମାସ ହେଲା ସାରା ଦେଶ କରୋନା ବିରୁଦ୍ଧରେ ଲଢୁଛି । ଏ ଲଢେଇରେ ଶହୀଦ ହୋଇଥିବା କୋଭିଡ ଯୋଦ୍ଧାମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

କରୋନା ଆଜି କେବଳ ଭାରତ ନୁହେଁ ସାରା ବିଶ୍ୱ ତଥା ମାନବ ଜାତି ପାଇଁ ଏକ ବହୁତ ବଡ ସଙ୍କଟ ଭାବେ ଦେଖା ଦେଇଛି । ଶିକ୍ଷା, ସ୍ୱାସ୍ଥ୍ୟ, ଅର୍ଥନୀତି, ପର୍ଯ୍ୟଟନ, ପରିବହନ ତଥା ସମାଜ ଉପରେ ଏହା ଗଭୀର ପ୍ରଭାବ ପକେଇଛି । ସାରା ବିଶ୍ୱରେ କୋଟି କୋଟି ଲୋକ ଜୀବିକା ହରାଉଛନ୍ତି । ଭ୍ୟାକ୍ସିନ୍ ଆସିବା ପରେ କରୋନା କଣ୍ଟ୍ରୋଲ ହେବ । କିନ୍ତୁ ଅର୍ଥନୀତି ଓ ସମାଜ ଉପରେ କରୋନା ଯେଉଁ କ୍ଷତି କରିଛି ତାକୁ ଭରଣା କରିବା ପାଇଁ ଆମକୁ ସାହସର ସହ କାମ କରିବାକୁ ହେବ ।

ଆପଣ ଜାଣନ୍ତି କରୋନା ମୁକାବିଲା ପାଇଁ ଓଡ଼ିଶା ସରକାର ବିଭିନ୍ନ ଅଞ୍ଚଳରେ କୋଭିଡ ହସ୍ପିଟାଲ କରିଛନ୍ତି । ୫ଟି ପ୍ଲାଜ୍ମା ବ୍ୟାଙ୍କ ସହ ପ୍ଲାଜମା ଥେରାପି ସେବା ରୋଗୀଙ୍କୁ ମିଳୁଛି । ପଇସା ପାଇଁ ଓଡ଼ିଶାରେ କେହି ଜଣେ ବି ରୋଗୀ ଚିକିତ୍ସାରୁ ବଞ୍ଚିତ ହେବେନାହିଁ । ଏଥିପାଇଁ ଓଡ଼ିଶା ସରକାର କୋଭିଡ ରୋଗୀଙ୍କୁ ସବୁ ପ୍ରକାର ସୁବିଧା ମାଗଣାରେ ଯୋଗାଉଛନ୍ତି । ପ୍ରତି ଜୀବନ ଆମ ପାଇଁ ମୂଲ୍ୟବାନ । ଏହି ମିଶନ ନେଇ ଆମେ କରୁଛୁ । ସମସ୍ତଙ୍କୁ ବେଷ୍ଟ ଟ୍ରିଟ୍‌ମେଣ୍ଟ ଦେବାକୁ ଚେଷ୍ଟା କରୁଛୁ ।

ଲକ୍‌ଡାଉନ୍ ସମୟରେ ଅର୍ଥନୈତିକ କାରବାର ଜାରି ରଖିବା ପାଇଁ ଆମେ ପଦକ୍ଷେପ ନେଇଛୁ । କୃଷି କାର୍ଯ୍ୟ, ନିର୍ମାଣ କାର୍ଯ୍ୟ ସହିତ ବିଭିନ୍ନ ନିଯୁକ୍ତି ସୃଷ୍ଟିଭିତ୍ତିକ କାମ ଜାରି ରହିଛି । ଗରିବ ଲୋକ ଓ ଶ୍ରମିକମାନଙ୍କୁ ବିଭିନ୍ନ ସହାୟତା ଦିଆଯାଉଛି । ଏହି ସମୟ ମଧ୍ୟରେ ଓଡ଼ିଶାକୁ ୧୨ ହଜାର କୋଟି ଟଙ୍କାର ପୁଞ୍ଜିନିବେଶ ପ୍ରସ୍ତାବ ମଧ୍ୟ ଆସିଛି । ଦେଶରେ ଏହି ସମୟରେ ହୋଇଥିବା ପୁଞ୍ଜିନିବେଶରୁ ୧୮% ଓଡ଼ିଶାକୁ ହିଁ ଆସିଛି । ମହାରାଷ୍ଟ୍ରକୁ ପଛରେ ପକାଇ ଓଡ଼ିଶା ପୁଞ୍ଜିନିବେଶରେ ଦେଶରେ ୧ ନମ୍ବର ହୋଇଛି । ୨୦୧୯-୨୦ରେ ଦେଶରେ କୃଷି କ୍ଷେତ୍ରରେ ଅଭିବୃଦ୍ଧି ହାର ୨.୮୦ ପ୍ରତିଶତ ଥିବାବେଳେ ଆମ ରାଜ୍ୟରେ କୃଷି କ୍ଷେତ୍ରରେ ଅଭିବୃଦ୍ଧି ହାର ୭.୬୧ ପ୍ରତିଶତ ରହିଛି ।

କରୋନା ବିରୋଧରେ ଆମର ଲଢେଇରେ କୋଭିଡ ଯୋଦ୍ଧାମାନେ ଯେଭଳି କାମ କରୁଛନ୍ତି ତାହାର ତୁଳନା ନାହିଁ । ସେମାନଙ୍କ ସେବା ଓ ତ୍ୟାଗ ପାଇଁ ସାରା ଭାରତରେ ଆମ ରାଜ୍ୟରେ  ଆରୋଗ୍ୟ ହାର ଭଲ ରହିଛି । ସାରା ଭାରତରେ ଓଡ଼ିଶାରେ ମୃତ୍ୟୁ ହାର କମ୍ ରହିଛି । ସେମାନଙ୍କ ତ୍ୟାଗ ଓ ସେବା ପାଇଁ ଓଡ଼ିଆ ଜାତି ସେମାନଙ୍କ ନିକଟରେ ଋଣୀ । କୋଭିଡ୍ ଯୋଦ୍ଧାମାନଙ୍କ ତ୍ୟାଗ, ନିଷ୍ଠା ଓ ସେବା ସହିତ ଆମ ସମସ୍ତଙ୍କ ସହଯୋଗ ହିଁ ଓଡ଼ିଶା ପାଇଁ, ଭାରତ ପାଇଁ ତଥା ମାନବ ଜାତି ପାଇଁ ଆମ ସମସ୍ତଙ୍କ ପାଇଁ ବିଜୟ ଆଣିବ ।

ଓଡ଼ିଆ ଜାତି ଅନେକ ବିପଦର ସାମ୍ନା କରିଛି । ସାହସର ସହ ମୁକାବିଲା କରି ନୂଆ ଇତିହାସ ଲେଖିଛି । ମୋର ପୂରା ବିଶ୍ୱାସ କରୋନା ଶୀଘ୍ର ଦୂର ହେବ । ସ୍କୁଲମାନଙ୍କରେ ପୁଣିଥରେ ଘଣ୍ଟା ବାଜି ଉଠିବ ଏବଂ ମାନବ ଜାତିର ଜୟଯାତ୍ରା ଆହୁରି ଆଗକୁ ବଢିବ ।

**ଜୟ ହିନ୍ଦ୍ ।**

## ସ୍ୱାଧୀନତା ଦିବସ -୨୦୨୦ ଅବସରରେ
# ଓଡ଼ିଶାର ମାନ୍ୟବର ଜଳସେଚନ, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ରଘୁନନ୍ଦନ ଦାସଙ୍କ ବାର୍ତ୍ତା



୭୪ତମ ସ୍ୱାଧୀନତା ଦିବସ ଅବସରରେ ଓଡିଶାବାସୀ ସମସ୍ତ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭାଭିଳାଷ ଓ ଅଭିନନ୍ଦନ ଜଣାଉଛି ।

ଆମ ସମସ୍ତଙ୍କ ନିମନ୍ତେ ଅଗଷ୍ଟ ୧୫ ତାରିଖ ହେଉଛି ଗର୍ବ, ଗୌରବ ଓ ଅନନ୍ୟ ଆନନ୍ଦର ପର୍ବ । ଆମର ପୂର୍ବସୂରୀମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ବିଦେଶୀମାନଙ୍କ କବଳରୁ ଆମକୁ ମୁକ୍ତ କରିଥିଲେ । ଇତିହାସ ପୃଷ୍ଠାରେ ଭାରତର ସଂଗ୍ରାମୀମାନଙ୍କ ତ୍ୟାଗ ଓ ବଳିଦାନ ଅକ୍ଷୁଣ୍ଣ ହୋଇ ରହିଛି । ଅଗଣିତ ସ୍ୱାଧୀନତା ସଂଗ୍ରାମୀ ନିଜସ୍ୱ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶ ମାତୃକାର ସେବାରେ ଯେଉଁ ଅଦମ୍ୟ ସାହସ ଓ ଦେଶଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଥିଲେ, ଆଜି ସ୍ୱାଧୀନତାର ୭୩ ବର୍ଷ ପରେ ମଧ୍ୟ ଜନମାନସରେ ସେସବୁ ଉଜ୍ଜୀବିତ ହୋଇ ରହିଛି । ଜୟୀ ରାଜଗୁରୁଙ୍କଠାରୁ ଆରମ୍ଭ କରି ବୀର ସୁରେନ୍ଦ୍ର ସାଏ, ବିର୍ସା ମୁଣ୍ଡାଙ୍କ ଭଳି କ୍ରାନ୍ତିକାରୀ ମୁକ୍ତିଯୋଦ୍ଧାମାନଙ୍କ ଭୂମିକା ସ୍ମୃତି ରୋମନ୍ଥନ କଲେ ଆଜି ମଧ୍ୟ ଆମର ଲୋମ ଟାଙ୍କୁରି ଉଠେ । କେତେ ଘାତ ପ୍ରତିଘାତ ସହି ସେମାନେ ଆମ ପାଇଁ ଏହି ବହୁ ମୂଲ୍ୟ ସ୍ୱାଧୀନତା ଆଣି ଦେଇଛନ୍ତି । ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଅବୁଲ କାଲାମ ଆଜାଦ୍, ଅରୁଣା ଆସଫ୍ ଅଲ୍ଲୀ, ପ୍ରଫୁଲ୍ଲ ଚାକୀଙ୍କଠାରୁ ଆରମ୍ଭ କରି ଶହୀଦ ଭଗତ ସିଂ, ଖୁଦୀରାମ ବୋଷଙ୍କର ତ୍ୟାଗ ଓ ବଳିଦାନର ବିଷୟ ଭାରତ ଇତିହାସରେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ । ସେହିପରି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ପାର୍ବତୀ ଗିରି ଏବଂ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ପ୍ରମୁଖ ଅନେକ ଦେଶପ୍ରେମୀଙ୍କ ଅବଦାନ ଅତୁଳନୀୟ ରହିଥିଲା । ସ୍ୱାଧୀନତା ଦିବସ ଅବସରରେ ଏହିସବୁ ବରେଣ୍ୟ ସଂଗ୍ରାମୀମାନଙ୍କର ଉଦ୍ଦେଶ୍ୟରେ ମୁଁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ସଂଗ୍ରାମୀମାନେ ଯେଉଁ ସ୍ୱପ୍ନର ଆଧାରରେ ସ୍ୱାଧୀନତା ସଂଗ୍ରାମର ଲେଲିହାନ ବହ୍ନିରେ ଝାସ ଦେଇଥିଲେ, ସେମାନଙ୍କର ସେହି କଷ୍ଟଲବ୍ଧ ସ୍ୱାଧୀନତା ଏବଂ ସ୍ୱାଧୀନୋତ୍ତର ଭାରତର ସ୍ୱପ୍ନକୁ ସାକାର କରିବା ପାଇଁ ଆମର ପ୍ରଚେଷ୍ଟା ଜାରି ରହିଛି । ବହୁ କ୍ଷେତ୍ରରେ ଆମେ ସଫଳତା ହାସଲ କରିଛୁ । ତଥାପି ଆମକୁ ଆହୁରି ଅନେକ ଦୂର ଆଗକୁ ଯିବାର ଅଛି ।

ପ୍ରଗତି ହାସଲ ପାଇଁ ସବୁ ବାଧାବିଘ୍ନକୁ ଅତିକ୍ରମ କରି ଆମକୁ ଆହୁରି ଅଧିକ ଦୃଢ ମନୋବଳର ସହିତ କାମ କରିବାକୁ ପଡିବ । ସଂପ୍ରତି ସମଗ୍ର ବିଶ୍ୱ କରୋନା ମହାମାରୀ କବଳିତ । ଆମ ଦେଶ ଏବଂ ଆମ ରାଜ୍ୟ ମଧ୍ୟ ଏଥିରୁ ବାଦ୍ ପଡିନି । କିନ୍ତୁ ଆମ ରାଜ୍ୟ ସରକାର ବିପର୍ଯ୍ୟୟ ପ୍ରଶମନ କ୍ଷେତ୍ରରେ ରହିଥିବା ପୂର୍ବ ଅଭିଜ୍ଞତାକୁ ପାଥେୟ କରି ବେଶ୍ ପାରଦର୍ଶିତାର ସହିତ ରାଜ୍ୟକୁ କରୋନା କବଳରୁ ସୁରକ୍ଷିତ ରଖିବା ପାଇଁ ବହୁବିଧ ପଦକ୍ଷେପ ନେଇଛନ୍ତି । ସ୍ୱତନ୍ତ୍ର ନିୟମାବଳୀ ପ୍ରଣୟନ ସହିତ, ସଂଗରୋଧ କେନ୍ଦ୍ର, ସ୍ୱତନ୍ତ୍ର କୋଭିଡ ଡାକ୍ତରଖାନା, କୋଭିଡ କେୟାର ହୋମ୍, କୋଭିଡ କେୟାର ସେଣ୍ଟର, ପ୍ଲାଜ୍‌ମା ବ୍ୟାଙ୍କ ପ୍ରତିଷ୍ଠା ସମେତ ସ୍ୱାସ୍ଥ୍ୟ ଭିତ୍ତିଭୂମି ପ୍ରତିଷ୍ଠା ଏବଂ ପରିଚାଳନା ସହ ଏ ଦିଗରେ ଅଭିଜ୍ଞତାସମ୍ପନ୍ନ ମାନବ ସମ୍ବଳ ଏବଂ ବୈଷୟିକ ଜ୍ଞାନକୌଶଳ ଉପଯୋଗ କରି ଆଜି କୋଭିଡ ମୁକାବିଲାରେ ଆମ ରାଜ୍ୟ ସରକାର ଜାତୀୟ ସ୍ତରରେ ପ୍ରଶଂସିତ ହୋଇଛନ୍ତି । ଜାତୀୟ ସ୍ତରରେ କରୋନା ମହାମାରୀରେ ଆମର ଆରୋଗ୍ୟ ହାର ଅଧିକ ଏବଂ ମୃତ୍ୟୁହାର କମ୍ ରହିଛି । ରାଜ୍ୟ ସରକାରଙ୍କ ଆନ୍ତରିକତା, କୋଭିଡ ଯୋଦ୍ଧାମାନଙ୍କର ନିରନ୍ତର ସେବା ଓ ସର୍ବୋପରି ଆମ ସାଢେ ୪ କୋଟି ଓଡିଶାବାସୀ ଭାଇଭଉଣୀଙ୍କର ଆନ୍ତରିକ ସହଯୋଗ ଯୋଗୁଁ ଏହା ସମ୍ଭବ ହୋଇଛି । ଏହି ମହାମାରୀ କବଳରୁ ସମ୍ପୂର୍ଣ୍ଣ ଭାବେ ମୁକ୍ତ ହେବା ପାଇଁ ଆମକୁ ଆଉ କିଛି ଦିନ ନିୟମାବଳୀକୁ ମାନି ଚଳିବାକୁ ହେବ । ତେବେ ଯାଇ କରୋନା ହାରିବ, ଆମେ ଜିତିବା ।

ଓଡିଶାର ବିଶ୍ୱସ୍ତରୀୟ ବିକାଶ ନିମନ୍ତେ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ସ୍ୱପ୍ନ ଦେଖିଛନ୍ତି । ତୃଣମୂଳ ସ୍ତରରେ ଗ୍ରାମପଂଚାୟତଠାରୁ ଆରମ୍ଭ କରି ପ୍ରଶାସନର ସର୍ବୋଚ୍ଚ କ୍ଷେତ୍ରରେ ରାଜ୍ୟ ସରକାର ଏଥିପାଇଁ ଅନେକ ସଂସ୍କାର ଆଣିଛନ୍ତି । ବହୁ ଜନହିତୈଷୀ କାର୍ଯ୍ୟକ୍ରମ ଏବଂ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଓଡିଶାର ପ୍ରଗତି କ୍ଷେତ୍ରରେ କିନ୍ତୁ ବାଧା ଆଣୁଛି ପ୍ରାକୃତିକ ବିପର୍ଯ୍ୟୟ । ଯେତେ ବାଧାବିଘ୍ନ ଆସିଲେ ମଧ୍ୟ ଆମେ ସ୍ୱପ୍ନକୁ ସାକାର କରିବା ।

୭୪ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଆସନ୍ତୁ, ଆମେ ସମସ୍ତେ ଏକ ସମୃଦ୍ଧ ତଥା ସଶକ୍ତ ଓଡିଶା ନିର୍ମାଣ ପାଇଁ କାର୍ଯ୍ୟ କରିବାକୁ ସଙ୍କଳ୍ପବଦ୍ଧ ହେବା । ଆମ ପୂର୍ବସୂରୀମାନଙ୍କ ସ୍ୱପ୍ନକୁ ଫଳପ୍ରସୂ କରିବା ନିମନ୍ତେ ତଥା ଆମ ମୁଖ୍ୟମନ୍ତ୍ରୀଙ୍କ ନିଷ୍ଠାପର ଉଦ୍ୟମକୁ ସାକାର କରିବା ସହ ଆମ ରାଜ୍ୟକୁ ଏକ ଅଗ୍ରଣୀ ରାଜ୍ୟ ଭାବେ ଗଢିତୋଳିବା ପାଇଁ ସମସ୍ତେ ଏକ ମନ ଓ ଏକ ପ୍ରାଣରେ ପ୍ରତିବଦ୍ଧତାର ସହ କାର୍ଯ୍ୟକରିବା ।

**ଜୟ ହିନ୍ଦ୍ ।**

**ବନ୍ଦେ ଉତ୍କଳ ଜନନୀ ।**

# ସମ୍ପାଦକୀୟ



କରୋନା ଭୂତାଣୁ ବିରୁଦ୍ଧରେ ସଂଗ୍ରାମ କରି ଓଡ଼ିଶାର ଜନସାଧାରଣଙ୍କ ଜୀବନ ସୁରକ୍ଷା ନିମନ୍ତେ ଶହୀଦ ହୋଇଥିବା କୋଭିଡ ଯୋଦ୍ଧାଙ୍କ ସମ୍ମାନାର୍ଥେ ଏହି ସମ୍ପାଦକୀୟ ପୃଷ୍ଠାଟି ସମର୍ପିତ ।

ସମ୍ପାଦକ, ଉତ୍କଳ ପ୍ରସଙ୍ଗ

# ସ୍ୱାଧୀନତାର ସ୍ୱପ୍ନ ଓ ବାସ୍ତବତା

ଡାକ୍ତର ରବି ରଞ୍ଜନ ସାହୁ

ଆଜି ଆମେ ଆମର ସ୍ୱାଧୀନତା ଦିବସ ପାଳନ କରୁଛୁ । ସ୍ୱାଧୀନତା ଆମର ଜରୁରୀ ଥିଲା ଓ ଏଥିପାଇଁ ଆମକୁ ଶହ ଶହ ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା । ବିଦେଶୀ ଶାସନରୁ ମୁକ୍ତ ହୋଇ ଦେଶରେ ସ୍ୱଦେଶୀ ଶାସନ ପ୍ରତିଷ୍ଠିତ ପାଇଁ ଅନେକ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା । ଅନେକ ଧନ ଜୀବନ ଏହି ସଂଗ୍ରାମରେ ଶେଷ ହୋଇ ଯାଇଥିଲା ଓ ଅନେକ ବାଧା ପ୍ରତିବନ୍ଧକକୁ ପ୍ରତିହତ କରି ଦିନେ ଆମ ଦେଶ ଭାରତ ବିଦେଶୀ ଶାସନରୁ ମୁକ୍ତ ହେଲା । ଏହା ଆମ ପାଇଁ ଯେପରି ଗୌରବର କଥା ଥିଲା, ସେପରି ବିଶ୍ୱ ପାଇଁ ମଧ୍ୟ । ଆମ ସ୍ୱାଧୀନତା ସଂଗ୍ରାମକୁ ଅନେକ ବୀର ନେତୃତ୍ୱ ପ୍ରଦାନ କରିଛନ୍ତି ଏବଂ ଶେଷରେ ଅହିଂସାର ବିଜୟ ହୋଇଛି । ବିନା ରକ୍ତପାତରେ ଭାରତର ସ୍ୱାଧୀନତା ବିଶ୍ୱ ପାଇଁ ଏକ ଆଦର୍ଶ ପାଲଟି ଯାଇଥିଲା । ଅହିଂସାର ରାଜନୀତିକ ପ୍ରୟୋଗ ଦ୍ୱାରା ଇଂରେଜ ସରକାର ଉପନିବେଶବାଦୀମାନେ ଶେଷରେ ପରାସ୍ତ ହୋଇ ଶାସନ ଛାଡ଼ିବାକୁ ବାଧ୍ୟ ହୋଇଥିଲେ । ଭାରତର ସ୍ୱାଧୀନତା ବିଶ୍ୱରେ ନବ ଜାଗରଣ ସୃଷ୍ଟି କରିଥିଲା ଓ ଏହାର ପ୍ରଭାବ ଏସିଆ, ଆଫ୍ରିକା ଆଦି ମହାଦେଶର ଅନେକ ଦେଶରେ ଦେଖିବାକୁ ମିଳିଥିଲା ତଥା ସେହି ଦେଶଗୁଡ଼ିକ ମଧ୍ୟ ବିଦେଶୀ ଉପନିବେଶବାଦୀ ଶାସନ ବ୍ୟବସ୍ଥାରୁ ମୁକ୍ତ ହୋଇପାରିଥିଲେ । ଭାରତର ସ୍ୱାଧୀନତା ବିଶ୍ୱର କୋଟି କୋଟି ଜନସାଧାରଣଙ୍କ ପାଇଁ ମୁକ୍ତିର ପଥ ଉନ୍ମୁକ୍ତ କରିଥିଲା । ଅନେକ ଏହି କାରଣରୁ ଭାରତର ଅହିଂସା ସଂଗ୍ରାମକୁ ଗୁରୁତ୍ୱ ଦେଇ ସାରା ବିଶ୍ୱରେ ଶାନ୍ତି, ମୈତ୍ରୀ ଓ ଅହିଂସାର ବାର୍ତ୍ତା ପ୍ରଚାର କରିଛନ୍ତି । ଆଜି ମଧ୍ୟ ଆମେ ଅନେକ ଦେଶରେ ଅହିଂସାର ଏହି ମର୍ମବାଣୀକୁ ଅନୁଭବ କରୁଛୁ ଓ ମୁକ୍ତି ବା ସ୍ୱାଧୀନତାର ଜୟଗାନ ମଧ୍ୟ କରାଯାଉଛି ।

ଜାତୀୟ ଆନ୍ଦୋଳନରେ ଅଗ୍ରନେତା ରାଷ୍ଟ୍ରପିତା ମହାତ୍ମା ଗାନ୍ଧୀ ସ୍ୱାଧୀନ ଭାରତର ରୂପରେଖ ପ୍ରସ୍ତୁତ କରିଥିଲେ । ତାଙ୍କର ମତରେ ଭାରତ କେବଳ ରାଜନୀତିକ କ୍ଷେତ୍ରରେ ସ୍ୱାଧୀନ ହେବା ଯଥେଷ୍ଟ ନୁହେଁ । ଭାରତର କୋଟି କୋଟି ଜନସାଧାରଣଙ୍କୁ ସାମାଜିକ, ଅର୍ଥନୈତିକ କ୍ଷେତ୍ରରେ ସ୍ୱାଧୀନତା ମିଳିବା ଆବଶ୍ୟକ । ଯେତେଦିନ ପର୍ଯ୍ୟନ୍ତ ଭାରତବାସୀ ସାମାଜିକ ଓ ଆର୍ଥିକ ଦିଗରେ ସ୍ୱାଧୀନ ହୋଇ ନ ପାରିଛନ୍ତି ସେତେଦିନ ପର୍ଯ୍ୟନ୍ତ ତା'ର ରାଜନୀତିକ ସ୍ୱାଧୀନତାର ଏପରି କୌଣସି ଅର୍ଥ ରହିବ ନାହିଁ । ସାମାଜିକ ଓ ଆର୍ଥିକ ସ୍ୱାଧୀନତା ବ୍ୟତିରେକ ରାଜନୀତିକ ସ୍ୱାଧୀନତାର ଦୁର୍ବଳ ହୋଇଯାଇପାରେ ବା ଦିନେ ରାଜନୀତିକ ସ୍ୱାଧୀନତା ସଂକଟରେ ପଡ଼ିଯାଇପାରେ । ବିଶ୍ୱ ଇତିହାସରେ ଏପରି ଘଟଣା ନୂଆ ନୁହେଁ । ଯେତେବେଳେ ରାଜତନ୍ତ୍ର ଶାସନ ପ୍ରଚଳିତ ଥିଲା ସେତେବେଳେ ଯେକୌଣସି କାରଣରୁ ଶାସନ ଦୁର୍ବଳ ହୋଇ ସେହି ଶାସନର ପତନ ଘଟୁଥିଲା ଓ ଅନ୍ୟ ଏକ ରାଜବଂଶ ବା ବ୍ୟକ୍ତିବିଶେଷ ପ୍ରଭାବଶାଳୀ, ଶକ୍ତିଶାଳୀ ହୋଇ ସେ ଦେଶରେ ଶାସନ କରିବାର ନଜିର ରହିଛି । ଏହି ପ୍ରକ୍ରିୟା ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ମଧ୍ୟ ଦୃଷ୍ଟିଗୋଚର ହେବା ଅସମ୍ଭବ ନୁହେଁ । କଷ୍ଟଲବ୍ଧ ସ୍ୱାଧୀନତାକୁ ବଞ୍ଚାଇ

ରଖିବାକୁ ହେଲେ ଜନସାଧାରଣ ଓ ଦେଶବାସୀଙ୍କର ଆର୍ଥିକ ସ୍ୱାବଲମ୍ବନ ବା ସ୍ୱାଧୀନତା ପ୍ରତି ଗୁରୁତ୍ୱ ଦେବାର ଆବଶ୍ୟକତା ରହିଛି । ସେହିପରି ନାଗରିକମାନେ ସାମାଜିକ ଦିଗରୁ ମଧ୍ୟ ମୁକ୍ତ, ଭେଦ-ଭାବ, ଉଚ୍ଚ-ନୀଚ, ସବର୍ଣ୍ଣ-ଅସବର୍ଣ୍ଣ ଆଦି ଭେଦ ବିଚାରରୁ ଦୂରରେ ରହିବା ଉଚିତ । ଏହି ସାମାଜିକ ବିଶୃଙ୍ଖଳା ଅତୀତରେ କ୍ଷତି ପହଞ୍ଚାଇ ଥିଲାବେଳେ ରାଜତନ୍ତ୍ର ବା ରାଜା ଶାସନକୁ ମଧ୍ୟ ବିପଦ ସୃଷ୍ଟି କରିଥିଲା ଓ ଗଣତନ୍ତ୍ର ବ୍ୟବସ୍ଥାକୁ ମଧ୍ୟ ଦୋହଲାଇ ଦେଇ ସ୍ୱାଧୀନତା ପ୍ରତି ଆହ୍ୱାନ ସୃଷ୍ଟି କରିଥିଲା । ଏଣୁ ରାଜନୀତିକ ସ୍ୱାଧୀନତାର ସୁରକ୍ଷା ଓ ସମୃଦ୍ଧି ପାଇଁ ନାଗରିକମାନଙ୍କର ମଧ୍ୟ ଆର୍ଥିକ ଓ ସାମାଜିକ ସ୍ୱାଧୀନତାର ଆବଶ୍ୟକ ରହିଛି ।

ମହାତ୍ମା ଗାନ୍ଧୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ପଣ୍ଡିତ ଜବାହରଲାଲ ନେହେରୁ, ମୌଲାନା ଆଜାଦ, ସମ୍ବିଧାନ ପ୍ରଣେତା ବାବାସାହେବ ଆମ୍ବେଦକରଙ୍କଠାରୁ ଆରମ୍ଭ କରି ଅନେକ ଦେଶଭକ୍ତ ସ୍ୱାଧୀନତା ସଂଗ୍ରାମୀ ତଥା ଦେଶକୁ ପୂର୍ଣ୍ଣପ୍ରାଣରେ ଭଲ ପାଉଥିବା ବ୍ୟକ୍ତିବିଶେଷ ସ୍ୱାଧୀନ ଭାରତ ପାଇଁ ଅନେକ ସ୍ୱପ୍ନ ଦେଖିଥିଲେ । ସ୍ୱାଧୀନ ଭାରତ ଏକ ସମୃଦ୍ଧ ଗଣତନ୍ତ୍ରରେ ପରିଣତ ହେବ । ସମାଜବାଦ, ଭ୍ରାତୃଭାବ, ଧର୍ମ ନିରପେକ୍ଷତା, ସମତା, ସଂପ୍ରୀତି ସହାବସ୍ଥାନ ଆଦି ଭାରତୀୟ ଶାସନ ବ୍ୟବସ୍ଥାରେ ପ୍ରକଟିତ ହେବ । ସମସ୍ତେ ସୁଖ ଶାନ୍ତିରେ କାଳାତିପାତ କରିବେ । ସମସ୍ତଙ୍କର ଖାଦ୍ୟ, ବସ୍ତ୍ର ଓ ବାସ ସମସ୍ୟାର ସମାଧାନ ସହିତ ଦେଶବାସୀଙ୍କର ସାମଗ୍ରିକ ବିକାଶ ହେବା ସହିତ ଭାରତ ବିଶ୍ୱରେ ଏକ ଉନ୍ନତ ରାଷ୍ଟ୍ରରେ ପରିଣତ ହୋଇ ବିଶ୍ୱଗୁରୁର ଆଖ୍ୟା ଅର୍ଜନ କରିବ । ଏପରି ଲକ୍ଷ୍ୟ ନେଇ ଆମେ ଅନେକ ସଫଳତା ହାସଲ କରିଛୁ । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଆମର ବିକାଶ ବିଶ୍ୱକୁ ଆଚମ୍ବିତ କରିଛି । ବିଶେଷ କରି ମହାକାଶ ଗବେଷଣା କ୍ଷେତ୍ରରେ ଆମର ଭୂମିକା ଆକାଶଚୁମ୍ବୀ ହୋଇପାରିଛି । ସେହିପରି ଢ଼ାଞ୍ଚାଗତ ବିକାଶ, କୃଷି, ଶିଳ୍ପ, ସୂଚନା ପ୍ରଯୁକ୍ତିରେ ମଧ୍ୟ ଆମର ବିକାଶ ହୋଇଅଛି । ଆମେ ଏକବିଂଶ ଶତାବ୍ଦୀରେ ଏକ ନୂଆ ଭାରତର ପରିକଳ୍ପନା କରି ସେ ଦିଗରେ ମଧ୍ୟ ଅଗ୍ରସର ହେଉଅଛୁ । ମାତ୍ର ଆମର ଆଶା, ସ୍ୱପ୍ନ ଏବଂ ଲକ୍ଷ୍ୟ ଏବେବି ପୂରା ହୋଇପାରିନାହିଁ । ଭାରତ ବିଶ୍ୱରେ ଏକ ସର୍ବବୃହତ୍ ଜନବହୁଳ ଗଣତାନ୍ତ୍ରିକ ଦେଶ । ମାତ୍ର ଏହି ଗଣତନ୍ତ୍ରକୁ ନେଇ ଦେଶରେ ନାନାଦି ସମସ୍ୟା ରହିଛି । ଉଗ୍ରବାଦ ସହିତ ଆତଙ୍କବାଦ ଦେଶର ଶାସନ ତଥା ବିକାଶ ପ୍ରକ୍ରିୟାରେ ବାଧା ସୃଷ୍ଟି କରି ଆସୁଥିଲାବେଳେ ଦେଶ ତଥା ଏହାର ଜନସାଧାରଣଙ୍କର ଉନ୍ନତି ଏବେ ବି ସମ୍ଭବପର ହୋଇପାରିନାହିଁ । ଆର୍ଥିକ ଅନଗ୍ରସରର ଲୋକମାନଙ୍କ ପାଇଁ ଅବଶ୍ୟ ସରକାର ଅନେକ ଯୋଜନା ପ୍ରଣୟନ କରିଛନ୍ତି ମାତ୍ର ଏସବୁ ଯୋଜନାରୁ ସେହି ଲୋକମାନେ କିପରି ଉପକୃତ ହେଉଛନ୍ତି ତାହା ସଠିକ୍ ଭାବରେ ଅନୁଧ୍ୟାନ କରାଯିବା ଦରକାର । ଗାନ୍ଧିଜୀଙ୍କ ପରି ଅନେକ ଆଶା କରନ୍ତି ଯେ ଦେଶର ଆତ୍ମା ଗାଁରେ ରହିଛି । ଏ ଦେଶର ପାଞ୍ଚଲକ୍ଷ ଗାଁର ଅବସ୍ଥା ଆଜି କିପରି ତାହା ସେହିସବୁ ଗାଁକୁ ଯାଇ ସ୍ୱଚକ୍ଷୁରେ ଦେଖି ଆସିବା ଉଚିତ ହେବ । ଗାଁକୁ ସହରରେ ପରିଣତ କରିଦେବା ପାଇଁ ତ ଯୋଜନା ହୋଇଛି ଏବଂ ସବୁ ସୁବିଧା ଗ୍ରାମମାନଙ୍କରେ ଉପଲବ୍ଧ ପାଇଁ ବ୍ୟବସ୍ଥା ହେଉଛି ମାତ୍ର ଏହାଦ୍ୱାରା ଗାଁର ଓ ଗ୍ରାମବାସୀଙ୍କର ବିକାଶ ପୂର୍ଣ୍ଣମାତ୍ରାରେ ହୋଇପାରୁନାହିଁ । ଏବେ ବି ଗ୍ରାମାଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ ସମସ୍ୟା ରହିଛି । ଗମନାଗମନ ବ୍ୟବସ୍ଥା ଅନେକ ଗାଁକୁ ସମ୍ଭବ ହୋଇପାରିନାହିଁ । ବିଜୁଳି, ପିଇବାପାଣି ସବୁ ଗାଁକୁ ଯୋଗାଇ ଦେବା ସୁବିଧାଜନକ ହୋଇନାହିଁ । ଅପର ପକ୍ଷରେ ଅନେକ ପ୍ରକାର ସମସ୍ୟା ବିକାଶ ବାଟରେ ପ୍ରଧାନ ବାଧକ ସାଜିଛି । ଗାଁଗୁଡ଼ିକୁ ତଥା ଦେଶବାସୀଙ୍କୁ ପୂର୍ଣ୍ଣମାତ୍ରାରେ ସାମାଜିକ ସୁରକ୍ଷା ଦେବା ଆର୍ଥିକ ସୁବିଧା ଯୋଗାଇ ଦେବା ସମ୍ଭବପର ହୋଇପାରିନାହିଁ । ମହିଳାମାନଙ୍କ କ୍ଷେତ୍ରରେ ଆହୁରି ଅନେକ କିଛି କରିବାର ଅଛି । ସ୍ୱାଧୀନ ଦେଶରେ ମହିଳାମାନେ ନିର୍ଭୟରେ ରାତିରେ ଯିବା ଆସିବା କରିପାରିବାର ସ୍ୱପ୍ନ ଦେଖିଥିଲେ ଆମର ରାଷ୍ଟ୍ରନେତାମାନେ । ହେଲେ ଆଜି ମଧ୍ୟ ଏହା ବହୁତ ଦୂରରେ ।

ରାଜନୀତିକ ସ୍ୱାଧୀନତାର ସୁରକ୍ଷା ଓ ସମୃଦ୍ଧି ପାଇଁ ସାମାଜିକ ତଥା ଆର୍ଥିକ ସ୍ୱାଧୀନତାକୁ ହାସଲ କରିବାକୁ ହେବ । ବିଘଟିତ ସମାଜ, ସମାଜ ନୁହେଁ । ସେହିପରି ବିଷମ ବ୍ୟବସ୍ଥା ମଧ୍ୟ ସ୍ୱାଧୀନତାର ପରିପନ୍ଥୀ । ସାମାଜିକ ଓ ଅର୍ଥନୀତିକ ଦିଗରେ ସମତା ସୃଷ୍ଟି ହୋଇ ନ ପାରିବାଟା ଏକ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଏଥିପାଇଁ ରାଜନେତା ଓ ରାଜନୀତିକ ଦଳ ଯେଉଁମାନେ ଶାସନ ପ୍ରକ୍ରିୟାରେ ସାମିଲ ହେଉଛନ୍ତି ସେମାନଙ୍କର ନିଷ୍ଠା ତଥା ବିଶ୍ୱସନୀୟତା ନିହାତି ରହିବା ଦରକାର । ଏତେ ବର୍ଷର ସ୍ୱାଧୀନତାର ପରେ ମଧ୍ୟ  ଦେଶ ଓ ଏହାର ଜନସାଧାରଣ ଅନେକ ପଛରେ ଅଛନ୍ତି । ସାମାଜିକ ନିରାପତ୍ତା ସମସ୍ତଙ୍କ ପାଇଁ ସମ୍ଭବପର ହୋଇପାରି ନାହିଁ ।  ସମସ୍ତଙ୍କୁ ଖାଦ୍ୟ, ବସ୍ତ୍ର ଓ ବାସ ପୂର୍ଣ୍ଣମାତ୍ରାରେ ମିଳିବା ସହିତ ସମସ୍ତଙ୍କ ପାଇଁ ଶିକ୍ଷା ଓ ସ୍ୱାସ୍ଥ୍ୟର ସୁବିଧା ତଥା ଜୀବନଧାରଣର ନିମ୍ନତମ ଆବଶ୍ୟକତା ଉପଲବ୍ଧ ହେବା ଉଚିତ । ଆମେ ଆମ ସ୍ୱାଧୀନତାକୁ ସାର୍ଥକ କରିବା ପାଇଁ ଆହୁରି ଅନେକ କାର୍ଯ୍ୟ କରିବାକୁ ପଡିବ । ଆଶା, ସେଥିପାଇଁ ଆମେ ସମସ୍ତେ ନିଃସ୍ୱାର୍ଥପର ଭାବରେ ପ୍ରଚେଷ୍ଟା ଜାରି ରଖିବା ଉଚିତ । ଯାହାଦ୍ୱାରା  କୋଟି କୋଟି ଭାରତବାସୀ ଜାଗ୍ରତ ହେବେ ଏବଂ ନୂଆ ଭାରତ ଗଠନରେ ଅଗ୍ରସର ହେବେ ।

ଚାନ୍ଦିନୀଚୌକ, କଟକ-୨

# ଭାରତମାତାର ସନ୍ତାନ

**ମଞ୍ଜୁଲତା ସାହୁ**

ଆମରି ଦେଶର ଗରବ ନିଶାଣ
ଜାତୀୟ ପତାକା ଏହି
ଏ ପତାକା ତଳେ ସରବେ ସମାନ
ବଡ ସାନ ନୋହି କେହି ।
ହିନ୍ଦୁ, ଖ୍ରୀଷ୍ଟିଆନ ହେଉ ମୁସଲମାନ
ସଭିଏଁ ଆମେରେ ଭଉଣୀଭାଇ
ଆମେ ଗୋଟିଏ ମାଆର
ଭଉଣୀ ଭାଇ ।
ଭାରତ ମାତାର ଯେତେ ପୁଅ ଝିଅ
ସଭିଏଁ ଆମେ ସମାନ
ଏ ପତାକା ତଳେ ଭାରତ ମାତାର
ଗାଇ ଦିବା ଜୟଗାନ ।
ଏ ପତାକା ଟେକ ରଖିବା ପାଇଁକି
ହୋଇବା ପାଇଁକି ବୀର
ବୀରବେଶ ପରା ଜନମ ଲଭିଛୁ
ନତ ନୁହଁ ଆମ ଶିର ।
ଜାତି ଭେଦଭାବ ଭୁଲି ଯିବା ଆମେ
ମନୁ ତେଜି ଅଭିମାନ
ଏ ପତାକା ପାଇଁ କେତେ କେତେ ବୀର
ବଳି ଦେଲେ ନିଜ ପ୍ରାଣ ।
ପାଦେ ଦଳି ଦେବା ଅରାତି ଦରବ
ବଢାଇବା ଦେଶ ମାନ
ଏ ପତାକା ତଳେ ଭାରତ ମାତାର
ଗାଉଥିବା ଜୟଗାନ
ଗାଇ ଯିବା ଜୟଗାନ ।
ଗୋଟିଏ ମାଆର ସନ୍ତାନ ଆମେ
ନାହିଁ ଭେଦ ଭାବ ଜାତି
ଏ ପତାକା ତଳେ ହସି ହସି ଗୀତ
ଗାଇବା ଆନନ୍ଦେ ମାତି ।

ଗ୍ରାମ- ଶରଧାପୁର, ସଦର ବ୍ଲକ୍
ଜିଲ୍ଲା- ଅନୁଗୋଳ

# ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ନାରୀମାନଙ୍କ ଭୂମିକା

ରମାକାନ୍ତ ନାୟକ

ସହସ୍ରବର୍ଷର ବର୍ବରତାପୂର୍ଣ୍ଣ ନିଷ୍ପେଷଣ, ଅମାନୁଷିକ ଅତ୍ୟାଚାର ଓ ଅନ୍ୟାୟର ଘନ ଅନ୍ଧକାରମୟ ଯୁଗକୁ ବିଦୀର୍ଣ୍ଣ କରି ସ୍ୱାଧୀନତାର ଯେଉଁ ସୂର୍ଯ୍ୟୋଦୟ ଭାରତଭୂମି ସଂଦର୍ଶନ କଲା, ତାହା ସମ୍ଭବ ହୋଇଥିଲା କେତେକେତେ ମହାନ୍ ସଂଗ୍ରାମୀମାନଙ୍କ ଉତ୍ସର୍ଗୀକୃତ ତ୍ୟାଗ, ନିଃସର୍ତ୍ତ ବଳିଦାନ, ନିର୍ମଳ ଦେଶଭକ୍ତି ଓ ବୀରତ୍ୱପାଇଁ । ସମାଜର ପ୍ରତ୍ୟେକବର୍ଗ ପରି ଓଡ଼ିଶାର ନାରୀମାନଙ୍କର ଭୂମିକା ଜାତୀୟ ଆନ୍ଦୋଳନର ସମସ୍ତ ପର୍ଯ୍ୟାୟରେ ଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ସେମାନେ ଯେଉଁ ଅତୁଳନୀୟ ଦେଶପ୍ରେମ ଓ ସାହସର ପରାକାଷ୍ଠା ପ୍ରଦର୍ଶନ କରି ମାତୃଭୂମି ପାଇଁ ଉତ୍ସର୍ଗୀକୃତ ଅବଦାନ ଦେଇ ଯାଇଛନ୍ତି, ତାହା ଇତିହାସ ପୃଷ୍ଠାରେ ଚିର ଜାଜ୍ୱଲ୍ୟମାନ ହୋଇ ରହିବ ।

ପ୍ରାକ୍ ସ୍ୱାଧୀନତା କାଳରେ ମୁଷ୍ଟିମେୟ କେତେକ ସମ୍ଭ୍ରାନ୍ତ ଓ ରାଜନୈତିକ ପରିବାର ବ୍ୟତୀତ ସାଧାରଣ ପରିବାରର ମହିଳାମାନଙ୍କ ପାଇଁ ରାଜନୀତି ଥିଲା ଅକଳ୍ପନୀୟ ଓ ଅବିହିତ । କିନ୍ତୁ ଜାତୀୟ ରାଜନୈତିକ ଦୃଶ୍ୟପଟରେ ଯେବେଠାରୁ ମହାତ୍ମା ଗାନ୍ଧୀଙ୍କର ଆବିର୍ଭାବ ଘଟିଲା, ସେବେଠାରୁ ସମସ୍ତ ଶ୍ରେଣୀପରି ମହିଳା ସମାଜରେ ମଧ୍ୟ ନୂତନ ଆତ୍ମବିଶ୍ୱାସ, ଆତ୍ମନିର୍ଭରଶୀଳତା ଓ ଅଫୁରନ୍ତ ଉନ୍ମାଦନାର ସଞ୍ଚାର ହେଲା । ଯୁଗଯୁଗ ବ୍ୟାପୀ ସେମାନଙ୍କ ମଧ୍ୟରେ ଥିବା ବଦ୍ଧମୂଳ ଅନ୍ଧବିଶ୍ୱାସ ଓ କୁସଂସ୍କାରର ପର୍ଦ୍ଦାକୁ ଛିନ୍ନ କରି, ଏପରିକି ପରିବାରର ତୀବ୍ର ବିରୋଧକୁ ଭ୍ରୁକ୍ଷେପ ନକରି ଓଡ଼ିଶାର ମହିଳାମାନେ ଯେପରି ସ୍ୱେଚ୍ଛାକୃତ ଭାବରେ ଜାତୀୟ ସଂଗ୍ରାମରେ ଯୋଗଦାନ କଲେ, ତାହା ବିସ୍ମୟଜନକ, ରୋମାଞ୍ଚକର ଓ ଉତ୍ସାହଜନକ ଥିଲା । ସେଥିଯୋଗୁଁ ଜାତୀୟ ଆନ୍ଦୋଳନ ଅଧିକ ଶକ୍ତିଶାଳୀ ଓ ପ୍ରଭାବଶାଳୀ ହୋଇପାରିଥିଲା । ସେମାନେ ଯେ କେବଳ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଥିଲେ ତାହା ନୁହେଁ, ସାମାଜିକ ବିକାଶ, ବ୍ୟକ୍ତି ସ୍ୱାଧୀନତା, ଜାତୀୟ ଏକତା, ସାମ୍ପ୍ରଦାୟିକ ସଦ୍ଭାବ, ନିଶା ନିବାରଣ, ଅସ୍ପୃଶ୍ୟତାର ବିରୋଧ, ନାରୀଶିକ୍ଷାର ପ୍ରସାର ତଥା ସାମାଜିକ ଅନୁଷ୍ଠାନଗୁଡ଼ିକର ଗଣତାନ୍ତ୍ରିକରଣ ନିମିତ୍ତ ସେମାନଙ୍କର ଅଦମ୍ୟ ଉଦ୍ୟମ ପ୍ରଶଂସନୀୟ ଥିଲା । ରମାଦେବୀ, ସରଳା ଦେବୀ, କୁନ୍ତଳା କୁମାରୀ ସାବତ, ଶୈଳବାଳା ଦାସ ଓ ମାଳତୀ ଚୌଧୁରୀ ଥିଲେ ସ୍ୱାଧୀନତା ସଂଗ୍ରାମର ଜଣେ ଜଣେ ଦୀପ୍ତିମତୀ ବ୍ୟକ୍ତିତ୍ୱ । ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ମହିଳାମାନଙ୍କର ଭୂମିକା ସଂକ୍ଷେପରେ ଉଲ୍ଲିଖିତ ହେଲା ।

**ସ୍ୱଦେଶୀ ଆନ୍ଦୋଳନ:** ଏହି ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ଥିଲା ବିଦେଶୀ ଦ୍ରବ୍ୟର ବର୍ଜନ ଓ ସ୍ୱଦେଶୀ କୁଟୀରଶିଳ୍ପର ପ୍ରସାର । ଏଥିରେ ଅନୁପ୍ରାଣିତ ହୋଇ ରମାଦେବୀ, ହୈମବତୀ ଦେବୀ, ଶ୍ରଦ୍ଧାମଣି ଦେବୀ, ହାରାମଣି ଦେବୀ, ଧନମଣି ଦେବୀ, ରାଧାମଣି ଦେବୀ, ସୁନାମଣି ଦେବୀ, ସରଳା ଦେବୀ, ଆଶାଲତା ଦେବୀ ଓ ଅନ୍ୟ କେତେକ ମହୀୟସୀ ମହିଳା ଆନ୍ଦୋଳନରେ ଅବତୀର୍ଣ୍ଣ ହୋଇ ଉତ୍କଳୀୟ କୁଟୀରଶିଳ୍ପର ପୁନଃପ୍ରସାର ପାଇଁ ପ୍ରୟାସ କରିଥିଲେ । ଖୁଦିରାମଙ୍କୁ ଫାଶିଦଣ୍ଡ ପରେ କ୍ଷେତ୍ରମଣି ଦେବୀ, ବିମଳାଦେବୀ, ଭି.ସୁଭଦ୍ରା ମା',

ପୋକାଲୟ ତରାମା, ଜୟନ୍ତୀ ସୁରମା ଓ ଅନ୍ୟ କେତେକ ମହିଳାଙ୍କ ପ୍ରଚାର ଯୋଗୁଁ ସ୍ୱରାଜ ଓ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବେଶ ଲୋକପ୍ରିୟତା ଅର୍ଜନ କରିଥିଲା । ଅନ୍ୟ ଯେଉଁ ନାରୀନେତ୍ରୀମାନେ ସ୍ୱଦେଶୀ ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ସେମାନେ ଥିଲେ ଜାୟବତୀ ପଟ୍ଟନାୟକ, ସୁମିତ୍ରା ଦେବୀ, ନିଶାମଣି ଦେବୀ, ନିତାମ୍ବିନୀ ପାତ୍ର, ସୁନାମଣି ଦେବୀ, ରାଧାମଣି ଦେବୀ । ପଣ୍ଡିତ ଗୋପବନ୍ଧୁ ଦାସ ଥିଲେ ସେମାନଙ୍କ ପାଇଁ ମୁଖ୍ୟତଃ ପ୍ରେରଣାର ଉତ୍ସ ।

୧୯୧୯ ମସିହା ଏପ୍ରିଲ ୬ ତାରିଖରେ ସାରା ଦେଶରେ ଯେଉଁ ସମ୍ପୂର୍ଣ୍ଣ ହରତାଳ ଆୟୋଜିତ ହୋଇଥିଲା, ତାହା ଓଡ଼ିଶାରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ସରଳା ଦେବୀଙ୍କ ବକ୍ତବ୍ୟ ଥିଲା, "In fact, that was the event that signalled the start of the freedom movement in Orissa." ଏହି ହରତାଳ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ମହିଳାମାନଙ୍କ ସଂପୃକ୍ତି କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା ବୋଲି ରମାଦେବୀ ମତବ୍ୟକ୍ତ କରନ୍ତି । ଗାନ୍ଧିଜୀ ଅନୁଭବ କରିଥିଲେ କ୍ଷମା, ତ୍ୟାଗ, ସହନଶୀଳତା ଓ ଧୈର୍ଯ୍ୟର ପ୍ରତିମୂର୍ତ୍ତି ନାରୀ ଭିତରେ ରହିଛି ଅପରିସୀମ ଶକ୍ତି । ଉଭୟ ପରିବାର ଓ ରାଷ୍ଟ୍ର ପାଇଁ ନାରୀଶକ୍ତିର ଅଭ୍ୟୁଦୟ ଏକାନ୍ତ ଆବଶ୍ୟକ । ଆବଶ୍ୟକ ନାରୀର ସ୍ୱାଧୀନତା । ପ୍ରତ୍ୟକ୍ଷ ଓ ପରୋକ୍ଷରେ ନାରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ କରିବାକୁ ପଡ଼ିବ । ତାଙ୍କର ମହାମନ୍ତ୍ର ଭାରତୀୟ ପରମ୍ପରାରେ ଅବଳା ଦୁର୍ବଳା ନାରୀକୁ ତେଜୋଦୀପ୍ତ ସବଳ ବହ୍ନିକନ୍ୟାରେ ପରିଣତ କଲା । ଗାନ୍ଧୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ଶହ ଶହ ନାରୀ ମୁକ୍ତି ସଂଗ୍ରାମରେ ଝାସ ଦେଇ ଅକଥନୀୟ ଦୁଃଖଦୁର୍ଦ୍ଦଶା ବରଣ କରିଥିଲେ । ଏକାନ୍ତ ନିଭୃତରେ ବାସ କରିବାକୁ ପରିହାର କରି ମହିଳାମାନେ ସର୍ବସାଧାରଣ ରାଜନୈତିକ କାର୍ଯ୍ୟକ୍ରମରେ ତଥା ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କଲେ । ଏହି ସମୟରେ ନାରୀ ଜାଗରଣ ଶୀର୍ଷତମ ସ୍ଥାନରେ ପହଞ୍ଚିଥିଲା ।

**ଅସହଯୋଗ ଆନ୍ଦୋଳନ :** ସତ୍ୟାଗ୍ରହ ଓ ଅହିଂସାର ପୂଜାରୀ ମହାତ୍ମା ଗାନ୍ଧୀ ୧୯୨୧ରେ କାଠଯୋଡ଼ି ନଦୀକୂଳରେ ଯେଉଁ ବିଶାଳ ସଭାରେ ଉଦ୍‌ବୋଧନ ଦେଇଥିଲେ ସେଥିରେ ବହୁ ସଂଖ୍ୟକ ମହିଳା ମଧ୍ୟ ଯୋଗ ଦେଇଥିଲେ । ଏହି ସଭାରେ ରମାଦେବୀଙ୍କ ନେତୃତ୍ୱରେ ତାଙ୍କ ସମେତ ଅନେକ ନାରୀନେତ୍ରୀ ସେମାନଙ୍କର ସ୍ୱର୍ଣ୍ଣ ଅଳଙ୍କାରମାନ ସ୍ୱାଧୀନତା ସଂଗ୍ରାମ ଓ ଖଦି ଆନ୍ଦୋଳନ ଉଦ୍ଦେଶ୍ୟରେ ମହାତ୍ମା ଗାନ୍ଧୀଙ୍କୁ ଅର୍ପଣ କରିଦେଇଥିଲେ ।

ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ କଂଗ୍ରେସ ଓ ନାରୀ ସମାଜରେ ଆଲୋଡ଼ନ ସୃଷ୍ଟିକଲା । ବିପୁଳ ସଂଖ୍ୟାରେ ମହିଳାମାନେ ଅସୀମ ଆଗ୍ରହର ସହିତ କଂଗ୍ରେସ ଓ ଚରଖା ଆନ୍ଦୋଳନକୁ ଗ୍ରହଣ କରିନେଲେ । ସାମାଜିକ କୁସଂସ୍କାର ବିରୋଧରେ ଦୃଢ଼ ସ୍ୱର ଉତ୍ତୋଳନ ପୂର୍ବକ ପୁରୁଷମାନଙ୍କ ସହିତ ସମକକ୍ଷ ହୋଇ ସଭାସମିତି, ରାଜନୈତିକ କାର୍ଯ୍ୟକ୍ରମ, ଶୋଭାଯାତ୍ରା ଓ ବିକ୍ଷୋଭରେ ଯୋଗଦେଲେ । ଏପରିକି ମାତୃଭୂମି ପାଇଁ କାରାବରଣ କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । ସରଳାଦେବୀ, ଗୋଦାବରୀ ଦେବୀ, ହୈମବତୀ ଦେବୀ ପ୍ରଭୃତି ସଂଭ୍ରାନ୍ତ ପରିବାରର ମହିଳାମାନେ ଏହି ସଂଗ୍ରାମରେ ସାମିଲ ହେଲେ । ବିଦେଶୀ ଓ ଅବକାରୀ ଦ୍ରବ୍ୟ ବିକ୍ରୟକେନ୍ଦ୍ର ସମ୍ମୁଖରେ ଧାରଣା, କୋର୍ଟ କଚେରୀ, ବିଦ୍ୟାଳୟ, ମହାବିଦ୍ୟାଳୟ, ବିଦେଶୀ ବସ୍ତ୍ର ପ୍ରଭୃତି ବର୍ଜନ ଇତ୍ୟାଦି ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ମହିଳାମାନଙ୍କ ଦ୍ୱାରା ପରିଚାଳିତ ହେଲା । ଆଧାରମଣି ନାମକ ଜନୈକ ମହିଳା ତାଙ୍କ ପରିବାରର ସଦସ୍ୟମାନଙ୍କୁ ସଂଗ୍ରାମରେ ଯୋଗଦେବାକୁ ପ୍ରବର୍ତ୍ତାଇବା ପାଇଁ ନିଜ ଗୃହ ମଧ୍ୟରେ ଅନଶନ କରିବା ଭଳି ଘଟଣାର ଉଦାହରଣ ଦେଖିବାକୁ ମିଳିଥିଲା ।

ମହିଳା ସତ୍ୟାଗ୍ରହୀମାନଙ୍କୁ ତାଲିମ ପ୍ରଦାନ କରାଗଲା । ଅହିଂସା ନୀତି ଓ ସ୍ୱଦେଶୀ ଆଦର୍ଶକୁ ଯଥାର୍ଥ ଭାବରେ ଅନୁସରଣ କରିବା ପାଇଁ ସେମାନେ ଶପଥ ଗ୍ରହଣ କଲେ । ବହୁ ବାଧାବିଘ୍ନକୁ ଖାତିର ନକରି ଅଗମ୍ୟ ପୁରପଲ୍ଲୀରେ ନାରୀ ସଂଗ୍ରାମୀମାନେ ବ୍ରିଟିଶ ସରକାରଙ୍କୁ ଅସହଯୋଗ କରିବା ପାଇଁ ଲୋକମାନଙ୍କ ମଧ୍ୟରେ

ସଚେତନତା ସୃଷ୍ଟିକଲେ । ଏପରିକି ଅନେକ ସମୟରେ ସେମାନଙ୍କୁ ବିନା ଖାଦ୍ୟ ଓ ପାନୀୟରେ ଏକାଧିକ ଦିନ ଅତିବାହିତ କରିବାକୁ ପଡୁଥିଲା । ପୁଲିସ ଭୟରେ କଂଗ୍ରେସର ବାର୍ତ୍ତାକୁ ରାତ୍ରୀକାଳରେ ଗୋପନରେ ଓ ସନ୍ତର୍ପଣରେ ସରବରାହର ଦାୟିତ୍ୱ ନ୍ୟସ୍ତ ଥିଲା ମହିଳା ସ୍ୱେଚ୍ଛାସେବୀମାନଙ୍କ ଉପରେ । ରମାଦେବୀ, ସରଳାଦେବୀ, ସୁଭଦ୍ରା ମହତାବ, ସରୋଜିନୀ ଦେବୀ, ହୈମବତୀ ଦେବୀ, ଲକ୍ଷ୍ମୀବାଈ, ହାରାମଣି ଦେବୀ, ସୁନାମଣି ଦେବୀ, ରାଧାମଣି ଦେବୀ, ଅହଲ୍ୟା ଦେବୀ, ଗୌରୀ ଦେବୀ, କୃଷ୍ଣପ୍ରିୟା ଦେବୀ, କୋକିଳା ଦେବୀ ପ୍ରମୁଖ ଅସହଯୋଗ ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରି ସେମାନଙ୍କ ବହୁମୂଲ୍ୟ ସମୟ ଓ ଜୀବନକୁ ଦେଶ ପାଇଁ ଉତ୍ସର୍ଗ କରିଦେଇଥିଲେ ।

ମଦ ଦୋକାନ ସମ୍ମୁଖରେ ଧାରଣା ଦେଉଥିବାରୁ ରମାଦେବୀ ଗିରଫ ହୋଇଥିଲେ । ଏହାର ପ୍ରତିବାଦରେ ସମଗ୍ର କଟକରେ 'ହରତାଳ' କରାଯାଇଥିଲା । ମାତ୍ର ସରକାର ତାହାକୁ କର୍ଣ୍ଣପାତ କଲେ ନାହିଁ । ସରଳା ଦେବୀ, ଛାୟାମଣି ଦେବୀ, ସୁଭଦ୍ରା ମା', ପୋକ୍‌ଲାୟ ତରା ମା', ଲକ୍ଷ୍ମୀବାଈ ପ୍ରଭୃତି ଓଡ଼ିଶାର ବିଭିନ୍ନ ସ୍ଥାନରେ ବନ୍ଦୀ ହେଲେ । ରେମୁଣା ବଜାରରେ ବିକ୍ଷୋଭ ପ୍ରଦର୍ଶନ ହେତୁ ଅହଲ୍ୟା ଦେବୀ, ବିଷ୍ଣୁପ୍ରିୟା ଜେନା, ଛାୟାଦେବୀ ଓ ଅନ୍ୟ କେତେକ ଗିରଫ ହେଲେ । ବାଲେଶ୍ୱରରେ ଅଫିମ ଦୋକାନ ସମ୍ମୁଖରେ ବିକ୍ଷୋଭ ପାଇଁ ଚମ୍ପାମଣି ଦେବୀ ଓ ଦୁର୍ଗାମଣି ଦେବୀ ମଧ୍ୟ ଗରିଫ ହୋଇଥିଲେ ।

ଅସହଯୋଗ ଆନ୍ଦୋଳନ କାଳରେ ସମଗ୍ର ପ୍ରଦେଶରେ ଅନେକ 'ଜାତୀୟ ଶିକ୍ଷାନୁଷ୍ଠାନ' ପ୍ରତିଷ୍ଠିତ ହୋଇଥିଲା । କଟକରେ ସ୍ୱରାଜ୍ୟ ଆଶ୍ରମ ରମାଦେବୀଙ୍କ ଦ୍ୱାରା, ଜଗତସିଂହପୁରରେ ଅଳକାଶ୍ରମ ସରଳାଦେବୀଙ୍କ ଦ୍ୱାରା, ବାଲେଶ୍ୱରରେ 'ସ୍ୱରାଜ୍ୟ' ସୁଭଦ୍ରା ମହତାବଙ୍କ ଦ୍ୱାରା, କଟକସ୍ଥିତ ନୟାବଜାର ଜାତୀୟ ବିଦ୍ୟାଳୟ ଆଶାଲତା ଦେବୀଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ଓଡ଼ିଶାର ଗ୍ରାମ୍ୟ ବାଳିକାମାନଙ୍କୁ ଗାନ୍ଧୀଙ୍କ ପ୍ରବର୍ତ୍ତିତ ଅଖିଳ ଭାରତୀୟ ଚରଖା ସଂଘରେ ସାମିଲ କରାଗଲା ଏବଂ ଓଡ଼ିଶାରେ ଚରଖା ଆନ୍ଦୋଳନ ଓ ହସ୍ତତନ୍ତ ବୁଣା ବସ୍ତ୍ର ଲୋକପ୍ରିୟତା ଅର୍ଜନ କଲା ।

ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ ହେବାପରେ ଉତ୍କଳୀୟ ମହିଳାମାନେ ସେମାନଙ୍କ ନିଜ ନେତୃତ୍ୱରେ ସାମାଜିକ, ରାଜନୈତିକ ଓ ଶିକ୍ଷାଗତ ପ୍ରଗତି ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ୧୯୨୪ ମସିହାରେ ନିଖିଳ ଓଡ଼ିଶା ମହିଳା ସମ୍ମିଳନୀର ଆୟୋଜନ ହୋଇଥିଲା । ଏହି କାଳରେ ପୁରୀରେ ମହିଳାବନ୍ଧୁ ସମିତି, ସୋରୋରେ ନାରୀ ମଙ୍ଗଳ ସମିତି, ଭଦ୍ରକରେ ନାରୀ ରକ୍ଷା ସମିତି, ବାଲେଶ୍ୱରରେ ନାରୀ ସମିତି, ବ୍ରହ୍ମପୁରରେ ମହିଳା ସମିତି ସମେତ ଅନେକ ନାରୀ ସଂଗଠନମାନ ଜନ୍ମଗ୍ରହଣ କରିଥିଲେ । ପ୍ରାକୃତିକ ଦୁର୍ବିପାକ ସମୟରେ ରିଲିଫ ପ୍ରଦାନ, ହରିଜନ ବସ୍ତି ସଫେଇ, ସାମାଜିକ କୁସଂସ୍କାର ଓ ଅସ୍ପୃଶ୍ୟତାର ବିଲୋପ, ନିଶା ନିବାରଣ, ସ୍ଥାନୀୟ ବିବାଦର ଆପୋଷ ସମାଧାନ ଥିଲା ଏହିସବୁ ସଂଗଠନର ପ୍ରଧାନ କର୍ତ୍ତବ୍ୟ ।

**ଆଇନ ଅମାନ୍ୟ ଆନ୍ଦୋଳନ :** ୧୯୨୯ ଡିସେମ୍ବରରେ କଂଗ୍ରେସର ଲାହୋର ସମ୍ମିଳନୀର ନିଷ୍ପତ୍ତି ଅନୁଯାୟୀ ଦେଶର ପୂର୍ଣ୍ଣ ସ୍ୱାଧୀନତା ଦାବି କରି ଆଇନ ଅମାନ୍ୟ ଆନ୍ଦୋଳନର ଉଦ୍‌ଘୋଷଣା ହେଲା । ଆନ୍ଦୋଳନ ପ୍ରାରମ୍ଭରେ ଘୃଣ୍ୟ ଲବଣ ଟିକସକୁ ଲକ୍ଷ୍ୟ କରି ଗାନ୍ଧିଜୀ କହିଥିଲେ, "I regard this tax to be the most iniquitous of all from the poor man's standpoint. As the Independence Movement is essential for the poorest in the land, the beginning will be made with this evil." ପୂର୍ଣ୍ଣ ସ୍ୱାଧୀନତାର ଦାବିକୁ ସମର୍ଥନ କରି ୧୯୩୦ ଜାନୁଆରୀ ୨୬ ତାରିଖରେ କଟକର ଲୋକସେବା ଆଶ୍ରମଠାରେ ରମାଦେବୀ ଜାତୀୟ ପତାକା ଉତ୍ତୋଳନ କଲେ । ସେଦିନ ସଂଧ୍ୟାରେ ତାଙ୍କ ବାସଭବନଠାରେ ଅନୁଷ୍ଠିତ ଏକ ସଭାରେ ତାଙ୍କ ସ୍ୱାମୀ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀ ପୂର୍ଣ୍ଣ ସ୍ୱରାଜର ପ୍ରସ୍ତାବକୁ ପାଠ କରିଥିଲେ । ଏଥିରେ ମାଳତୀ ଚୌଧୁରୀ, କିରଣବାଳା ଦେବୀ ପ୍ରମୁଖ ଯୋଗଦେଇଥିଲେ ।

୧୯୩୦ ମାର୍ଚ୍ଚ ୧୨ ତାରିଖରେ ଗାନ୍ଧିଜୀଙ୍କ ଦାଣ୍ଡିଯାତ୍ରା ସହିତ ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ଉଦ୍ଘାଟିତ ହେଲା । ଏପ୍ରିଲ ୬ ତାରିଖରେ ଯେତେବେଳେ ମହାତ୍ମା ଗାନ୍ଧୀ ଦାଣ୍ଡିଠାରେ ଲବଣ ଆଇନକୁ ଉଲ୍ଲଘଂନ କରୁଥିଲେ, ସେତେବେଳେ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ୨୧ଜଣ ସତ୍ୟାଗ୍ରହୀ କଟକ ସ୍ୱରାଜ ଆଶ୍ରମରୁ ଇଞ୍ଚୁଡ଼ିକୁ ଲବଣ ସତ୍ୟାଗ୍ରହ ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ । ଏପ୍ରିଲ ୧୩ ତାରିଖରେ ପ୍ରଭାତ ପ୍ରାର୍ଥନା ପରେ ଆଚାର୍ଯ୍ୟ ହରିହର ପନ୍ଦରଶହ ଗ୍ରାମ୍ୟ ମହିଳାଙ୍କ ସମେତ ହଜାର ହଜାର ସ୍ୱାଧୀନତା ସଂଗ୍ରାମୀଙ୍କ ଉପସ୍ଥିତିରେ ସମୁଦ୍ରରୁ ଲୁଣ ସଂଗ୍ରହକରି ଓଡ଼ିଶାରେ ସତ୍ୟାଗ୍ରହର ଶୁଭାରମ୍ଭ କଲେ । ରମାଦେବୀ ଓ ମାଳତୀଦେବୀ ଏହି କାର୍ଯ୍ୟକ୍ରମରେ ଉପସ୍ଥିତ ରହିଥିଲେ ।

ଏପ୍ରିଲ ୨୦ ତାରିଖରେ କୁଜଙ୍ଗର ରାଣୀଙ୍କ ଆହ୍ୱାନକ୍ରମେ ରମାଦେବୀ, ମାଳତୀ ଦେବୀ, ପ୍ରଫୁଲ୍ଲ କୁମାରୀ ଦେବୀ ଓ ଭାଗ୍ୟବତୀ ପାଟମହାଦେବୀଙ୍କ ସମେତ ଶହ ଶହ ନାରୀ ସତ୍ୟାଗ୍ରହୀ କୁଜଙ୍ଗଠାରେ ଲବଣ ସତ୍ୟାଗ୍ରହରେ ସାମିଲ ହୋଇଥିଲେ । ସେହି ସମୟରେ ଗଞ୍ଜାମ ଜିଲ୍ଲାରେ ସରଳାଦେବୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ପରିଚାଳିତ ହୋଇଥିଲା । ୧୯୩୦ ମଇ ମାସରେ ଗଞ୍ଜାମରୁ କୁନ୍ଦଲତା ଦେବୀ ଓ କିଶୋରୀମଣି ଦେବୀ ବନ୍ଦୀ ହୋଇଥିଲେ । ଗୋବ୍ରା ସଭାରେ କୁନ୍ଦଲତା ଦେବୀ ତାଙ୍କର ସମସ୍ତ ଅଳଙ୍କାର ଆନ୍ଦୋଳନ ନିମିତ୍ତ ସରଳାଦେବୀଙ୍କୁ ଦାନ କରିଦେଇଥିଲେ । କିଶୋରୀମଣି ଦେବୀ ବ୍ରହ୍ମପୁରଠାରେ 'ପ୍ରଗତି ଆଶ୍ରମ' ପ୍ରତିଷ୍ଠା କରି ଯୁବ ସତ୍ୟାଗ୍ରହୀଙ୍କୁ ତାଲିମ ପ୍ରଦାନର ବ୍ୟବସ୍ଥା କରିଥିଲେ । ପୁଲିସର ଜୁଲମ୍, ଅତ୍ୟାଚାର ଓ ଗିରଫଦାରୀକୁ ଭ୍ରୂକ୍ଷେପ ନକରି ମହିଳାମାନେ ଏହି ସମୟରେ ଯେଉଁ ଅଦମ୍ୟ ସାହସ ଓ ବୀରତ୍ୱ ପ୍ରଦର୍ଶନ କରିଥିଲେ, ଇତିହାସରେ ତାହାର ପଟାନ୍ତର ନାହିଁ ।

ମୌସୁମୀ ଆଗମନ ସହିତ ଲବଣ ସତ୍ୟାଗ୍ରହ ସ୍ଥଗିତ ରହିଥିଲା ଏବଂ ଗାନ୍ଧୀ ଇର୍‌ୱଇନ୍ ଚୁକ୍ତି ଅନୁଯାୟୀ ଆଇନ୍ ଅମାନ୍ୟ ଆନ୍ଦୋଳନକୁ ବନ୍ଦ ରଖାଗଲା । ୧୯୩୧ ମାର୍ଚ୍ଚ ୧୫ ତାରିଖରେ ରମାଦେବୀ ଓ ମାଳତୀ ଦେବୀ କାରାମୁକ୍ତ ହେଲେ । ଏହାପରେ ସେମାନେ କାଠଯୋଡ଼ି ବାଲୁକା ଶଯ୍ୟାରେ ଏକ ସଭାର ଆୟୋଜନ କରି ଦେଶପାଇଁ ତ୍ୟାଗ କରିବାକୁ ଜନତାଙ୍କୁ ଆହ୍ୱାନ ଦେଇଥିଲେ । ମାର୍ଚ୍ଚ ୨୧ ତାରିଖରେ କଟକ ସ୍ଥିତ ଜୈନ ମନ୍ଦିର ପ୍ରାଙ୍ଗଣରେ ଏକ ସଭାର ଆୟୋଜନ ହେଲା । ଏଥିରେ ବୀଣାପାଣି ଦେବୀ, କିରଣବାଳା ସେନ୍, ମାଳତୀ ଚୌଧୁରୀ, ବିମଳା ଦତ୍ତ, ସୁନ୍ଦରମଣି ଦେବୀ ପ୍ରଭୃତି ଯୋଗଦେଇ ମହିଳା କର୍ମୀମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ କରାଇଥିଲେ । ମଇ ୧୦ ତାରିଖରେ ଜାହ୍ନବୀ ଦେବୀଙ୍କ ଅଧକ୍ଷତାରେ ପୁରୀଠାରେ ଏକ ବିଶାଳ ମହିଳା ସମ୍ମିଳନୀ ଅନୁଷ୍ଠିତ ହୋଇ ସାମାଜିକ ଅନ୍ଧବିଶ୍ୱାସ ଦୂରୀକରଣ, ନାରୀଶିକ୍ଷାର ପ୍ରସାର ଓ ଆଇନ ଅମାନ୍ୟ ଆନ୍ଦୋଳନର ସମାପ୍ତି ସମ୍ପର୍କରେ ଆଲୋଚନା ହୋଇଥିଲା । ଏହି ସଭାରେ କଟକରୁ ରମାଦେବୀ, କିରଣବାଳା ସେନ, ସୁନ୍ଦରମଣି ଦେବୀ, ବାଲେଶ୍ୱରରୁ ଜାହ୍ନବୀ ଦେବୀ, କୁମୁଦିନୀ ଦେବୀ, ସତ୍ୟବାଦୀରୁ ଚଞ୍ଚଳାବାଳା ଜେନା, ରାଧାମଣି ଦେବୀ, ଗୌରୀ ଦେବୀ, ଇଚ୍ଛାମଣିଦେବୀ, ରୋହିଣୀ ଦେବୀ, ନିମାପଡ଼ାରୁ ସାବିତ୍ରୀ ଦେବୀ, କୁମୁଦଲତା ଦେବୀ ଯୋଗଦେଇ ବକ୍ତବ୍ୟ ପ୍ରଦାନ କରିଥିଲେ ।

୧୯୩୧ ମାର୍ଚ୍ଚରେ କଂଗ୍ରେସର ଐତିହାସିକ କରାଚୀ ସମ୍ମିଳନୀରେ ବାଲେଶ୍ୱରରୁ ଜାହ୍ନବୀ ଦେବୀ, ପୁରୁବାଈ ଦେବୀ, ଚନ୍ଦ୍ରମଣି ଦେବୀ, ନିଶାମଣି ଦେବୀ, କୁମୁଦିନୀ ଦେବୀ, ସମ୍ବଲପୁରରୁ ଜାନକୀ ବାଈ, କୃଷ୍ଣାବାଈ, କଟକରୁ ମାଳତୀ ଚୌଧୁରୀ, ସରଳା ଦେବୀ, ରମାଦେବୀ, କିରଣବାଳା ଦେବୀ, ଶୈଳବାଳା ଚୌଧୁରୀ, ସରୋଜିନୀ ଚୌଧୁରୀ, ପଦ୍ମାବତୀ ଦେବୀ ପ୍ରମୁଖ ନାରୀ ନେତ୍ରୀମାନେ ଯୋଗଦେଇଥିଲେ । ଓଡ଼ିଶାରୁ ଏତେ ସଂଖ୍ୟକ ମହିଳା ପ୍ରତିନିଧିଙ୍କ ଯୋଗଦାନ ଦେଖି ମହାତ୍ମା ଗାନ୍ଧୀ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ଦ୍ୱିତୀୟ ଗୋଲଟେବୁଲ ବୈଠକରୁ ଗାନ୍ଧିଜୀଙ୍କ ପ୍ରତ୍ୟାବର୍ତ୍ତନ ପରେ ଆଇନ ଅମାନ୍ୟ ଆନ୍ଦୋଳନ ପୁନର୍ବାର ଆରମ୍ଭ ହେଲା । ୧୯୩୨ ଜାନୁଆରୀ ୨୬ରେ କଟକର ଚୌଧୁରୀ ବଜାରଠାରେ ସ୍ୱାଧୀନତା ଦିବସର ଶପଥପତ୍ର

ପାଠକରୁଥିବା ସମୟରେ ରମାଦେବୀଙ୍କୁ ଗିରଫ କରାଗଲା । ସେହିପରି ବାଲୁବଜାରଠାରେ କିରଣବାଳା ସେନ୍ ଅନ୍ୟ ଦୁଇଜଣ ମହିଳାକର୍ମୀଙ୍କ ସହିତ ଗିରଫ ହେଲେ । ପୁରୀଠାରେ ହାରାମଣୀ ଦେବୀ, ବାଲେଶ୍ୱରରେ ଜାହ୍ନବୀ ଦେବୀ ଓ ଗୌରୀ ଦେବୀ, ସାକ୍ଷୀଗୋପାଳଠାରେ ନୀଳମଣି ଦେବୀ ଓ ଶ୍ରଦ୍ଧାମଣି ଦେବୀ ଗିରଫ ହେଲେ । ଜଗତସିଂହପୁରରେ ଆଶାଲତା ଦେବୀ ବନ୍ଦୀ ହେଲେ । ମାଳତୀ ଦେବୀଙ୍କୁ ତାଙ୍କ ଶିଶୁ ସନ୍ତାନ ସହିତ ଗିରଫ କରି ହଜାରିବାଗ ଜେଲକୁ ପ୍ରେରଣ କରାଗଲା । ଏମାନଙ୍କ ବ୍ୟତୀତ ବହୁ ସଂଖ୍ୟକ ମହିଳା ସତ୍ୟାଗ୍ରହୀମାନେ ୧୯୩୨ ଆଇନ୍ ଅମାନ୍ୟ ଆନ୍ଦୋଳନରେ ଝାସ ଦେଇଥିଲେ । ସେମାନଙ୍କ ମଧ୍ୟରେ କିରଣବାଳା ସେନ୍, କୋକିଳା ଦେବୀ, କୁମୁଦିନୀ ଦେବୀ ଓ ସୁନାମଣି ଦେବୀଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧୯୩୨ ମସିହା ଶେଷ ଭାଗରେ ହରିଜନ ଆନ୍ଦୋଳନ ଆରମ୍ଭ ହେଲା । ରମାଦେବୀ ଥିଲେ ହରିଜନ ସେବକ ସଂଘ ଓଡ଼ିଶା ଶାଖାର ପ୍ରଥମ ଯୁଗ୍ମ ସଚିବ । ପନ୍ଦରଜଣ ହରିଜନ ତାଙ୍କ ନେତୃତ୍ୱରେ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ୧୯୩୪ ମସିହାରେ ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନ ଖୁବ୍ ଲୋକପ୍ରିୟତା ହାସଲ କରିଥିଲା । ଏହି ଉଦ୍ଦେଶ୍ୟରେ ପଦଯାତ୍ରା କାଳରେ ଗାନ୍ଧିଜୀ ଏକଦା ବକ୍ତବ୍ୟ ଦେଇଥିଲେ, "I have marvelled at the manner in which Smt. Rama Devi and her girls have discharged themselves during the tour which however pleasant and easy, it was had undoubtly its trial"

୧୯୪୦ରେ ମହାତ୍ମା ଗାନ୍ଧୀ ଆରମ୍ଭ କଲେ ବ୍ୟକ୍ତିଗତ ସତ୍ୟାଗ୍ରହ । ସରଳା ଦେବୀ, ମାଳତୀ ଦେବୀ ଓ ଅନ୍ୟ କେତେକ ସଂଗ୍ରାମୀ ସରକାରଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କଲେ । ମହାତ୍ମା ଗାନ୍ଧୀଙ୍କ ପରାମର୍ଶକ୍ରମେ ସରଳାଦେବୀ, ଲକ୍ଷ୍ମୀବାଈ, ଚମ୍ପାଦେବୀ ଓ ପି.ତରାମ୍ମା ବ୍ୟକ୍ତିଗତ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରି ଗିରଫ ହୋଇଥିଲେ । ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ସମଗ୍ର ଓଡ଼ିଶାରେ ଇଂରେଜ ସରକାରଙ୍କ ଯୁଦ୍ଧଖୋର ଓ ସାମ୍ରାଜ୍ୟବାଦୀ ନୀତି ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶିତ ହୋଇଥିଲା ।

**ଭାରତଛାଡ଼ ଆନ୍ଦୋଳନ :** ଭାରତଛାଡ଼ ଆନ୍ଦୋଳନ ସମୟରେ ଓଡ଼ିଆ ମହିଳାମାନଙ୍କ ରାଜନୈତିକ କାର୍ଯ୍ୟକଳାପ ଶୀର୍ଷତମ ସ୍ଥାନରେ ଉପନୀତ ହୋଇଥିଲା । ମହାନ୍ ନାରୀନେତ୍ରୀ ମାଳତୀ ଚୌଧୁରୀଙ୍କ ଦ୍ୱାରା ଏହି ଆନ୍ଦୋଳନ ଓଡ଼ିଶାରେ ଉଦ୍ଘାଟିତ ହୋଇଥିଲା । ସେ ଗାନ୍ଧୀଙ୍କର 'କର ଅବା ମର' ବାର୍ତ୍ତାକୁ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ଗାନ୍ଧିଜୀଙ୍କ ବିପ୍ଳବାତ୍ମକ ବାର୍ତ୍ତାକୁ ପ୍ରଚାର କରୁଥିବାରୁ ଯେଉଁ ୨୪ଜଣ ନେତାଙ୍କୁ ଗିରଫ କରାଯାଇଥିଲା, ସେମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ରମାଦେବୀ । ୧୯୪୨ ଅଗଷ୍ଟ ମାସର ପ୍ରାରମ୍ଭ କାଳରେ ଗାନ୍ଧୀଙ୍କ ଅନୁରୋଧକ୍ରମେ ମହିଳା ସ୍ୱେଚ୍ଛାସେବୀମାନେ ଗୋପନରେ ସମ୍ବାଦ, ବାର୍ତ୍ତା, ପ୍ରଚାରପତ୍ର ଇତ୍ୟାଦି ଲୋକମାନଙ୍କ ମଧ୍ୟରେ ବଣ୍ଟନ କରୁଥିଲେ । ସୁନାମଣି ଦେବୀ ତାଙ୍କ ସହଯୋଗୀମାନଙ୍କ ସହିତ ଉଦ୍ୟମ କରି ଦଫାଦାର, ଚୌକିଦାର ଓ ଅନ୍ୟମାନଙ୍କଠାରୁ ଇସ୍ତଫାପତ୍ର ସଂଗ୍ରହ କରିବା ସହିତ ସେମାନଙ୍କ ପୋଷାକକୁ ପୋଡ଼ିଦେଇଥିଲେ ।

୧୯୪୨ ଅଗଷ୍ଟ ୧୬ ତାରିଖରେ କେତେକ କଠୋରପନ୍ଥୀ ମହିଳା କର୍ମୀ ଅନ୍ନପୂର୍ଣ୍ଣା ଦେବୀ ଓ ଗୋଦାବରୀ ଦେବୀଙ୍କ ନେତୃତ୍ୱରେ ବରୀ ଆଶ୍ରମକୁ ଆକ୍ରମଣ କରିଥିଲେ । କେତେକ ଛାତ୍ରୀ ଶୋଭାଯାତ୍ରାର ଆୟୋଜନ କରି କଟକ ସାଧାରଣ ଡାକ୍ତରଖାନା ଆକ୍ରମଣ କରିଥିଲେ ଓ ନର୍ସିଂ ସିଷ୍ଟର୍ସ ହଷ୍ଟେଲ ମଧ୍ୟକୁ ପ୍ରବେଶ କରି ଅନ୍ତେବାସୀଙ୍କୁ ଆନ୍ଦୋଳନରେ ଯୋଗଦେବାକୁ ପ୍ରବର୍ତ୍ତାଇଥିଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ଯେ, ଏହି ଆନ୍ଦୋଳନ ସମୟରେ ଅନେକବାର ବିକ୍ଷୋଭକାରୀମାନଙ୍କ ଉପରକୁ ଗୁଳିଚାଳନା କରାଯାଇଥିଲା । ବାସନ୍ତୀ ଦେବୀ ଏପରି ଏକ ଗୁଳିକାଣ୍ଡରେ ଆହତ ହୋଇଥିଲେ ଓ ହାଣ୍ଡିଆଣି ଦେବୀ ନିଜର ଜୀବନ

ବିସର୍ଜନ କରିଥିଲେ । ଅନ୍ୟ କେତେକ ମହିଳାଙ୍କୁ ବିନା ବିଚାରରେ ବନ୍ଦୀ କରାଯାଇଥିଲା ।

୧୯୪୨ ଅଗଷ୍ଟ ମାସରେ କାଇପଡ଼ା– କଳାମାଟିଆ ଗୁଳିକାଣ୍ଡର ତୀବ୍ର ପ୍ରତିବାଦ କରିଥିଲେ ଅନ୍ନପୂର୍ଣ୍ଣା ମହାରଣା । ୧୯୪୨ ସେପ୍ଟେମ୍ବର ୨୮ ତାରିଖରେ ବାଲେଶ୍ୱର ଜିଲ୍ଲାର ଇରମଠାରେ ଅନେକ ମହିଳାଙ୍କ ସମେତ ଛଅହଜାରରୁ ସାତହଜାର ଜନତା ସମବେତ ହୋଇଥିଲେ । ସେଠାରେ ପୁଲିସର ବର୍ବର ଗୁଳିକାଣ୍ଡ ହେତୁ ମହିଳା ସଂଗ୍ରାମୀ ପରିବେୱାଙ୍କ ସମେତ ୨୯ଜଣଙ୍କର ପ୍ରାଣହାନୀ ଘଟିଥିଲା ଓ ୫୫ଜଣ ଆହତ ହୋଇଥିଲେ । ସୋନପୁରଠାରେ ଶୋଭାଯାତ୍ରା ଉପରେ ପୁଲିସ ଗୁଳିଚାଳନା କରିବାରୁ ଗୁରୁବାରୀ ମେହେର ପ୍ରାଣ ବିସର୍ଜନ କଲେ । ସମ୍ବଲପୁର ଜିଲ୍ଲାରେ ୨୦ରୁ ଊର୍ଦ୍ଧ୍ୱ ମହିଳା ଗରିଫ ହୋଇଥିଲେ । ଅସୁସ୍ଥତା ସତ୍ତ୍ୱେ ଜାମ୍ବବତୀ ଦେବୀ ଏକ ଶୋଭାଯାତ୍ରାର ଆୟୋଜନ କରିଥିଲେ । କୋରାପୁଟ ଜିଲ୍ଲାରେ ବାଉରୀ ସାହୁ ଓ ତାଙ୍କ କନ୍ୟା ଶାନ୍ତି ସାହୁ କଜେନ୍ଦ୍ରୀଠାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସେମାନଙ୍କ ବ୍ୟତୀତ ମେଷ୍ଟି କଷ୍ଟାଣୀ, ସୁବର୍ଣ୍ଣା ଲାହାର, ଶତାଙ୍କ ଅର୍ଯ୍ୟାଟି, କୁମାରୀ ଝରା, ଯମୁନା, ଜାନୀ, କୁମାରୀ ତନ୍ଦ୍ରା ଓ କୁମାରୀ ଦ୍ରୌପଦୀ ଆନ୍ଦୋଳନରେ ଝାସ ଦେଇଥିଲେ । ପାରଳାଖେମୁଣ୍ଡିରେ କୃଷ୍ଣଚନ୍ଦ୍ର ବିଶୋଇ ଓ ତାଙ୍କ ପତ୍ନୀ ହୀରାମଣି ବିଶୋଇ ଦୀର୍ଘ ୨୦ ବର୍ଷ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମରତ ଥିଲେ । ଏପରିକି କୃଷ୍ଣଚନ୍ଦ୍ରଙ୍କ ମୃତ୍ୟୁପରେ ତାଙ୍କ ପତ୍ନୀ ହୀରାମଣି ସଂଗ୍ରାମର ନେତୃତ୍ୱ ଗ୍ରହଣ କରି ତାହାକୁ ଅବ୍ୟାହତ ରଖିଥିଲେ । ଭାରତଛାଡ଼ ଆନ୍ଦୋଳନରେ ରମାଦେବୀ, ମାଳତୀଦେବୀ ଓ ସରଳାଦେବୀଙ୍କ ଭୂମିକା ଅତ୍ୟନ୍ତ ପ୍ରଭାବଶାଳୀ ଥିଲା । ସେମାନଙ୍କ ବ୍ୟତୀତ ସୁନାମଣି ଦେବୀ, ପ୍ରିୟମ୍ୱଦା ଦେବୀ, ହରପ୍ରିୟା ଦେବୀ, ହାରାମଣୀ ଦେବୀ, ହାରାମଣି କାନୁନଗୋ, ଶଶିବାଳା କାନୁନ୍‌ଗୋ ପ୍ରଭୃତି ମଧ୍ୟ ସାହସପୂର୍ଣ୍ଣ ଓ ନିଷ୍ଠାପର ଉତ୍ସର୍ଗୀକୃତ ଦେଶପ୍ରେମ ପାଇଁ ଚିରଦିନ ସ୍ମରଣୀୟ ହୋଇ ରହିବେ ।

ମହିଳାମାନଙ୍କ ଯୋଗଦାନ ଓ ଅବଦାନ ଯୋଗୁଁ ଭାରତଛାଡ଼ ଆନ୍ଦୋଳନ ଏକ ଗଣ ଆନ୍ଦୋଳନରେ ପରିଣତ ହୋଇଥିଲା । ଜେଲ୍‌ରୁ ପ୍ରତ୍ୟାବର୍ତ୍ତନ ପରେ ସରଳାଦେବୀ ମହିଳାମାନଙ୍କୁ ନେଇ ଏକ 'ସେବାଦଳ' ଗଠନ କଲେ । ସରକାରଙ୍କ ଅର୍ଥନୈତିକ କାର୍ଯ୍ୟକଳାପକୁ ସମାଲୋଚନା କରିବା ଥିଲା ଏହାର ପ୍ରଧାନ କାର୍ଯ୍ୟ । କସ୍ତୁରବା ଗାନ୍ଧୀଙ୍କ ଦେହାନ୍ତ ପରେ 'କସ୍ତୁରବା ସ୍ମାରକୀ ଟ୍ରଷ୍ଟ' ପ୍ରତିଷ୍ଠିତ ହୋଇ ମହିଳାମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ।

କ୍ୟାବିନେଟ୍ ମିଶନଙ୍କ ସୁପାରିସ୍ ଅନୁଯାୟୀ ସାମ୍ବିଧାନିକ ସଭା ଓ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ଉଦ୍ଦେଶ୍ୟରେ ଅନୁଷ୍ଠିତ ନିର୍ବାଚନରେ ୯ଜଣ ମହିଳା ସଦସ୍ୟ ନିର୍ବାଚିତ ହୋଇ ବିଭିନ୍ନ ପଦବୀ ମଣ୍ଡନ କରିଥିଲେ । ସେମାନଙ୍କ ମଧ୍ୟରୁ ସୁବିଖ୍ୟାତ ଥିଲେ ମାଳତୀ ଚୌଧୁରୀ, ଏ.ଲକ୍ଷ୍ମୀବାଇ ପ୍ରିୟମ୍ୱଦା ଦେବୀ, ଆନ୍ନେ କ୍ୟାଥେରାଇନ୍ ଓ ମନରୋ ।

ମାଉଣ୍ଟବେଟେନ ଯୋଜନା ଅନୁସାରେ ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ସ୍ୱାଧୀନତା ଆନ୍ଦୋଳନରେ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିବା କେତେକ ନାରୀ ନେତ୍ରୀ ରାଜନୀତିକ ଜୀବନରୁ ଅବସର ଗ୍ରହଣ କରିନେଲେ । ରମା ଦେବୀ, ମାଳତୀ ଦେବୀ, ସୁନାମଣି ଦେବୀ, ଅନ୍ନପୂର୍ଣ୍ଣା ଦେବୀ ପ୍ରଭୃତି ନାରୀନେତ୍ରୀମାନେ ବିନୋବା ଭାବେଙ୍କ ଆହୂତ ଭୂଦାନ ଆନ୍ଦୋଳନରେ ଯୋଗଦେଲେ । ସରଳା ଦେବୀ ସମବାୟ ଆନ୍ଦୋଳନରେ ସାମିଲ ହେଲେ । ମାଳତୀ ଦେବୀ ଦୁର୍ଭେଦ୍ୟ ଅଗମ୍ୟ ପାର୍ବତ୍ୟାଞ୍ଚଳର ଆଦିବାସୀ ସଂପ୍ରଦାୟର ହିତ ସାଧନ ପାଇଁ କାର୍ଯ୍ୟ କଲେ । ତେବେ ସେହି ମହୀୟସୀ ନେତ୍ରୀମାନେ ଓଡ଼ିଶାର ପ୍ରଗତି ଓ ଲୋକମାନଙ୍କ ପାଇଁ କାର୍ଯ୍ୟ କଲେ ଏବଂ ସେମାନଙ୍କ ତ୍ୟାଗ ଓ ଉତ୍ସର୍ଗୀକୃତ କାର୍ଯ୍ୟକଳାପ ଅବ୍ୟାହତ ରଖିଲେ । ସେହି ଦେଶହିତବ୍ରତୀ ମହିଳା ସଂଗ୍ରାମୀମାନଙ୍କ ନାମ ଚିରଦିନ ଓଡ଼ିଆମାନଙ୍କ ମନରେ ଅମ୍ଳାନ ସ୍ମୃତି ହୋଇ ରହିଥିବ ।

ପ୍ରାକ୍ତନ ଅଧ୍ୟକ୍ଷ
ଗ୍ରା/ପୋ–ଫକୀରପୁର, (ସିନେମାହଲ ଛକ)
ଜିଲ୍ଲା–କେନ୍ଦୁଝର, ପିନ୍–୭୫୮୦୨୨

# ଐତିହାସିକ ଲବଣ ସତ୍ୟାଗ୍ରହ ଓ ଓଡ଼ିଶା

ଜୟନ୍ତ କୁମାର ଦାସ

ଗୋରା ସରକାର ଲୁଣ ଉପରେ ଟିକସ ବସାଇବା ଓ ଲୁଣ ମାରିବା ଉପରେ ନିଷେଧାଦେଶ ଜାରି କରିବାରୁ ଏହା ସାଧାରଣ ଲୋକଙ୍କୁ ବହୁତ ବାଧିଲା । ଗାନ୍ଧିଜୀ, ସରକାରଙ୍କ ଏହି ଘୃଣ୍ୟ ନୀତି ବିରୁଦ୍ଧରେ ଆନ୍ଦୋଳନ ଡାକରା ଦେଲେ ଓ ପ୍ରକାଶ୍ୟରେ ଲୁଣ ମାରିବା ପାଇଁ ଲୋକମାନଙ୍କୁ ଆହ୍ୱାନ ଦେଲେ । ସେତେବେଳକୁ ଗାନ୍ଧିଜୀ ଛଅ ବର୍ଷ ଧରି ଲୁଣ ଖାଇବା ଛାଡି ଦେଇଥାନ୍ତି । ସେ ଜାଣିଥିଲେ ଭାରତର ଗରିବ ଚାଷୀ ମୂଲିଆଙ୍କର ଲୁଣ ହେଉଛି ଏକ ଅତ୍ୟାବଶ୍ୟକ ଜିନିଷ ଓ ଲୁଣ ଉପରେ ସବୁ ଲୋକଙ୍କ ସମାନ ଅଧିକାର ରହିଛି । ତେଣୁ ଲୁଣ ଉପରେ ବସିଥିବା ଟିକସ ଆଇନକୁ ଅମାନ୍ୟ କରିବା ଏହି ସତ୍ୟାଗ୍ରହର ଡାକରାର ଲକ୍ଷ୍ୟ ଥିଲା । ଏଥିପାଇଁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଉପଯୁକ୍ତ କ୍ଷେତ୍ର ଭାବେ ଦାଣ୍ଡି ଗାଁକୁ ବାଛିଥିଲେ । କେଉଁ ବାଟେ, କେଉଁ ଜିଲ୍ଲା ଦେଇ ଯିବେ ତାହା ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଉପରେ ନ୍ୟସ୍ତ ଥାଏ । ଯେତେବେଳେ ଅଠସ୍ତରି ଜଣ ସତ୍ୟାଗ୍ରହୀଙ୍କ ସହ ସାବରମତୀ ଆଶ୍ରମରୁ ଗାନ୍ଧିଜୀ ଗୁଜୁରାଟ ସମୁଦ୍ର କୂଳବର୍ତ୍ତୀ ଦାଣ୍ଡୀ ଅଭିମୁଖେ ୧୯୩୦ ମାର୍ଚ୍ଚ ୧୨ ତାରିଖରେ ଯାତ୍ରା ଆରମ୍ଭ କରିବାକୁ ନିଷ୍ପତ୍ତି ନେଲେ ତା ପୂର୍ବ ଦିନ ସନ୍ଧ୍ୟା ପ୍ରାର୍ଥନା ସଭାରେ ଗାନ୍ଧିଜୀ କହିଲେ – 'ଏ ଯୁଦ୍ଧ କିଛି ଛୋଟ ଯୁଦ୍ଧ ନୁହେଁ । ଏ ଯୁଦ୍ଧରେ ସ୍ୱରାଜ୍ୟ ହାସଲ କରିବ କିମ୍ବା ପ୍ରାଣବଳି ଦେବ, ଏହାର ଆଉ କିଛି ବିକଳ୍ପ ନାହିଁ ' । ଲୁଣ ଉପରେ ଟିକସ



ଗରିବଙ୍କ ପାଇଁ ବୋଝ୍ ଉପରେ ନଳିତା ବିଡା ସଦୃଶ ଥିଲା । ଏହି ଘୃଣ୍ୟ ଟିକସର ପ୍ରତିବାଦ କରି ଗାନ୍ଧିଜୀ କହିଥିଲେ – 'ଯେତେବେଳେ ଯାଏଁ ଲୁଣ ଉପରେ ନିଷେଧାଦେଶ ରଦ୍ଦ ହୋଇ ନାହିଁ ସେପର୍ଯ୍ୟନ୍ତ ମୁଁ ଆଶ୍ରମକୁ ଫେରିବି ନାହିଁ । ଏହା ମୋ ପାଇଁ ତୀର୍ଥଯାତ୍ରା ଭଳି ଆପଣ ମତେ ସଫଳ ହୋଇ ଫେରିବାର ଦେଖିବେ କିମ୍ବା ମୋ ଶରୀର ସମୁଦ୍ରରେ ଭାସୁଥିବାର ଦେଖିବେ' । 'ମୁଠାଏ ଲୁଣ ଭାରତର ଆତ୍ମସମ୍ମାନର ପ୍ରତୀକ, ତେଣୁ ହାତ ମୁଠା ପଛେ ମୋଡି ଭାଂଗି ଦିଆଯିବ କିନ୍ତୁ କେହି ସ୍ୱେଚ୍ଛାରେ ମୁଠା ଫିଟାଇ ଲୁଣ ଦେବ ନାହିଁ ' – ଗାନ୍ଧିଜୀଙ୍କ ଏହି ବାଣୀକୁ

ସତ୍ୟାଗ୍ରହୀମାନେ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସତ୍ୟାଗ୍ରାହୀମାନେ ସାବରମତି ଆଶ୍ରମ ନିକଟରେ ଥିବା ଏକ ତେନ୍ତୁଳି ଗଛ ପାଖରେ ଧାଡି ବାନ୍ଧି ଠିଆ ହେଲେ । କସ୍ତୁରବା ସମସ୍ତଙ୍କ ମଥାରେ ତିଳକ ଲଗାଇବା ପରେ ଯାତ୍ରା ଆରମ୍ଭ ହେଲା ।

ପ୍ରାଦେଶିକ କଂଗ୍ରେସ କମିଟି ଓଡିଶାରେ ଲବଣ ସତ୍ୟାଗ୍ରହ ପରିଚାଳନା କରିବା ଦାୟିତ୍ୱ ଗୋପବନ୍ଧୁ ଚୌଧୁରୀଙ୍କ ଉପରେ ଅର୍ପଣ କଲେ । କାଠଯୋଡି କୂଳ ବାଖରାବାଦସ୍ଥିତ ଚୌଧୁରୀ କୋଠି ସତ୍ୟାଗ୍ରହୀ ଶିବିରରେ ପରିଣତ ହେଲା । ୧୯୩୦ ମସିହା ଏପ୍ରିଲ ଛଅ ତାରିଖରେ ସତ୍ୟାଗ୍ରହୀମାନେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଏଠାରୁ ଯାତ୍ରା ଆରମ୍ଭ କଲେ । ତା' ପୂର୍ବ ଦିନ ରାତିରେ ଆଚାର୍ଯ୍ୟ ହରିହର ଓ ଅନ୍ୟାନ୍ୟ ନେତୃବୃନ୍ଦ ଆସି ସେଠାରେ ଏକାଠି ହେଲେ । ବଡିଭୋରୁ ପୁରୀର ରଘୁନାଥ ମିଶ୍ର ଗୀତା ପାଠ ଆରମ୍ଭ କଲେ ।

ଗୀତା ପାଠ ପରେ ଘର ଭିତରେ ଥିବା ୨୦ ଜଣ ସତ୍ୟାଗ୍ରହୀ ଧାଡି ବାନ୍ଧି ଛିଡା ହେଲେ । ସେମାନେ ହେଲେ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ଗୁଣନିଧି ମହାନ୍ତି, ବିଶ୍ୱନାଥ ହୋତା, ଗୋଲକ ବିହାରୀ ଦେ, ଦୁର୍ଗା ପ୍ରସାଦ ଗୁରୁ, ସୁଧାଂଶୁ ଗୁପ୍ତା, କୃପାସିନ୍ଧୁ ଭକ୍ତ, ଚକ୍ରପାଣି ରାଉଳ, ବିନୋଦ ଚୌଧୁରୀ, ମୁରାରୀ ତ୍ରିପାଠୀ, ଗୋକୁଳାନନ୍ଦ ମହାନ୍ତି, ରଘୁନାଥ ଦାସ, ଘନଶ୍ୟାମ ପଟ୍ଟନାୟକ, ଗୌରାଙ୍ଗ ଚରଣ ଦାସ, ରାମ ପ୍ରସାଦ ସାହୁ, ରଘୁନାଥ ମିଶ୍ର, କୃପାସିନ୍ଧୁ ଖୁଂଟିଆ, ସୁଦର୍ଶନ ପ୍ରହରାଜ ଓ ବନମାଳୀ ପୃଷ୍ଟି । ଏମାନଙ୍କ ମଧ୍ୟରେ ସାତ ଜଣ ଥାଆନ୍ତି କଟକରୁ , ପୁରୀ , ସମ୍ବଲପୁର ଓ ବାଲେଶ୍ୱରରୁ ତିନିଜଣ ଲେଖାଏଁ ଗାମରୁ ଦୁଇ ଜଣ ଓ ଅନୁଗୋଳରୁ ଜଣେ ଓ ଚୌଦ୍ୱାରରୁ ଜଣେ । ରାତି ପାହି ଆସୁଥାଏ । ଆଶାଲତା ଦେବୀ, ରମାଦେବୀ, ମାଳତୀ ଚୌଧୁରୀ ସତ୍ୟାଗ୍ରହୀମାନଙ୍କୁ ଚନ୍ଦନ ଓ ଫୁଲମାଳ ପିନ୍ଧାଇ ଶୁଭ ମନାସୀ ବିଦାୟ ଦେଉଥାନ୍ତି । ସତ୍ୟାଗ୍ରହୀଙ୍କ ଯାତ୍ରା ଆରମ୍ଭ ହେଲା ବେଳକୁ କୁଆପଥର ବୃଷ୍ଟି ହେଲା । ମହାନଦୀ ପାର ହୋଇ କେନ୍ଦ୍ରାପଡା, ଆଳି, କନିକା, ଚାନ୍ଦବାଲି ଦେଇ ବାଲେଶ୍ୱର ଯିବା ଠିକ୍ ହୋଇଥାଏ । ଗୋପବନ୍ଧୁ ଚୌଧୁରୀ କଟକରେ ଏକ ସଭାରେ ୧୪୪ ଧାରା ଆଇନ୍ ଅମାନ୍ୟ କରିଥିବାରୁ ଇଂଚୁଡି ଅଭିମୁଖେ ଯିବା ବାଟରେ କୁସୁନପୁରଠାରେ ଗିରଫ ହେଲେ । ଗୋପବନ୍ଧୁ ଗିରଫ ହେବା ପରେ ନିଖିଳ ଭାରତ କଂଗ୍ରେସ କମିଟିର ନିଷ୍ପତ୍ତିକ୍ରମେ ଆଚାର୍ଯ୍ୟ ହରିହର ସତ୍ୟାଗ୍ରହୀ ଦଳର ନେତୃତ୍ୱ ନେଇ ରେଳ ଯୋଗେ ବାଲେଶ୍ୱର ଗଲେ । ବାଲେଶ୍ୱରର ପରମିଟ୍ କୋଠି ସତ୍ୟାଗ୍ରହୀ ଶିବିର ପାଲଟିଲା ।

୧୯୩୦ ମସିହା ଏପ୍ରିଲ ଏଗାର ତାରିଖ ଦିନ ଜୀବରାମ କଲ୍ୟାଣୀ କୋଠାରି ଲୁଣ ପାଣି ଚୁଲିରେ ବସାଇ ଲୁଣ ମାରିବା ବେଳେ ପୋଲିସ ତାଙ୍କୁ ଗିରଫ କଲା ଏବଂ ଆଚାର୍ଯ୍ୟ ହରିହର ଓ ଛଅ ଜଣ ସତ୍ୟାଗ୍ରହୀ ଏପ୍ରିଲ ୧୩ ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଇଂଚୁଡି ଚଟାଣରେ ଲୁଣ ମାରିବା ମାତ୍ରେ ଗିରଫ ହେଲେ । ଆଉ ଛଅ ଜଣ ସତ୍ୟାଗ୍ରହୀଙ୍କ ହାତ ମୁଠାରୁ ଲୁଣ ମାଟି ଛଡାଇବା ପାଇଁ ପୋଲିସ ନାନା ପ୍ରକାର ବଳ ପ୍ରୟୋଗ କରିବା ସତ୍ତ୍ୱେ ସତ୍ୟାଗ୍ରହୀମାନେ ଏହାକୁ ଭ୍ରୂକ୍ଷେପ ନ କରି ସମସ୍ତଙ୍କ ସମ୍ମୁଖରେ ଲୁଣ ବିକ୍ରୀ କଲେ ।

ସତ୍ୟାଗ୍ରହୀମାନେ ଲୁଣ ମୁଠାକୁ ଯେପରି ଧରିଥାନ୍ତି ଲାଗେ ସେହି ମୁଠାଏ ଲୁଣରେ ଯେମିତି ଭାରତର ଇଜ୍ଜତ ଲୁଚି ରହିଛି । ପୋଲିସର ଦମନଲୀଳା ସତ୍ତ୍ୱେ କେହି ହାତ ମୁଠା ଖୋଲୁ ନଥାନ୍ତି । ବିନୋଦ ଚୌଧୁରୀ ନାମକ ଜଣେ ବୃଦ୍ଧ ସତ୍ୟାଗ୍ରହୀ ଯେପରି ସାହସ ପଦର୍ଶନ କଲେ ଯୁଗ ଯୁଗ ପାଇଁ ଲୋକେ ତାଙ୍କୁ ମନେ ରଖିବେ । ତଳେ ଗଡେଇ ପୁଲିସ୍ ତାଙ୍କ ହାତ ଓ ଗୋଡ ଉପରେ ଜୋତାରେ ଚଢି ବଳ ପୂର୍ବକ ହାତ ମୁଠା ଖୋଲିବାକୁ ଚେଷ୍ଟା କରୁଥାନ୍ତି । ଦେହରୁ ରକ୍ତ ଝର ଝର ବୋହୁଥାଏ । ତଥାପି ସେ ତାଙ୍କ ପ୍ରତିଜ୍ଞାରେ ଥାଆନ୍ତି ଅଟଳ ଓ ଅଚଳ ।

ସାଧାରଣ ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ସ୍ୱାଧୀନଚେତା କବିଙ୍କ ଗୀତ ଚାରିଆଡେ ଶୁଣିବାକୁ ମିଳିଲା–

ଲୁଣ ମାରିବାକୁ ଚାଲ ଭାଇ
ମହାତ୍ମା ଆଦେଶ ପାଳ ହୋ.........

ଆମ ଘର ପାଶେ ବେଢିଛି ସାଗର
ଲୁଣ ମୁଠେ ପାଇଁ ନାହିଁ ଅଧିକାର

ଏ ଅନ୍ୟାୟ, ଅନୀତି କୁହ ଭାଇ ସହିଥିବା କେତେ କାଳ ହୋ..........

ଲୋକଙ୍କୁ ଏଥିରୁ ନିବୃତ୍ତେଇବା ପାଇଁ ଗୋରା ସରକାର ଗୋଟିପୁଅ ନାଚର ଆୟୋଜନ କରିବା ସହିତ ଲୋକଙ୍କ ମନରେ ଭୟଭାବ ଜାତ କରିବା ପାଇଁ ଗୀତ ମାଧ୍ୟମରେ ସତର୍କ କରାଇବାକୁ ଚେଷ୍ଟା କଲେ ।

ସରକାରଙ୍କ ନାଲି ଆଖିକୁ କାହାର ଖାତିର ନ ଥାଏ । ପ୍ରତିଦିନ ସକାଳୁ ଦିନ ୧୨ଟା ପର୍ଯ୍ୟନ୍ତ ଓ ଅପରାହ୍ଣ ୩ ଟାରୁ ୬ଟା ପର୍ଯ୍ୟନ୍ତ ଲୁଣ ମାଟି ସଂଗ୍ରହ କରିବା କାମ ଚାଲେ । ଲବଣ ସତ୍ୟାଗ୍ରହରେ ଅପୂର୍ବ ଉନ୍ମାଦନାକୁ ଲକ୍ଷ୍ୟ କରି ଜାତୀୟ କବି ବୀର କିଶୋର ଦାସ ଲେଖିଥିଲେ –

ଶୟନେ ସ୍ୱପନେ କିବା ଜାଗରଣେ
ସେହି ଗାନ୍ଧୀ କଥା ଭାବୁଛି

କି ମନ୍ତର କଲା ସଭିଙ୍କୁ ଟାଣିଲା
ବଡ ଆଚମ୍ବିତ ଲାଗୁଛି ।

ଶୁଣି ଯେ ଡରଇ ମେଘ ଘଡ ଘଡି
ବାହାରି ନ ଥିଲା ଘରୁ ଗୋଡ କାଢି

ସେହି ନାରୀ ଆଜି ସମୁଦ୍ର ପନ୍ତାରେ
ଲୁଣ ଲାଗି ଜାଳ ଭାଙ୍ଗୁଛି ।

ଶେଷରେ ଜନସାଧାରଣଙ୍କୁ ଲବଣ ଆଇନ୍ ଅମାନ୍ୟ କରିବାକୁ ଆହ୍ୱାନ ଦିଆଗଲା । ଏହା ପ୍ରଚାର ହେବା ପରେ ଇଂଚୁଡି, ଶ୍ରୀଜଙ୍ଗ, ସାରଥୀ ଆଦି ସମୁଦ୍ର କୂଳବର୍ତ୍ତୀ ଗାଁର ଲୋକମାନେ ଆନନ୍ଦର ସହ ଲବଣ ସତ୍ୟାଗ୍ରହରେ ଯୋଗ ଦେବା ଫଳରେ କ୍ରମଶଃ ଏହା ବ୍ୟାପକ ଆକାର ଧାରଣ କଲା ଏବଂ ପୋଲିସ ଅତ୍ୟାଚାରକୁ ଖାତିର ନ କରି ଗ୍ରାମବାସୀ ଶହ ଶହ ସଂଖ୍ୟାରେ ରୁଣ୍ଡ ହୋଇ ଲୁଣ ମାରିଲେ । ଯେତେବେଳେ ଖବର ପହଁଚିଲା ଯେ ମହିଳାମାନେ ଗୁଜୁରାଟରେ ଲୁଣମରା ଅଭିଯାନରେ ସାମିଲ ହେଲେଣି ସେତେବେଳେ ରମାଦେବୀ, କିରଣବାଳା ସେନ୍ ଓ ମାଳତୀ ଚୌଧୁରୀ କାଳବିଳମ୍ୱ ନ କରି ଇଂଚୁଡି ଯାଇ ଲୁଣମରା ଅଭିଯାନରେ ନିଜକୁ ସାମିଲ କରିବା ସହିତ ଗାଁ ଗାଁ ବୁଲି ମହିଳାମାନଙ୍କୁ ଲୁଣ ମାରିବା ପାଇଁ ପ୍ରବର୍ତ୍ତାଇଲେ । ଫଳସ୍ୱରୂପ ଶହ ଶହ ଗାଉଁଲି ସ୍ତ୍ରୀ ଲୋକ ଘର ଦ୍ୱାର ଛାଡି ଲୁଣମରା ଅଭିଯାନରେ ଅଂଶ ଗ୍ରହଣ କଲେ ।

ଗାଁ ଲୋକ ହାରମୋନିୟମ ଧରି ଗୀତ ବୋଲିବା ଆରମ୍ଭ କଲେ –

ଦିନେ ଏହି ମାଟି ଉଲୁସି ଉଠିବ
ଫୁଟିବ କନକ କଇଁ
ରାଇଜେ ରାଇଜେ ଡିଙ୍ଗୁରା ବାଜିବ
ସେ ଦୃଶ୍ୟ ଦେଖିବା ପାଇଁ ।

ଏହା ପରେ ରମା ଦେବୀ ଓ ମାଳତୀ ଦେବୀ କଟକ ଜିଲ୍ଲାର କୁଜଙ୍ଗ ଅଂଚଳରେ ଲୁଣ ମାରିବାକୁ ସ୍ଥିର କଲେ । ସେଠାକୁ ଯାଇ ପାଟପୁର ଗାଁ ମୁଣ୍ଡରେ ବରଜୀ ମହାନ୍ତିଙ୍କ ଟୁଙ୍ଗୀରେ ଆଶ୍ରୟ ନେଲେ, ସେ ଅଂଚଳର ମୁରବୀ ଶ୍ରୀ ନାରାୟଣ ବୀରବର ସାମନ୍ତ ଓ ଭାଗୀରଥି ମହାପାତ୍ରଙ୍କ ସହ ପରାମର୍ଶ କରି ଲୁଣମରା ଆୟୋଜନ ଚାଲିଲା । ଡେପୁଟି ମାଜିଷ୍ଟ୍ରେଟ୍ ମାଧବ ମିଶ୍ର ସେଠାରେ ପହଂଚି ସତ୍ୟାଗ୍ରହୀଙ୍କୁ କୌଣସି ପ୍ରକାର ସାହାଯ୍ୟ ନ କରିବାକୁ ନିର୍ଦ୍ଦେଶ ଜାରି କଲେ । ହେଲେ ଗୋରା ସରକାରଙ୍କ କଥା ଶୁଣୁଛି କିଏ ? ପୂର୍ବ ଯୋଜନା ଅନୁଯାୟୀ ମାଳତୀ ଦେବୀ ଓ କେନ୍ଦୁପାଟଣାର ଡାକ୍ତର ବ୍ରଜନାଥ ପୋଡାନଈ ଅଂଚଳକୁ ଗଲେ ଲୁଣ ମାରିବା ପାଇଁ । ରମାଦେବୀ କୁଜଙ୍ଗ ରାଣୀଙ୍କୁ ସାକ୍ଷାତ୍ କରି ଲୁଣ ମାରିବା ପାଇଁ ଅନୁରୋଧ କରିବାରୁ ରାଣୀ ସମ୍ମତି ପ୍ରକାଶ କଲେ । ପରିସ୍ଥିତି ଅନୁଧ୍ୟାନ କରିବା ପାଇଁ ଡେପୁଟି ମାଜିଷ୍ଟ୍ରେଟ ଓ ତାଙ୍କ ସହଯୋଗୀ ସେ ଅଂଚଳରେ ଆସି ଡେରା ପକାଇଲେ । ରାତି ୧୧ଟା ପାଖାପାଖି ସେମାନେ ନିଘୋଡ ନିଦରେ ଶୋଇଥିବାର ଖବର ପାଇ ରାଣୀଙ୍କୁ ସଂଗରେ ନେଇ ରମାଦେବୀ ଡଙ୍ଗାରେ ନଈ ପାରି ହେବାକୁ ବାହାରି ପଡିଲେ । ଶୁକ୍ଳପକ୍ଷ ଅଷ୍ଟମୀ ତିଥି । ଜହ୍ନ ଆଲୁଅରେ ନିଃଶବ୍ଦରେ ଡଙ୍ଗା

ଚାଲିଥାଏ । ବଡି ସକାଳୁ ରାଣୀଙ୍କୁ ଦେଖି ସମସ୍ତେ ଚକିତ ହୋଇଗଲେ । ଚାରିଆଡେ ଅପୂର୍ବ ଉନ୍ମାଦନା ଖେଳି ଗଲା । ଶହ ଶହ ମହିଳା ଏକାଠି ହୋଇ ଟୋକେଇ ପାଚିଆ ଧରି ଗଣ୍ଡକୀପୁର ଅଭିମୁଖେ ଚାଲିଲେ ଲୁଣ ମାରିବା ପାଇଁ । ରାଣୀ ଓ ରମାଦେବୀ ଚାଲିଥାଆନ୍ତି ସେମାନଙ୍କ ସାଙ୍ଗରେ । ପୁଲିସ କିଂକର୍ତ୍ତବ୍ୟବିମୂଢ ହୋଇ ପଡିଥାଏ । ଯେତେବେଳେ ମାଧବ ମିଶ୍ର ଲୁଣମରା ଜାଗାରେ ପହଂଚିଲେ ସେତେବେଳକୁ ଲୁଣମରା କାମ ସରିଯାଇଥାଏ । ଛୋଟ ପିଲା ମାଧବ ମିଶ୍ରଙ୍କ ପଛରେ ଗୋଡାଇ ଗୋଡାଇ ପରିହାସ ଛଳରେ ନବ ପଟ୍ଟନାୟକଙ୍କ ରଚିତ ଗୀତ ବୋଲୁଥାଆନ୍ତି ।

ମାଧିଆ ନନା ହେ ମାଧିଆ ନନା
ଲୁଣ ମରା ହେଲା ପଛକୁ ଅନା ।

ବର୍ଷା ଦିନ ଆସିଯିବାରୁ ଲୁଣମରା ଅଭିଯାନ ବନ୍ଦ ରହିଲା । ଶ୍ରୀ ନାରାୟଣ ବୀରବର ସାମନ୍ତ ଗିରଫ ହେଲେ । ସେତେବେଳେ ସରଳା ଦେବୀ ବ୍ରହ୍ମପୁରରେ 'ଉଦ୍‌ଯୋଗ ମନ୍ଦିର' ନାମକ ଏକ ଆଶ୍ରମ ସ୍ଥାପନ କରି ଆନ୍ଦୋଳନ ଚଳାଇଥାନ୍ତି । ହୁମ୍ମାରେ ଲୁଣ ମରା ଚାଲିଲା । ସରଳା ଦେବୀ ପୋଲିସ ଦ୍ୱାରା ଗିରଫ ହୋଇ ଭେଲୋର ଜେଲରେ ରହିଲେ ।

ସାରା ଦେଶରେ ଏପରି ବାତାବରଣ ସୃଷ୍ଟି ହେଲା ଯେ ସରକାର ନିରୁପାୟ ହୋଇ ଶେଷରେ ମୁଣ୍ଡ ନଇଁଲେ । ୧୯୩୧ରେ ଲର୍ଡ ଇରଉଇନ୍ ଓ ଗାନ୍ଧିଜୀଙ୍କ ମଧ୍ୟରେ ହୋଇଥିବା ବୁଝାମଣାକୁ ଆଧାର କରି ଲୁଣ ଉପରେ ଥିବା ନିଷେଧାଦେଶକୁ ଉଠାଇ ଦେଲେ ।

**ସଂଗୃହୀତ ତଥ୍ୟ**

ଜୀବନ ପଥେ – ରମାଦେବୀ

ଅମୃତ ଅନୁଭବ– ଅନ୍ନପୂର୍ଣ୍ଣା ମହାରଣା

ଜାତୀୟ କବି ବୀରକିଶୋର – ବିନୋଦ କାନୁନ୍‌ଗୋ

ପଟିଆ, ଭୁବନେଶ୍ୱର

# କଳା କହ୍ନେଇ

ତିଲୋତ୍ତମା ଦାସ

ଯଶୋଦା ମାଆର ନୟନ ପିତୁଳା
ଦେବକୀ ନୟନ ତାରା
ଦୁଇଟି ମାଆର ନନ୍ଦନ ସେ
ଅଝଟିଆ ଗୋପବାଳା ।
ଲହୁଣି ଚୋର ସେ, ବଇଁଶୀଧର ସେ
ଗୋପୀ ମନ ନିଏ ମୋହି
ଉଦିଆ ଜହ୍ନ ସେ, ରାଧାର ମନ ସେ
ମୀରା ଝୁରେ ତା' ପାଇଁ ।
ବଇଁଶୀ ଡାକଇ ରାଧା ରାଧା ହେଲେ
ଗୋପୀ ମନ ହୁଏ ବାଇ



କି ମନୋରମ ସେ କଦମ୍ବ ବନରେ
କଳା କାହ୍ନୁ ସାଥେ ରାଇ ।
ରାଧାର ଘୁଙ୍ଗୁର ତା' ବଇଁଶୀ ସ୍ୱର
ଝୁରେ ଆଜି ସାରା ଗୋପ
ଆଜି ବି ଗୋପର ଗୋପୀ ହୃଦୟରେ
ଦିଶେ କଳାକାହ୍ନୁ ରୂପ ।

ପ୍ଲଟ୍ ନଂ–୬ଏ/୫୯୯
ଚିନ୍ତାମଣିଶ୍ୱର, ଭୁବନେଶ୍ୱର–୭୫୧୦୦୬

# ସମ୍ପର୍କର ଅଛିଣ୍ଡା ସୂତାଖିଅ ରାଖୀ

**କୁଞ୍ଜ ବିହାରୀ ସାହୁ**

ଯୁଗେ ଯୁଗେ ପ୍ରକୃତି ଆମକୁ ଭେଟିଦେଇଛି ଧର୍ମ, ସଂସ୍କୃତି, ପରମ୍ପରା । ତତ୍ ସହିତ ସତ୍ୟ, ଶିବ, ସୁନ୍ଦରର ଭକ୍ତିମୟ ଆବେଦନ । ଏପରିକି ଅନେକ ମନୋରଞ୍ଜନଧର୍ମୀ ପର୍ବପର୍ବାଣି । ବାର ମାସ, ଛଅ ଋତୁ ସର୍ଜନା କରି ସାମାଜିକ ପୃଷ୍ଠଭୂମିରେ ଅନେକ ମଙ୍ଗଳମୟ ବିଧିବିଧାନ ଅରପି ଦେଇଛି । କହିବାକୁ ଗଲେ, ବିଭିନ୍ନ ପୂଜାପାର୍ବଣ ମାଧ୍ୟମରେ ଲୌକିକ ପରମ୍ପରାକୁ ଉଜ୍ଜୀବିତ କରିବାର ସୁଯୋଗ ମିଳିଛି ।

ସେହି ପରିପ୍ରେକ୍ଷୀରେ ଶ୍ରାବଣ ମାସର ପୂର୍ଣ୍ଣିମା ଅତୀବ ଗୁରୁତ୍ୱପୂର୍ଣ୍ଣ । ଆକାଶରେ ଶ୍ରାବଣର ମେଘ ପଟୁଆର ଦେଖିଲେ ଦି'ପଦ କବିତା ମନେପଡ଼େ –

ଆସନ୍ତେ ବର୍ଷାକାଳ ନିଦାଘ ଶେଷେ
ଘୋଟଇ ମେଘମାଳ ଆକାଶ ଦେଶେ ।

ବର୍ଷାରେ ଆଷାଢ଼ ଶ୍ରାବଣ
ମେଘ ବରଷେ ଘନଘନ ।

ଏମିତି ଏକ ଅଭୁଲା ଶ୍ରାବଣ ମାସରେ ହିନ୍ଦୁ ସମାଜରେ ମଣିଷର ଧାର୍ମିକ ଓ ପରମ୍ପରାର ମଧୁର ଯୋଗାଯୋଗ ବାରିହୋଇପଡ଼େ । ମହାର୍ଘ ପୁଣ୍ୟତିଥିରେ ଅହେତୁକ ନିବିଡ଼ତା ମଣିଷ ମନ-ହୃଦୟରେ ଯୋଡ଼ି ହୋଇପାରିଛି କାହିଁ କେତେ କାଳୁ । ଶ୍ରାବଣ ପୂର୍ଣ୍ଣିମାରେ ରକ୍ଷା ବନ୍ଧନର ପବିତ୍ର ଉତ୍ସବ ପାଳିତ ହୁଏ । ଗୋଟିଏ ରେଶମୀ ଡୋରର ଆକର୍ଷଣ ଭାଇଭଉଣୀ ଭିତରେ ଭଲପାଇବା ଓ ତ୍ୟାଗର ପ୍ରତୀକକୁ ବହୁଗୁଣିତ କରିଥାଏ । ଭଉଣୀ ଚାହିଁଥାଏ ଭାଇକୁ ସୁଦୂରରୁ ତା' ଭାଇ କେବେ



ଆସିବ । ଭାଇର ଦକ୍ଷିଣ ହାତରେ ରାଖୀଟିଏ ବାନ୍ଧି ଚନ୍ଦନଟିପା ଲଗାଇ ପୂଜାର୍ଚ୍ଚନା କରିବ ଏକ ଅନାବିଳ ଆତ୍ମୀୟତାରେ । ଖୁଆଇଦେବ ବିଭିନ୍ନ ରକମର ମିଷ୍ଟାନ୍ନ । ମନାସିବ ଭାଇର ମଙ୍ଗଳ । ପ୍ରତିବଦଳରେ ଭାଇ ଦେବ ଭଉଣୀକୁ ରକ୍ଷାକରିବାର ଦୁର୍ଲ୍ଲଭ ପ୍ରତିଶ୍ରୁତି । ଭାଇ ରହିଯାଏ କେଉଁ ଏକ ଅପହଂଚ ଇଲାକାରେ । ଆସିବାର ଯୁ ନାହିଁ ସତେ ଯେମିତି । ଭଉଣୀ ଲୁହ ଢାଳେ । ତା' ଆଖିରୁ ପାଣି ମରେ ଆପଣାଛାଏଁ । ଭଉଣୀ ଆଖିରୁ ଲୁହ ଢାଳିଲାବେଳକୁ ଭାଇ ତା' ଆଗରେ ଠିଆ ହୋଇଯାଏ । କେତେ ଖୁସି ହୁଏ ଭଉଣୀ ଭାଇକୁ ଦେଖି । ଏ କଥାଟି ଭାବିଲାବେଳକୁ ଓ ଡୋରଟିଏ ବାନ୍ଧିଲାବେଳକୁ ଆପେ ଆପେ ଲୁହ ଆସିଯାଏ ଦୁଇଜଣଙ୍କ ଆଖିରେ । ଠିକ୍

ସତରେ ରାଖୀ ବନ୍ଧନର ଏ ଦୃଶ୍ୟ ଅପାସୋରା । ତଥାପି ଭାଇଭଉଣୀର ଅନାବିଳ ଆତ୍ମୀୟତା ବଂଚିରହିଛି କାହିଁ କେତେ କାଳୁ ।

ଯମ (ମୃତ୍ୟୁର ଦେବତା) ନିଜ ଭଉଣୀ ଯମୁନା(ନଦୀ) ପାଖକୁ ଦୀର୍ଘ ୧୨ ବର୍ଷ ହେଲା ଯାଇନଥିଲେ । ତେଣୁ ସେ ଦୁଃଖିତ ଥିଲେ । ଗଙ୍ଗା (ନଦୀ)ଙ୍କ ଉପଦେଶାନୁଯାୟୀ ଯମ ଯମୁନାକୁ ଦେଖା କରିବାକୁ ଗଲେ । ଭଉଣୀ ମଧ୍ୟ ଭାଇକୁ ମାନ ସମ୍ମାନ ଜଣାଇ ଆତିଥ୍ୟତା ପ୍ରଦାନ କଲା । ଯମ ଅତୀବ ଖୁସି ହୋଇଗଲେ ଭଉଣୀ ଉପରେ ଏବଂ ଉପହାର ଦେବାକୁ ସ୍ୱୀକୃତି ପ୍ରଦାନ କଲେ । ଯମୁନା ଆଗ୍ରହ ସହକାରେ କହିଲା– ଏମିତି ସବୁବେଳେ ଭାଇର ଦେଖା ମିଳୁଥାଉ । ଯମ ନିଜ ଭଉଣୀ ଯମୁନାକୁ ଶାଶ୍ୱତ ହେବାର ଆଶୀର୍ବାଦ କଲେ ଏବଂ ଭଉଣୀର ଚାହିଦା ମୁତାବକ ସେ ସାକ୍ଷାତ୍ କରିବେ ବୋଲି ଆଶ୍ୱାସନା ଦେଲେ । ଭାଇଭଉଣୀର ଅନାବିଳ ଆନ୍ତରିକତା ହିଁ ରାଖୀ ବନ୍ଧନର ଅୟମାରମ୍ଭ ବୋଲି ପ୍ରତୀୟମାନ ହୁଏ ।

ଶ୍ରୀକୃଷ୍ଣ–ଦ୍ରୌପଦୀ–ଶିଶୁପାଳଙ୍କ କାହାଣୀର ଅବତାରଣାରେ ରାଖୀ ବନ୍ଧନ ପାଳିତ ହୋଇଆସୁଛି ବୋଲି ପୁରାଣ ସାହିତ୍ୟରୁ ଜଣାପଡ଼େ । ଶିଶୁପାଳ ଥିଲେ ଶ୍ରୀକୃଷ୍ଣଙ୍କ ମାଉସୀପୁଅ ଭାଇ । ରୋଗଗ୍ରସ୍ତ ଯୋଗୁଁ ଶିଶୁପାଳଙ୍କ ମାଆ ଚିନ୍ତିତ ରହୁଥିଲେ । ସ୍ୱପ୍ନବାଣୀ ହେଲା– ଏ ଶିଶୁଟି ଯାହାର ହାତ ସ୍ପର୍ଶରେ ସୁସ୍ଥ ହେବ, ତାହାରି ହାତରେ ହିଁ ମୃତ୍ୟୁ ଲଭିବ । ଏମିତି ଏକ ଦିନଟିଏ ଆସିଲା ଶ୍ରୀକୃଷ୍ଣ ନିଜ ମାଉସୀଙ୍କ ଘରକୁ ବୁଲିବାର ସୁଯୋଗ ପାଇଲେ । ମାଉସୀଙ୍କ ଘରେ ପାଦ ଥୁଅନ୍ତେ ସନ୍ତାନକୁ ହାତ ବଢେଇଲେ କୋଳେଇନେବାକୁ । ହଁ, ଶ୍ରୀକୃଷ୍ଣ କୋଳେଇନେଲେ ପୁତ୍ର ସ୍ନେହ ଢଙ୍ଗରେ । ଚମତ୍କାରିତା ଦେଖାଗଲା ସଙ୍ଗେସଙ୍ଗେ । ସୁସ୍ଥ ହୋଇଗଲା ଶିଶୁପୁତ୍ର ଶିଶୁପାଳ । ପରୋକ୍ଷରେ ଦୁଇଧାର ଲୁହ ଝରିଗଲା ଶିଶୁପାଳଙ୍କ ମାଆଙ୍କ ଆଖିରୁ । ସ୍ୱପ୍ନବାଣୀ ମନେପଡ଼ିଗଲା ସତେ ଅବା । ମୃତ୍ୟୁ ଅବଶ୍ୟମ୍ଭାବୀ ଶିଶୁପାଳର ! ଏଭଳି ଏକ ଦୁଃଖଦ ଘଟଣା ଘଟିବାର ଆଶଙ୍କାରେ ମ୍ରିୟମାଣା ହୋଇପଡ଼ିଲେ । ପୁଅର ଜୀବନରକ୍ଷା କରିବାପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ଶ୍ରୀକୃଷ୍ଣ ଆଶ୍ୱସ୍ତିପୂର୍ବକ କହିଲେ– ଶିଶୁପାଳ ଶହେତମ ଅପରାଧ ପରେ ତା'ର ଅବଶ୍ୟ ମୃତ୍ୟୁ ହେବ । ହତବିହ୍ୱଳ ହୋଇଗଲେ ଶ୍ରୀକୃଷ୍ଣଙ୍କ ମାଉସୀ ।

ଦିନକୁ ଦିନ ମାତ୍ରାଧିକ ହେଲା ଶିଶୁପାଳର ଅପରାଧ । ନିଜକୁ ନିଜେ ଚିହ୍ନିପାରିଲାନି ସେ । ଧରାକୁ ସରା ମଣି କୁରୁସଭାରେ ଦ୍ରୌପଦୀଙ୍କୁ ଅପମାନ ଦେବା ସହ ଶ୍ରୀକୃଷ୍ଣଙ୍କୁ ଅସମ୍ମାନ କଲା । ବୋଧହୁଏ ସେଇଟା ଥିଲା ଶିଶୁପାଳର ଶହେତମ ଅପରାଧ । ପାପରେ ଭାରାକ୍ରାନ୍ତ ହେଲେ ମୃତ୍ୟୁକୁ ସାମ୍ନାକରିବାକୁ ପଡ଼ିଥାଏ ମଣିଷକୁ । ଏହିପରି ଅଜ୍ଞାତରେ ଶିଶୁପାଳ ମୃତ୍ୟୁକୁ ସ୍ୱୀକାର କରିବାକୁ ବାଧ୍ୟ ହେଉଥିଲା ଯେମିତି । ରାଗ ଜର୍ଜରିତ ହୋଇ ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ର ଦ୍ୱାରା ଶିଶୁପାଳଙ୍କୁ ବଧ କଲେ । ସୁଦର୍ଶନ ପ୍ରହାରରେ ଅଲକ୍ଷ୍ୟରେ ଶ୍ରୀକୃଷ୍ଣଙ୍କ ବିଶିଆଙ୍ଗୁଠି ଖଣ୍ଡିଆ ହୋଇଗଲା ଓ କ୍ଷତ ସ୍ଥାନରୁ ରକ୍ତ କ୍ଷରଣ ହେଲା । ଦ୍ରୌପଦୀ ଅବିଳମ୍ବେ ନିଜ ପିନ୍ଧା ଶାଢୀକୁ ଚିରି ଶ୍ରୀକୃଷ୍ଣଙ୍କ ବିଶି ଆଙ୍ଗୁଠିରେ ଗୁଡ଼ାଇଦେଲେ । ରକ୍ତ କ୍ଷରଣ ବନ୍ଦ ହୋଇଗଲା । ଶ୍ରୀକୃଷ୍ଣ ଆଶ୍ୱସ୍ତି ଅନୁଭବ କଲେ । ଏ ଥିଲା ଦ୍ରୌପଦୀଙ୍କର ଭାଇ ପ୍ରତି ଅକାଟ୍ୟ ଭକ୍ତି ଓ ଆନ୍ତରିକତା । କୁରୁସଭାରେ ଦ୍ରୌପଦୀ ଅସହାୟତାରେ ପ୍ରଭୁଙ୍କୁ ସ୍ମରଣ କରୁଥିଲା ବେଳେ ଗୋପନରେ ଶ୍ରୀକୃଷ୍ଣ ବସ୍ତ୍ର ଯୋଗାଇଦେଇଥିଲେ । ଭଉଣୀକୁ ରକ୍ଷାକରିବା ଏକାନ୍ତ ଆବଶ୍ୟକ ଥିଲା ଶ୍ରୀକୃଷ୍ଣଙ୍କର ।

ଅନ୍ୟ ଏକ କାହାଣୀର ପୃଷ୍ଠଭୂମିରେ ରାଖୀର ମର୍ଯ୍ୟାଦା ଶୁଣିବାକୁ ମିଳେ ।

ଭାଗବତ ପୁରାଣ ଓ ବିଷ୍ଣୁପୁରାଣ ଅନୁଯାୟୀ ମହା ବିକ୍ରମୀ ତଥା ଦାନୀ ବଳି ରାଜା ଭଗବାନ ବିଷ୍ଣୁଙ୍କୁ ଅନୁରୋଧ କରିଥିଲେ ପାଖେ ପାଖେ ରହିବାକୁ । ବିଷ୍ଣୁଦେବ ସନ୍ତୁଷ୍ଟ ହୋଇ ବୈକୁଣ୍ଠପୁରରୁ ଚାଲିଆସିଥିଲେ ଓ ବଳିରାଜାଙ୍କ ପାଖରେ ରହିଯାଇଥିଲେ । ବୈକୁଣ୍ଠପୁରରେ ଚିନ୍ତିତ ମହାଲକ୍ଷ୍ମୀ । ଛଦ୍ମବେଶରେ ଆସି ବଳିରାଜାଙ୍କ ପାଖରେ ଉପଗତ ହେଲେ । ବଳିରାଜାଙ୍କୁ ସୂତାଖିଅରେ ରାଖୀଟିଏ

ବାନ୍ଧିଥିଲେ ସମ୍ମାନର ସହ । ମହାଲକ୍ଷ୍ମୀଙ୍କ ମନୋଭାବକୁ ବୁଝିପାରି ବଳିରାଜା ଭଉଣୀ ମହାଲକ୍ଷ୍ମୀଙ୍କ କଥାରେ ସମ୍ମତ ହେଲେ । ବିଷ୍ଣୁଦେବଙ୍କୁ ବୈକୁଣ୍ଠପୁରକୁ ଫେରିଯିବା ପାଇଁ ଆଜ୍ଞା ଦେଲେ । ଏସବୁ ସମ୍ଭବ ହୋଇପାରିଥିଲା କେବଳ ଏକ ସୂତାଖିଅର ସମ୍ପର୍କ ପାଇଁ ।

ସତରେ ଏମିତିକା ଡ଼ୋର ଯେ ଏକ ଅନନ୍ୟ ସମ୍ପର୍କକୁ ଦ୍ୱିଗୁଣିତ କରିପାରେ, ଏହିଥିରୁ ହିଁ ସୁସ୍ପଷ୍ଟ ।

ପୁରାଣ ସାହିତ୍ୟ ପରି ଇତିହାସ ପୃଷ୍ଠାରେ ବି ରାଖୀ ବନ୍ଧନର ନଜିର ଶୁଣିବାକୁ ମିଳେ ।

ଏହି ଆର୍ଯ୍ୟ ଭୂମି ଭାରତ ଥିଲା ମୋଗଲ ଶାସକଙ୍କର କବଳିତ । ସରଳ, ତରଳ, ଧର୍ମ ବିଶ୍ୱାସୀ ତଥା ଅବଳା ସୁନ୍ଦରୀ ହିନ୍ଦୁ ତରୁଣୀମାନେ ଶାସକମାନଙ୍କ ଦ୍ୱାରା ନିଷ୍ପେସିତ ହେଉଥିଲେ । ନିଜର ଅନିଛାରେ ଅନେକ କିଛି ଶାରୀରିକ ଦୁଃଖ ସହିବାକୁ ପଡୁଥିଲା ସେମାନଙ୍କୁ । ତେଣୁ ବୁଦ୍ଧିଜୀବୀ ରମଣୀମାନେ ଏଭଳି ବର୍ବର ଦୁଷ୍କର୍ମରୁ ମୁକୁଳିବା ପାଇଁ ଶାସକମାନଙ୍କ ହାତରେ ରାଖୀ ବାନ୍ଧୁଥିଲେ । ସେମାନଙ୍କୁ ଭାଇ ବୋଲି ସମ୍ବୋଧନ କରି ଆପଣାଇ ନେଉଥିଲେ । ଏଥିରୁ ଯାହା ଜଣାପଡ଼େ ସାମାନ୍ୟ ସୂତାଖିଅରେ ଏକ ନିଆରା ସମ୍ପର୍କ ଯୋଡ଼ି ଦିଆଯାଇପାରେ ।

କହିବାକୁ ଗଲେ ରାଖୀ ଏକ ସୂତାଖିଅର ଗାଥାଟିଏ । ଭଲପାଇବାରେ ଅମୂଲ୍ୟ ସମ୍ପଦ । ଶ୍ରାବଣରେ ଆକାଶରୁ ମେଘ ଝରେ । ମାଟି ହୁଏ ଓଦା । ପ୍ରକୃତି ଶାନ୍ତ ହୁଏ । ସେହିଭଳି ରାଖୀ ପୂର୍ଣ୍ଣିମାରେ ରାଖୀ ବନ୍ଧନର ଆନନ୍ଦ ବୋଧହୁଏ କେଉଁଠି ମିଳେନା । ଭାଇ ଭଉଣୀର ଆଖିରୁ ଲୁହ ଝରେ ଖୁସିର, ଭଲପାଇବାର । ପରିବାରରେ ଯେମିତି ଖୁସିର ବାତାବରଣ ସୃଷ୍ଟି ହୋଇଯାଏ ।

କୃଷିପ୍ରଧାନ ଦେଶ ଭାରତବର୍ଷରେ ରାଖୀ ପୂର୍ଣ୍ଣିମା ଏକ ପାରିବାରିକ ବନ୍ଧନର ସାକ୍ଷୀ । ଧର୍ମ ପରମ୍ପରାରେ ଉବୁଟୁବୁ ଭାରତବାସୀ ପାରିବାରିକ ଶୃଙ୍ଖଳା ଓ ଆତ୍ମୀୟତାକୁ ବେଶ୍ ଭଲ ପାଆନ୍ତି । ରାଖୀ ବାନ୍ଧିଦେଇ ଭାଇ ଭଉଣୀର ଅତୁଟ ବନ୍ଧନକୁ ଆହୁରି ସୁଦୃଢ଼ କରିପାରେ । ଏହି ମହାନ୍ ପର୍ବରେ ପିଠା-ମିଠାର ଆସର ଜମେ । ଘରେ ଘରେ ଖୁସିର ମାହୋଲଟିଏ ତିଆରି ହୋଇଯାଏ ଆପେ ଆପେ । ଏହିଦିନ ଠାକୁରଙ୍କୁ ରାଖୀଟିଏ ବାନ୍ଧି ଆଶିଷ ଭିକ୍ଷା କରନ୍ତି ଘରର ସଭ୍ୟ/ସଭ୍ୟାମାନେ ।

ଏ ଶ୍ରାବଣ ପୂର୍ଣ୍ଣିମାରେ ଠାକୁର ବଳରାମଙ୍କ ଜନ୍ମ ଜୟନ୍ତୀ ପଡୁଥିବାରୁ ହଳ ଲଙ୍ଗଳକୁ ପୂଜା କରାଯାଏ । ଗୋରୁଗାଈଙ୍କୁ ବି ସମ୍ମାନ ସହ ଗୋମାତା ରୂପେ ପୂଜା କରାଯାଏ । ଏହି ଦିନର ଅନ୍ୟ ଏକ ଆକର୍ଷଣ ହେଲା ଗହ୍ମା ପୁନେଇଁ, ଯାହାକି ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ ପାଳିତ ହୁଏ ବିଶେଷ ଭାବେ । ତେଣୁ ଶ୍ରାବଣ ପୂର୍ଣ୍ଣିମାର ସ୍ୱାତନ୍ତ୍ର୍ୟ ଅନେକ ।

ଏବେ ଚାରିଆଡ଼େ କରୋନା ..କରୋନା.. । ଏକ ଅବିଶ୍ୱସନୀୟ ମହାମାରୀର ତାଡ଼ନାରେ ଆମେ କଷାୟିତ । କରୋନାର ଆଁ ଭିତରେ ସମଗ୍ର ବିଶ୍ୱବାସୀ । ଲକ୍‌ଡାଉନ, ସଟ୍‌ଡାଉନର କଟକଣାରେ ଅଣନିଃଶ୍ୱାସୀ ସମସ୍ତେ । ପୂଜା ପାର୍ବଣର ମାଙ୍ଗଳିକ ମୁହୂର୍ତ୍ତକୁ ସାଉଁଟି ଆଣିବାକୁ ମଣିଷ ଯେତିକି ଆଗୁସାର, କରୋନାର ମୃତ୍ୟୁ ଜାଲରେ ଛନ୍ଦି ହେବା ଭୟରେ ସେତିକି ପଛେଇଯାଉଛି । ପୂଜା ପାର୍ବଣ ବନ୍ଦ, କୋଳାହଳ ବନ୍ଦ, ଆନନ୍ଦ ଉଲ୍ଲାସ ବି ବନ୍ଦ । ସବୁଠି ଭୟ..ଭୟ..ଭୟ..

ବିଗତ ବର୍ଷମାନଙ୍କରେ ରାଖୀ ପୂର୍ଣ୍ଣିମା ଆସିଲେ ଭିଡ଼ ଜମୁଥିଲା ଦୋକାନ ବଜାରରେ । ଭଉଣୀମାନେ ଖୁସି ସରାଗରେ ରାଖୀ କିଣୁଥିଲେ । କେତେ ପ୍ରକାରର ରାଖୀ । ସତେ ଯେମିତି ଝଲସିଯାଉଥିଲା ଦୋକାନ ଓ ଭଉଣୀମାନଙ୍କର ଆବେଗମୟ ମନ । ସେତେବେଳେ ଭଉଣୀ ପାଖରେ ଭାଇଟିଏ କାର୍ଯ୍ୟବ୍ୟସ୍ତତା ଭିତରେ ରହିପାରୁ ନଥିଲେ ବି ଭଉଣୀ ଘରେ ବସି ପୂଜା କରୁଥିଲା ଓ ରାଖୀଟିଏ ଡାକରେ ପଠେଇ ଭାଇର ଶୁଭ ମନାସୁଥିଲା । ଏବେ କିନ୍ତୁ ସାମାଜିକ ଦୂରତାକୁ ମାନିବାକୁ ଓ ମୁହଁରେ ମାସ୍କ ପିନ୍ଧିବାକୁ ବାଧ୍ୟ ସମସ୍ତେ । ଯଦିଓ ଭାଇ ଘରକୁ ଫେରିଛି ପ୍ରବାସୀ ହୋଇ । ସଙ୍ଗରୋଧରେ

ଘରେ ରହିଛି । ଭଉଣୀ ଅନେଇ ବସୁଛି ଭାଇକୁ ସଜଳ ଆଖିରେ । ରାଖୀ ବାନ୍ଧିବାର ଇଛା ଟିକକ ସତେ ଯେମିତି ଖାପଛଡ଼ା ଲାଗୁଛି ତାକୁ । ବଜାରରୁ ରାଖୀଟିଏ କିଣିବାର ସୁଯୋଗ ପାଉନି । ବରଂ ଏକ ସୂତାଖିଅରେ ରାଖୀଟିଏ ତିଆରି କରିଛି । ଦୂରରେ ଥାଇ ବଢ଼େଇ ଦେଉଛି ସୂତାଖିଅର ରାଖୀଟିକୁ । ଇଏ କ'ଣ ରାଖୀପୂର୍ଣ୍ଣିମାର ଅପାସୋରା ସ୍ମୃତି ନୁହେଁ ?

ସଂପ୍ରତି ଭାରତ ଚୀନ୍ ସୀମାନ୍ତରେ ସୈନିକ ଭାଇଟିଏ । ଦେଶମାତୃକା ପାଇଁ ଲଢ଼େଇ କରୁଛି । ଏ ଘନଘୋର ସନ୍ଧିକ୍ଷଣରେ ରାଖୀପୂର୍ଣ୍ଣିମା ଆସିଛି । ଭଉଣୀ ଅନେଇ ବସିଛି । ତଥାପି ତା' ମନରେ ଦୁଃଖ ନାହିଁ, କାରଣ ଭାଇ ତା'ର ଦେଶପ୍ରେମରେ ଉଦ୍‌ବୁଦ୍ଧ । କୋଟି କୋଟି ଭାରତୀୟ ଭଉଣୀମାନେ ସେହି ସୈନିକମାନଙ୍କ ହାତରେ ରାଖୀ ବାନ୍ଧି ନ ପାରିଲେ ବି ସୁମଙ୍ଗଳ କାମନା କରୁଛନ୍ତି । ଏଇଟା ହିଁ ଭାରତୀୟମାନଙ୍କ ପାଇଁ ଗର୍ବ ଓ ଗୌରବ । କରୋନା ଯୁଦ୍ଧରେ ନିଜକୁ ନିୟୋଜିତ କରୁଥିବା ସମସ୍ତ ଯୋଦ୍ଧାଙ୍କୁ ଏ ରାଖୀ ପୂର୍ଣ୍ଣିମା ସମ୍ମାନ ଜଣାଉଛି ।

ସେ ଯାହାହେଉନା କାହିଁକି ଶ୍ରାବଣ ପୂର୍ଣ୍ଣିମା ହେଉଛି ଧର୍ମୀୟ ଚେତନାର ମୂକସାକ୍ଷୀ । ରାଖୀ ପୁନେଇଁ ଭାଇଭଉଣୀର ଅପାସୋରା ସମ୍ପର୍କର ମାପକାଠି । ସମୟ ବଦଳୁଛି । ହଁ ବଦଳୁଥାଉ । ଆମେ ସମସ୍ତେ ସମୟର ଦାସ । ସାମ୍ପ୍ରତିକ ପରିବେଶକୁ ଖାପ୍ ଖୁଆଇ ଚଳିବା ହିଁ ଆମର ଶ୍ରେଷ୍ଠ ଧର୍ମ । ଆମେ ଆର୍ଯ୍ୟ ସମାଜର ଦାୟାଦ । ଧର୍ମ, ସଂସ୍କୃତି, ପରମ୍ପରା, ପୂଜାପାର୍ବଣକୁ ପାଥେୟ କରି ଜୀବନ କାଟିବା । ସବୁ ବାଧାବିଘ୍ନକୁ ଏଡ଼ାଇ, କଳୁଷିତ ବାତାବରଣଠୁ ଦୂରେଇ ଭାଇଚାରା ଗଢିବା ।

ଆସନ୍ତୁ, ସଭିଏଁ ମିଳିମିଶି ଏମିତି ଏକ ଅସଜଡ଼ା ସମୟରେ ପାଛୋଟିନେବା ରାଖୀପୂର୍ଣ୍ଣିମାକୁ । ଗୀତଟେ ଗାଇବା ଖୁସିମନରେ –

ରାଖୀ ପୁନେଇଁରେ ରାଖୀ ପୁନେଇଁ  
ତୋତେ ମୁଁ ରହିଛି ଏଠି ଅନେଇ ।  
ମୋ ଗେହ୍ଲା ଭଉଣୀ ଧରିଛି ରାଖୀ  
ରାଖୀ ପରା କୋଟି ଯୁଗର ସାକ୍ଷୀ ।

ଏଲ୍.ଆଇ.ଜି. ୧୫  
ନୟାପଲ୍ଲୀ ବ୍ରିଟ୍ କଲୋନୀ  
ଭୁବନେଶ୍ୱର–୭୫୧୦୧୨



# ହିରୋଶିମା: ସ୍ମରଣୀୟ ଦୀର୍ଘଶ୍ୱାସ

ସୂର୍ଯ୍ୟ ମିଶ୍ର

ଆଜିର ସମୃଦ୍ଧ ରାଷ୍ଟ୍ର ଜାପାନ । ୧୯୪୫ ଅଗଷ୍ଟ ୬ ତାରିଖ ସକାଳ ୮ଟା ୧୫ । ହିରୋଶିମା ସହରର ଅଧିବାସୀମାନେ ଚଳଚଞ୍ଚଳ ହେବାକୁ ଆରମ୍ଭ କରିସାରିଥିଲେ । ଅଚାନକ ଆକାଶରେ ଧୂଆଁ, ରୁଦ୍ଧ ବାଦଲ, କର୍ଣ୍ଣଭେଦୀ ଗର୍ଜନ, ପରେ ପରେ ଉଦ୍‌ଗୀରଣ । ଅପ୍ରତ୍ୟାଶିତ ଭାବରେ ଗୋଟିଏ ବିଶାଳ ଅଗ୍ନିବଳୟ ଭିତରେ ବିଲୀନ ହୋଇଯିବା ପରି ଅବସ୍ଥା ହିରୋଶିମାବାସୀଙ୍କର । କେଇ ମିନିଟ୍ ଭିତରେ ସବୁ ଓଲଟପାଲଟ । ମାର୍କିନ୍ ରାଷ୍ଟ୍ରପତି ହ୍ୟାରି ଏସ୍. ଟ୍ରୁମାନ୍‌ଙ୍କ ନିର୍ଦ୍ଦେଶରେ 'ଏନୋଲା ଗେ' ଯୁଦ୍ଧ ବିମାନ ଚଳାଇ ବୈମାନିକ ପଲ୍ ଟିବେଟ୍‌ସ୍ ପହଞ୍ଚିଗଲେ ଓ ମେଜର ଏଥାଲି ଆକାଶ ମାର୍ଗରୁ ବୋମା ନିକ୍ଷେପ କଲେ । ଧ୍ୱଂସଲୀଳା ଓ ପ୍ରଳୟର ବିଶାଳ ଗହ୍ୱରରେ ତୁରନ୍ତ ଲୀନ ହୋଇଗଲେ ପ୍ରାୟ ୮୦ ହଜାର ଲୋକ । ୩୦ ହଜାର ଲୋକ କ୍ଷତବିକ୍ଷତ ଓ ଅକର୍ମଣ୍ୟ ହୋଇଗଲେ ଏବଂ ଏହି ଘଟଣାର ପ୍ରଭାବରେ ପରେ ୬୦ ହଜାର ଲୋକ ପ୍ରାଣ ହରାଇଲେ । ଅଗଷ୍ଟ ୯ରେ ନାଗାସାକି ସହରର ମଧ୍ୟ ଅନୁରୂପ ଅବସ୍ଥା । ଜାପାନର ୬୭ଟି କ୍ଷୁଦ୍ର ସହର ଧ୍ୱଂସସ୍ତୂପରେ ପରିଣତ ହୋଇଗଲା । ପ୍ରାୟ ୯୦ ହଜାର କୋଠାବାଡ଼ିରୁ ୬୨ ହଜାର ଭାଙ୍ଗିରୁଜି ଚୂରମାର ହୋଇଗଲା । ୫ ଟନ୍ ଓଜନ (ପ୍ରାୟ ୧୦ ହଜାର ପାଉଣ୍ଡ)ବିଶିଷ୍ଟ ପରମାଣୁ ବୋମା 'ଲିଟିଲ୍ ବଏ' ହିରୋଶିମାକୁ ଗୋଟାଏ ପୋଡା ବାରୁଦଗଦାରେ ପରିଣତ କରିଦେଲା । ସାମ୍ରାଜ୍ୟବାଦୀ ଶକ୍ତିର ଯୁଦ୍ଧ-କ୍ଷୁଧା ଓ ହିଂସା ଏବଂ ରକ୍ତପାତର ଫଳସ୍ୱରୂପ ଜାପାନ ଅଗଷ୍ଟ ୧୫ ତାରିଖ ଦିନ ଆତ୍ମସମର୍ପଣ କଲା ଏବଂ ସେପ୍ଟେମ୍ବର ୨ ତାରିଖରେ ମିତ୍ର ଶକ୍ତି ସହ ଚୁକ୍ତି ସଂପାଦନ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ଘଟିଲା ।

ହିରୋଶିମା ଆକ୍ରମଣର ଭୟାବହତା ଓ ସଙ୍କଟଜନକ ପରିଣାମକୁ ନେଇ ପରେ ଜାପାନରେ 'ଆଣବିକ ସାହିତ୍ୟ' ନାମକ ଏକ ଧାରା ଆରମ୍ଭ ହୋଇଗଲା । ଖ୍ୟାତିସଂପନ୍ନ ଲେଖକମାନଙ୍କ ପୁସ୍ତକ ଓ ପ୍ରସିଦ୍ଧ ନିର୍ଦ୍ଦେଶକମାନଙ୍କ ଚଳଚ୍ଚିତ୍ରରେ ହିରୋଶିମା ଘଟଣାର ହୃଦୟ ବିଦାରକ ବର୍ଣ୍ଣନା ଓ ଉପସ୍ଥାପନା ଆଜିର ପିଢ଼ିକୁ ବିସ୍ମୟାଭିଭୂତ କରିପକାଏ । 'ବେୟାର ଫୁଟ୍ ଜେନ୍', 'ଏବଭ୍ ଆଣ୍ଡ ବିୟୋଣ୍ଡ', 'ଡେ ୱାନ୍', 'ଇନ୍ ଦିସ୍ କର୍ଣ୍ଣର ଅଫ୍ ଦି ୱାର୍ଲଡ', 'ରାପ୍‌ସୋଡି ଇନ୍ ଅଗଷ୍ଟ', 'ୱିମେନ୍ ଇନ୍ ଦି ମିରର୍', 'ଲିଟିଲ୍ ବଏ', 'ବିଗିନିଂ ଅର୍ ଦି ଏଣ୍ଡ' ପରି ଏକାଧିକ ସିନେମା ୧୯୫୦ ଦଶକରୁ ଆରମ୍ଭ ହୋଇଛି ଓ ବିଶ୍ୱବ୍ୟାପୀ ଲୋକମାନଙ୍କୁ ହିରୋଶିମା ଘଟଣାର ତଥ୍ୟ ପ୍ରଦାନ କରିଛି । ଜାପାନୀ ଲେଖକ କିଓକୋ ମୁରାଟାଙ୍କ ଲିଖିତ ଉପନ୍ୟାସ 'ନାବେ ନ ନାକା' ଅନୁସରଣରେ ପ୍ରସ୍ତୁତ ଏକ ଚଳଚ୍ଚିତ୍ର 'ରାପ୍‌ସୋଡି ଇନ୍ ଅଗଷ୍ଟ' (୧୯୯୧)ରେ ହିରୋଶିମା ଘଟଣାର ପ୍ରତ୍ୟକ୍ଷଦର୍ଶୀ ଜନୈକା ବୃଦ୍ଧାଙ୍କର ଜୀବନଚର୍ଯ୍ୟା ଓ ମାନସିକ ଅବସ୍ଥା ଚିତ୍ରାୟିତ ହୋଇଛି । ଚାରୋଟି ନାତିନାତୁଣୀଙ୍କୁ ଧରି ସେବାଯତ୍ନ କରୁଥିବା ବୃଦ୍ଧାଜଣକ ହାୱାଇରେ ରହିଯାଇଥିବା ତାଙ୍କ ନିଖୋଜ ଭାଇଙ୍କୁ ସାକ୍ଷାତ୍ କରିବା ପାଇଁ ଚାହୁଁଛନ୍ତି ।

ଅନୁରୂପ ଭାବରେ ଅନେକ ପୁସ୍ତକ ଆମକୁ ହିରୋଶିମା ଘଟଣା ବାବଦରେ ସଚେତ କରାଇ ଦେଇଛି । 'ଏ ବ୍ଲାଙ୍କ ଇନ୍ ଦି ୱେଦର ମ୍ୟାପ୍', 'ଅନ୍‌ଫରଗେଟେବୁଲ୍ ଫାୟାର୍', 'ଦି ଗ୍ରେଭ୍ ଅନ୍ ଦି ୱାଲ୍', 'ହିରୋଶିମା ନୋ ପିକା', 'ବ୍ଲାକ୍ ରେନ୍'(ମାସୁଜି ଇବୁସେ), 'ବ୍ରାଇଟର ଦ୍ୟାନ୍ ଏ ଥାଉଜେଣ୍ଡ ସନସ୍', 'ହିରୋଶିମା', 'ଅନ୍ ଦି ହୋରାଇଜନ୍' (ଲୋଇସ୍ କୋରି), 'ଦି ବ୍ୟାଟଲ୍ ଅଫ୍ ଓକିନାୱା' (ଜର୍ଜ ଫେଫର) ପରି ପୁସ୍ତକଗୁଡ଼ିକ ହିରୋଶିମା ଘଟଣାୟନ ଓ ଚରିତ୍ରାୟନ ସନ୍ନିବିଷ୍ଟ କଥାବସ୍ତୁକୁ ନେଇ ଯେତିକି ଆଦୃତ, ସେତିକି ଚର୍ଚ୍ଚିତ । 'ହିରୋଶିମା ନୋ ପିକା' (ତୋଷି ମାରୁରି) ପୁସ୍ତକରେ ଗୋଟେ କୁନି ଝିଅ ଓ ତା'ର ବାପାମା' ସକାଳ ଜଳଖିଆ ଖାଇବା ସମୟରେ ବୋମାବର୍ଷଣ ଘଟିବାର ବର୍ଣ୍ଣନା ଓ ସେମାନଙ୍କର ମାନସିକ ସ୍ଥିତି ପ୍ରତିଫଳିତ ହୋଇଛି । ସେହିପରି 'ଦି ଗ୍ରେଭ୍ ଅନ୍ ଦି ୱାଲ୍'ରେ ହିରୋଶିମା ଘଟଣା ପରେ ଜେଜେବାପାଙ୍କ ଜୀବନବ୍ୟାପୀ ଯନ୍ତ୍ରଣାକ୍ତ ଜୀବନଚର୍ଯ୍ୟା ବର୍ଣ୍ଣିତ ହୋଇଛି । ଓଡ଼ିଆ କବିଙ୍କ ଭାଷାରେ–'ଅଥବା ଏକ ନାରକୀୟ ଅଦୃଷ୍ଟ/ ଯାହା ଭୂଭାଗକୁ ଛିନ୍ନଭିନ୍ନ କରିଦିଏ/ଦୂଷିତ କରିଯାଏ ଆସନ୍ତାକାଲି ସବୁକୁ/ଲିଭାଇ ଦିଏ ଜନ୍ମପତ୍ରର ଶୁଭଚିହ୍ନ/ ମଣିଷର ଭାଗ୍ୟ/ଶିଶୁମାନଙ୍କର ହସ/ ଏବଂ ସମୟର ସମସ୍ତ କୃତିତ୍ୱ ।' (ହିରୋଶିମା–'ଆହ୍ନିକ'–୧୯୯୦– ଜଗନ୍ନାଥ ପ୍ରସାଦ ଦାସ)

ହିରୋଶିମାରେ ପରମାଣୁ ବର୍ଷଣ ପାଇଁ ଯାଇଥିବା ବୈମାନିକ ପଲ୍ ଟିବେଟ୍ସଙ୍କ ସଂପର୍କରେ ଏକ ରୋଚକ ତଥ୍ୟ ହେଲା ସେ ନିଜର ସମାଧି ନିର୍ମାଣ ପାଇଁ ମନା କରିଦେଇଥିଲେ । ଯୁଦ୍ଧବିରୋଧୀ ଶାନ୍ତିକାମୀ ଲୋକମାନଙ୍କର ପ୍ରତିବାଦକୁ ସାମ୍ନା କରିବା ଆଶଙ୍କାରେ ଟିବେଟ୍ସ ସମ୍ଭବତଃ ଏପରି ନିଷ୍ପତ୍ତି ନେଇଥିଲେ । ମାର୍କିନ୍ ବାୟୁସେନାରୁ ବ୍ରିଗେଡିୟର ଜେନେରାଲ୍ ଭାବରେ ୧୯୬୬ରେ ଅବସର ଗ୍ରହଣ କରିଥିବା ଟିବେଟ୍ସ ୯୨ ବର୍ଷ ବୟସରେ ୨୦୦୭ରେ ପରଲୋକ ଗମନ କରିଥିଲେ । ପରମାଣୁ ବୋମା ନିକ୍ଷେପ ପାଇଁ ବିମାନ ନେଇ ଯାଇଥିବା ଏହି ବୈମାନିକ ନିଜର କାମକୁ ଏକ ଜାତୀୟ କର୍ତ୍ତବ୍ୟ ଓ ଦେଶପ୍ରେମଭିତ୍ତିକ ମାମଲା ବୋଲି ସ୍ପଷ୍ଟ କରିବା ସହିତ ଏଥିପାଇଁ ସେ ଆଦୌ ଅନୁତପ୍ତ ନୁହଁନ୍ତି ବୋଲି କହିଥିଲେ । ଅନ୍ୟପକ୍ଷରେ, ବୋମା ନିକ୍ଷେପ କରିଥିବା ମେଜର ଏଥାଲି ଯେତେବେଳେ ନିଜ କାମର ପରିଣାମ ସଂପର୍କରେ ସଚେତନ ହେଲେ, ସେତେବେଳେ ସେ ଦୁଃଖରେ ପାଗଳ ହୋଇଗଲେ । କିଛି ବର୍ଷ ପରେ ନୂତନ ହିରୋଶିମାର ଅଧିବାସୀମାନେ ତାଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲେ ତା'ର କିୟଦଂଶ ଆଜି ସ୍ମରଣୀୟ । 'ଆମେ ମନେକରୁ, ହତାହତଙ୍କ ଭଳି ଆପଣ ମଧ୍ୟ ଯୁଦ୍ଧର ହିଁ ଶିକାର: ମାତ୍ର ଆମେ ପ୍ରାର୍ଥନା କରୁ ଆପଣ ଶୀଘ୍ର ଆରୋଗ୍ୟ ଲାଭ କରନ୍ତୁ । ଆମର ଆଶା ଏଭଳି ଏକ ଦିନ ଆସିବ ଯେତେବେଳେ ଆପଣ ମୈତ୍ରୀ ଅଭିଯାନରେ ଅଗ୍ରସର ହୋଇ ମଣିଷର ଅପରାଧ କ୍ଷମା କରି ଶାନ୍ତି, ମୈତ୍ରୀ ଓ ପ୍ରେମମୟ ସୃଷ୍ଟି ଦିଗରେ ସହାୟକ ହେବେ । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ ।' ('ହିରୋଶିମା: ଏକ ମାନସିକ ଅବସ୍ଥା'–ମନୋଜ ଦାସ–'ସମାଜ'– ତା. ୧୧–୦୮–୧୯୬୮)

ହିରୋଶିମା ଘଟଣା ପରେ ପରମାଣୁ ବିରୋଧୀ ଆନ୍ଦୋଳନ, ନିରସ୍ତ୍ରୀକରଣ ଚୁକ୍ତି, ପଞ୍ଚଶୀଳ, ଗୋଷ୍ଠୀ ନିରପେକ୍ଷ ପରି ବିଭିନ୍ନ ଶାନ୍ତି ରାଜନୀତି ଆରମ୍ଭ ହୋଇ ଏବେ ମଧ୍ୟ ଅବ୍ୟାହତ ରହିଛି । କିନ୍ତୁ ହିରୋଶିମା ମାନବଜାତିର ମାନସିକତାରେ ଏକ କରୁଣ ସ୍ମାରକ ହୋଇ ରହିଛି । ହିରୋଶିମା ଏକ ସ୍ମରଣୀୟ ଦୀର୍ଘଶ୍ୱାସ, ଏକ ପରାଜିତ ବିଜୟ । ଆଜିର ସମୃଦ୍ଧି ଓ ଦ୍ରୁତ ବିକାଶର ଜୟଯାତ୍ରାରେ ପ୍ରତିଯୋଗୀ ମଣିଷମାନଙ୍କ ପାଇଁ ହିରୋଶିମା ଏକ ସଚେତନ ସତର୍କତା ।

'ପ୍ରାର୍ଥନା', ୮୯୫/୮୯୬
ସତ୍ୟନଗର, ଭୁବନେଶ୍ୱର–୭



# ତୁ ନାଥ ପରମ ଦୟାଳୁ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଭାଗବତରେ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଏହା କୁହାଯାଇଛି । ଶ୍ରୀକୃଷ୍ଣ ଦୟାଳୁ, କୃପାଳୁ ଓ ଆରତନାଶନ ଆଦି ଗୁଣାବଳୀରେ ଭୂଷିତ । ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି ମହାପ୍ରଭୁ ଶ୍ରୀକୃଷ୍ଣଙ୍କ ଜନ୍ମ ଦିବସ ରୂପେ ସାରା ଭାରତରେ ପାଳନ କରାଯାଏ । ଶ୍ରୀକୃଷ୍ଣ ଦୁଷ୍ଟମାନଙ୍କର ସଂହାର ଓ ସନ୍ଥମାନଙ୍କର ପାଳନ ପାଇଁ ମାନବ ଅବତାରରେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ । ଏହା ଭାଗବତରେ ତଥା ଭାଗବତ୍ ଗୀତାରେ ଚତୁର୍ଥ ଅଧ୍ୟାୟ ଅଷ୍ଟମ ଶ୍ଳୋକରେ ସ୍ପଷ୍ଟ ରୂପେ ଉଲ୍ଲେଖ ହୋଇଛି ।

ଶ୍ରୀକୃଷ୍ଣ ବାଳୁତ ଅବସ୍ଥାରେ ପୁତନା ରାକ୍ଷସୀଙ୍କୁ ବଧ କଲେ । ତା'ପରେ ଶକଟାସୁର, ତୃଣାବର୍ତ୍ତ, ଅଘାସୁର, ଧେନୁକାସୁର, ପ୍ରଳମ୍ବାସୁର, ଷଣ୍ଢାସୁର, ଶଙ୍ଖଚୂଡ଼ ଓ କେଶୀ–ବ୍ୟୋମାସୁର ଆଦି ଅସୁରମାନଙ୍କୁ ବଧ କରି ଗୋପପୁରକୁ ସେମାନଙ୍କ ଆକ୍ରମଣରୁ ରକ୍ଷା କଲେ । ଗୋପରେ ଇନ୍ଦ୍ର ପୂଜା ବନ୍ଦ କରିବାରୁ ଇନ୍ଦ୍ର କୁପିତ ହୋଇ ସାତ ଦିନ ବର୍ଷାକଲେ । ଶ୍ରୀକୃଷ୍ଣ ଗୋବର୍ଦ୍ଧନ ପର୍ବତକୁ ଟେକି ଗୋପୀ–ଗୋପାଳଙ୍କୁ ରକ୍ଷାକଲେ । ମଥୁରା ଯାଇ ଚାଣୁର ମୁଷ୍ଟିକ ଓ କଂସକୁ ବଧ କରି ଉଗ୍ରେସନଙ୍କୁ ରାଜା କଲେ ।

**ଜରାସନ୍ଧ :** ଜରାସନ୍ଧ ମଗଧର ବିଖ୍ୟାତ ରାଜା । ଏହାଙ୍କ ପିତାଙ୍କ ନାମ ବୃହଦ୍ରଥ । ରାଜା ବୃହଦ୍ରଥ ପୁତ୍ର ପ୍ରାପ୍ତି ଆଶାରେ ଚଣ୍ଡକୈଶିକଙ୍କର ଆରାଧନା କଲେ । ଚଣ୍ଡକୈଶିକ ତାଙ୍କ ଉପରେ ତୃପ୍ତ ହୋଇ ତାଙ୍କୁ ଗୋଟିଏ ଫଳ ଦେଲେ ଏବଂ କହିଲେ ଏ ଫଳଟିକୁ ରାଣୀଙ୍କୁ ଖାଇବାକୁ ଦେଲେ ଗୋଟିଏ ପୁତ୍ର ଲାଭ ହେବ । ବୃହଦ୍ରଥଙ୍କର ଦୁଇଟି ରାଣୀଥିଲେ । ସେ ଦେବଦତ୍ତ ଫଳଟିକୁ ଦୁଇ ଭାଗକରି ଖାଇବାକୁ ଦେଲେ । ଉଭୟ ରାଣୀ ଅଧେ ଅଧେ ପୁଅ ପ୍ରସବ କଲେ । ରାଜା ଏ ଅସ୍ୱାଭାବିକ ସନ୍ତାନ ଦେଖି ସେ ଦୁଇଖଣ୍ଡ ଯାକ ଶ୍ମଶାନରେ ଫିଙ୍ଗି ଦେବାକୁ ଆଦେଶ ଦେଲେ । ଏହି ଶ୍ମଶାନରେ ଜରା ନାମ୍ନୀ ଏକ ରାକ୍ଷସୀ ବାସ କରିଥିଲା । ସେ ଏହି ଦୁଇ ଅର୍ଦ୍ଧଶରୀର ଶିଶୁକୁ ଯୋଡ଼ି ଗୋଟିଏ ପୂର୍ଣ୍ଣାବୟବ ବିଶିଷ୍ଟ ପୁତ୍ର ପ୍ରସ୍ତୁତ କରି ତାକୁ ଜୀବଦାନ କରିଥିଲା । ସେହି ଦିନଠାରୁ ଏହି ଶିଶୁର ନାମ ହେଲା ଜରାସନ୍ଧ । ରାକ୍ଷସୀ ରାଜା ବୃହଦ୍ରଥଙ୍କୁ ଏହି ଶିଶୁ ଅର୍ପଣ କରି କହିଲା– 'ମହାରାଜ, ଏ ଶିଶୁ ଏକ ପ୍ରବଳ ପରାକ୍ରମଶାଳୀ ରାଜା ହେବ । ଏହାର ସନ୍ଧିସ୍ଥଳ ଭିନ୍ନ ନ ହେଲେ ଏ ମରିବ ନାହିଁ ।' ବ୍ରହ୍ମା ଏହି ରାକ୍ଷସୀର ନାମ ଗୃହଦେବୀ ଦେଇଥିଲେ । ଏହି ଜରା ଷଷ୍ଠୀଦେବୀ ନାମରେ ପରିଚିତ । ଏହି ଗୃହଦେବୀ ମୂର୍ତ୍ତି ଘରେ ରଖିଲେ ଘର ଧନଧାନ୍ୟ ପୂର୍ଣ୍ଣ ହୁଏ । ଏହି ଜରାସନ୍ଧର ଦୁଇଟି କନ୍ୟା ଅସ୍ତି ଓ ପ୍ରାପ୍ତି । କେହି କେହି ଏ ଦୁହିଁଙ୍କୁ ହେତି ଓ ପ୍ରହେତି ବୋଲି କହନ୍ତି । ମଥୁରାଧିପତି କଂସ ଏହି ଦୁଇ କନ୍ୟାଙ୍କୁ ବିବାହ ହୋଇଥିଲେ । ଶ୍ୱଶୁରଙ୍କ ସାହାଯ୍ୟରେ କଂସ ପିତା ଉଗ୍ରେସନଙ୍କୁ ସିଂହାସନଚ୍ୟୁତ କରି ମଥୁରା ସିଂହାସନ ଅଧିକାର କରିଥିଲେ । କଂସନିସୂଦନ ପରେ ଜରାସନ୍ଧ କ୍ରୁଦ୍ଧ ହୋଇ ମଥୁରା ଆକ୍ରମଣ କରିବାରୁ ଏବଂ କାଳଯବନଙ୍କୁ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଉତ୍ତେଜିତ କରିବାରୁ ଶ୍ରୀକୃଷ୍ଣ ଦେଖିଲେ ଯେ ମଥୁରା ଆକ୍ରମଣ ଯୋଗୁଁ ଯଦୁବଂଶ ପକ୍ଷରେ ଆତ୍ମରକ୍ଷା କରିବା ଦୁଷ୍କର ହେବ । ସେ ସେମାନଙ୍କୁ ମଥୁରା ତ୍ୟାଗ କରିବା ପାଇଁ ପରାମର୍ଶ ଦେଇ ପଶ୍ଚିମ ସମୁଦ୍ର ତୀରବର୍ତ୍ତୀ

ଦ୍ୱାରାବତୀ (ଦ୍ୱାରକା) ନଗରୀରେ ରହିବା ଲାଗି ନିର୍ଦ୍ଦେଶ ଦେଲେ । ଯାଦବମାନେ ଦ୍ୱାରାବତୀରେ ପ୍ରତିଷ୍ଠିତ ହେବା ପରେ ଶ୍ରୀକୃଷ୍ଣ ମଥୁରାକୁ ଆସି କୌଶଳରେ କାଳଯବନଙ୍କୁ ନିହତ କରିଥିଲେ ।

**ଭଗବାନ ଶ୍ରୀକୃଷ୍ଣଙ୍କର ଗଧପାଦ ଧାରଣ:** ଯୁଧିଷ୍ଠିର ରାଜସୂୟ ଯଜ୍ଞ ଆରମ୍ଭ କଲେ । ଜରାସନ୍ଧକୁ ପରାସ୍ତ ନକଲେ ଯଜ୍ଞ ସଂପନ୍ନ ହୋଇପାରିବ ନାହିଁ, ତେଣୁ ସେ ଶ୍ରୀକୃଷ୍ଣଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ଭୀମ-ଅର୍ଜୁନଙ୍କୁ କହିଲେ ରାଜା ଜରାସନ୍ଧ ଜଣେ ବଡ଼ ଯୋଦ୍ଧା ଓ ତାକୁ ମାରିବା ଅତି ସହଜ ନୁହେଁ । କାରଣ ଜରାସନ୍ଧ ରାଜପ୍ରାସାଦରେ ତିନୋଟି ବସ୍ତୁ ରଖିଥିଲା, ଯାହା ମାଧ୍ୟମରେ ଶତ୍ରୁମାନେ ରାଜ୍ୟରେ ପ୍ରବେଶ କରିପାରୁନଥିଲେ । ରାଜ୍ୟରେ ଶତ୍ରୁ ପ୍ରବେଶ କରିବା କଥା ସେ ତିନୋଟି ମାଧ୍ୟମରେ ଜାଣି ସଜାଗ ରହୁଥିଲା । ସେହି ତିନୋଟି ବସ୍ତୁ ଶିମିଳି ଗଛ, ଶଙ୍ଖ ଏବଂ ଗଧ । ଗଧଟି ପ୍ରକୃତରେ ଥିଲା ଗନ୍ଧର୍ବ । କୌଣସି କୁକର୍ମରୁ ଇନ୍ଦ୍ରଙ୍କ ଅଭିଶାପରେ ସେ ଗଧ ରୂପେ ଜନ୍ମ ଗ୍ରହଣ କରିଥିଲା । ଭଗବାନଙ୍କର ଆଶୀର୍ବାଦରୁ ସେ ପୁଣି ଗନ୍ଧର୍ବ ହୋଇ ଇନ୍ଦ୍ରଲୋକକୁ ଯାଇପାରିବ ବୋଲି ତାହାର ଅଭିଶାପ ଥିଲା । ତେଣୁ ସେ ଭଗବାନଙ୍କ ଦର୍ଶନ ଲାଗି ପୁଣି ଗନ୍ଧର୍ବ ହୋଇଯିବା ଅପେକ୍ଷାରେ ମଗଧ ରାଜ୍ୟରେ କାଳାତିପାତ କରୁଥିଲା । କୌଣସି ବାହ୍ୟ ଶତ୍ରୁ ରାଜ୍ୟକୁ ଆକ୍ରମଣ କରିବାକୁ ଆସିଲେଣି ବୋଲି ଜରାସନ୍ଧ ଜାଣିପାରିଥାଏ । ଶିମିଳିଗଛ ସଦା ସର୍ବଦା ପତ୍ର ପୁଷ୍ପ ବିହୀନ ଥିବ, କିନ୍ତୁ ବାହ୍ୟ ଶତ୍ରୁର ଆଭାସ ପାଇଲେ ସେଥିରେ ପତ୍ର ପୁଷ୍ପ ଆପେ ଆପେ କଅଁଳି ଉଠିବ । ସେହିପରି ଶଙ୍ଖ ମଧ୍ୟ ଅଦ୍ଭୁତ ଥିଲା । ବାହ୍ୟ ଶତ୍ରୁ ଆସିଲେ ସେ ଛାଏଁ ବାଜି ଉଠିବ । ତେଣୁ ଏହି ତିନୋଟି ବସ୍ତୁ ମାଧ୍ୟମରେ ଜରାସନ୍ଧ ନିଜ ସୈନ୍ୟମାନଙ୍କୁ ସଜାଗ କରିବା ସହ ନିଜେ ମଧ୍ୟ ସଚେତନ ହୋଇ ରହୁଥିଲା ।

ଜରାସନ୍ଧକୁ ବଧ କରିବା ପାଇଁ ଶ୍ରୀକୃଷ୍ଣ ସାଙ୍ଗରେ ଭୀମ ଅର୍ଜୁନଙ୍କୁ ନେଇ ମଗଧରେ ପ୍ରବେଶ କଲେ । ତିନୋଟି ବସ୍ତୁର ମାହାତ୍ମ୍ୟ ଭୀମ ଓ ଅର୍ଜୁନଙ୍କୁ ବୁଝାଇଦେଲେ । ସେ ଭୀମଙ୍କୁ କହିଲେ-ଯେତେବେଳେ ଶିମିଳି ଗଛରେ ପତ୍ର ପୁଷ୍ପ କଅଁଳି ଉଠିବ ତୁମେ ସଂଗେ ସଂଗେ ଗଛଟିର ମୂଳ ଉପାଡ଼ି ଦେବ । ଫଳରେ ଆଉ କେହି ଜାଣିପାରିବେ ନାହିଁ । ଅର୍ଜୁନଙ୍କୁ କହିଲେ ଶଙ୍ଖଟି ବାଜି ଉଠିବା ମାତ୍ରେ ତୁମେ ଏପରି ଏକ ଶର ମାରିବ ଯେ, ତାହା ଦୁଇ ଫାଳ ହୋଇଯିବ । ତେଣୁ ଆଉ ବାଜିବ ନାହିଁ । ହେଲେ ଭୀମ ଶ୍ରୀକୃଷ୍ଣଙ୍କୁ ପଚାରିଲେ ଏବେ ଗଧକୁ କଅଣ କରିବା ? ସେ କହିଲେ ଗଧ କଥା ମୋତେ ଛାଡ଼ିଦିଅ । ସେଇଆ ହିଁ ହେଲା । ନା ଶିମିଳିଗଛ ପତ୍ରପୁଷ୍ପ ଧରିପାରିଲା ନା ଶଙ୍ଖ ବାଜି ଉଠିଲା । ଫଳରେ ମଗଧର ସୈନ୍ୟମାନେ ଶତ୍ରୁର ଖବର ପାଇପାରିଲେ ନାହିଁ । ଗଧଟି ଯେତେବେଳେ ରଡ଼ି ଛାଡ଼ିବାକୁ ଆରମ୍ଭ କଲା, ଶ୍ରୀକୃଷ୍ଣ କେବଳ ହାତଟି ଦେଖାଇଦେଇ ଚୁପ୍ କରାଇ ଦେଲେ । ହାତଟିକୁ ଦେଖି ଗନ୍ଧର୍ବରୂପୀ ଗଧ ଜାଣିପାରିଲା ଇଏ ସେଇ ଭଗବାନ ଶ୍ରୀକୃଷ୍ଣ, ଯାହାଙ୍କ ଅପେକ୍ଷାରେ ମୁଁ ଆଜିଯାଏ ଏଠାରେ ଗଧ ରୂପରେ ଥିଲି । ମୁଁ ଏଥର ନିଶ୍ଚୟ ମୁକ୍ତି ପାଇଯିବି । ଗନ୍ଧର୍ବ ତାହାର ପୂର୍ବ ଜନ୍ମର ସବୁକଥା ଗୋଟି ଗୋଟି କରି ଶ୍ରୀକୃଷ୍ଣଙ୍କୁ କହିଲା । ଶ୍ରୀକୃଷ୍ଣ କହିଲେ ତୁମେ ଆଉ ରଡ଼ି ଛାଡ଼ନାହିଁ । ଏଥିରେ ଗଧ ଉତ୍ତର ଦେଲା, ମୁଁ ଯଦି ରଡ଼ି ନ ଛାଡ଼ିବି ତେବେ ଜରାସନ୍ଧର ସୈନ୍ୟମାନେ ମୋତେ ମାରିଦେବେ । ଫଳରେ ମୁଁ ଆଉ ଇନ୍ଦ୍ରଲୋକକୁ ଯାଇପାରିବି ନାହିଁ । ହେଲେ ପ୍ରଭୁ, ମୁଁ ଅଭିଶାପ ପାଇଛି ଆପଣ ଯଦି ମୋର ପାଦ ସ୍ପର୍ଶ କରିଦେବେ, ତେବେ ମୁଁ ଶାପରୁ ମୁକ୍ତ ହେବି । ମୋର ଅନୁରୋଧ ରକ୍ଷା କରି ମୋର ପାଦ ଛୁଇଁ ଦିଅନ୍ତୁ ପ୍ରଭୁ । ଶ୍ରୀକୃଷ୍ଣ କହିଲେ ତେବେ ଠିକ୍ ଅଛି, ସଂସାରରେ ମଙ୍ଗଳ ପାଇଁ ଯଦି ମୁଁ ଗୋଟିଏ ସାମାନ୍ୟ ଗଧର ପାଦ ଧରି ପକାଇବି, ଏଥିରେ ଅସୁବିଧା କଅଣ । ସଂଗେ ସଂଗେ ଭଗବାନ ଗଧପାଦକୁ ଛୁଇଁ ଦେବାରୁ ଗଧ ତାହାର ପୂର୍ବ ଜନ୍ମ ଗନ୍ଧର୍ବ ରୂପେ ଫେରି ପାଇଲା ଏବଂ ପ୍ରଭୁଙ୍କର ଆଶୀର୍ବାଦ ନେଇ ଇନ୍ଦ୍ରଲୋକ ଗମନ କଲା ।

ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନଙ୍କ ସହିତ ମଗଧ ଆଡ଼କୁ ଅଗ୍ରସର ହେଲେ । ଏମାନେ ସ୍ନାତକ ବ୍ରାହ୍ମଣ ରୂପେ ମଗଧ ରାଜଧାନୀ ଗିରିବ୍ରଜରେ ପ୍ରବେଶ କଲେ । କ୍ରମେ ଏମାନେ ଜରାସନ୍ଧଙ୍କ ରାଜଭବନ ମଧ୍ୟକୁ ଗଲେ । ଏମାନଙ୍କୁ ବ୍ରହ୍ମଚାରୀ ଦେଖି କେହି ବାଧା ଦେଲେନାହିଁ । ଠିକ୍ ଅର୍ଦ୍ଧ ରାତ୍ରି ସମୟରେ ଜରାସନ୍ଧ ଏମାନଙ୍କୁ ଅଭ୍ୟର୍ଥନା କଲେ । ଏମାନେ

ଆତ୍ମପରିଚୟ ଦେଇସାରି ଜରାସନ୍ଧଙ୍କୁ ଯୁଦ୍ଧାର୍ଥେ ଆହ୍ୱାନ କଲେ । ଶ୍ରୀକୃଷ୍ଣଙ୍କ ସଙ୍କେତ ଅନୁସାରେ ଭୀମଙ୍କ ସହିତ ଜରାସନ୍ଧଙ୍କର ମଲ୍ଲଯୁଦ୍ଧ ହେଲା । ଭୀମ ମଲ୍ଲଯୁଦ୍ଧରେ ଜରାସନ୍ଧଙ୍କୁ ତଳେ ପକାଇ ଦୁଇଖଣ୍ଡ କରି ଚିରି ଦେବାରୁ ସେ ପ୍ରାଣତ୍ୟାଗ କଲା ।

ପାଣ୍ଡବ କୁଳେ ମୋର ଜନ୍ମ ।
ମୋହର ବନ୍ଧୁ ଭଗବାନ ।।
ଦ୍ରୋଣ କୁମର ବାଣ ତ୍ରାସେ ।
ମରିବି କହିଗଲେ ବ୍ୟାସେ ।।
ତା'ଶୁଣି ଜନନୀ ମୋହର ।
ଶରଣ ଗଲା ଚକ୍ରଧର ।।
ଗର୍ଭେ ପଡ଼ିଲା ଆସି ବାଣ ।
ମୋତେ ରଖିଲେ ନାରାୟଣ ।।
ତେଣୁ କୃଷ୍ଣର ମୋ ଶରୀର ।
କିଣିଲା ସେବକ ମୁଁ ତାର ।।
(ଭାଗବତ–ଦଶମ ସ୍କନ୍ଧ–ଗୋପଲୀଳା)

ବୀର ଅଭିମନ୍ୟୁଙ୍କ ପୁତ୍ର ରାଜା ପରୀକ୍ଷିତ ବ୍ୟାସଦେବଙ୍କ ପୁତ୍ର ଶୁକମୁନିଙ୍କଠାରୁ ଶ୍ରୀମଦ୍ ଭାଗବତ ଶୁଣିବା ଅବସରରେ ନିଜର ଏହି ଜନ୍ମ ବୃତ୍ତାନ୍ତ ଭାଗବତର ଦଶମ ସ୍କନ୍ଧ ପ୍ରଥମ ଅଧ୍ୟାୟରେ କହିଛନ୍ତି । ଦୁର୍ଯ୍ୟୋଧନ ଜାନୁଭଗ୍ନ ହୋଇ ମୃତପ୍ରାୟ ପଡ଼ିଥିବା ସମୟରେ ପାଣ୍ଡବମାନେ ଭ୍ରମିତ ହୋଇ ମୃତ ଭାବି ଛାଡ଼ି ଚାଲିଗଲେ । କିନ୍ତୁ ସେ ପ୍ରାଣାୟାମ କୁମ୍ଭକ ବା ନିଃଶ୍ୱାସ ରୋଧକ୍ରିୟା ଅଭ୍ୟାସ କରିଥିବାରୁ ସେପରି ପଡ଼ିଥିଲେ । ପାଣ୍ଡବମାନେ ତାଙ୍କୁ ଛାଡ଼ିଦେଇ ପବିତ୍ର ଗୋମତୀ ନଦୀ ତୀର୍ଥକୁ ନରହତ୍ୟାରୁ ମୁକ୍ତି ପାଇଁ ସ୍ନାନ କରିବାକୁ ଚାଲିଗଲେ । କୃପାଚାର୍ଯ୍ୟ ଓ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଦୁର୍ଯ୍ୟୋଧନ ପାଖରେ ପହଞ୍ଚିଲେ । ଅଶ୍ୱତ୍ଥାମା ପାଣ୍ଡବମାନଙ୍କୁ ବିନାଶ କରିବ ବୋଲି ଦୁର୍ଯ୍ୟୋଧନ ଆଗରେ ଶପଥ କରି ସେହି ରାତିରେ ପାଣ୍ଡବ ଶିବିରରେ ପ୍ରବେଶ କଲା । ଅଶ୍ୱତ୍ଥାମା ସେଠାରେ ଶୋଇଥିବା ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କୁ ପାଣ୍ଡବ ଭାବି ହତ୍ୟା କଲା । ପାଣ୍ଡବମାନେ ଫେରି ଅଶ୍ୱତ୍ଥାମା ଦୌପଦୀଙ୍କ ପୁତ୍ରମାନଙ୍କୁ ହତ୍ୟା କରିଥିବା ଜାଣିଲେ । ଅର୍ଜୁନ ଅଶ୍ୱତ୍ଥାମାଙ୍କୁ ହତ୍ୟା କରିବାକୁ ଶପଥ କରିବା ସମୟରେ ଅଶ୍ୱତ୍ଥାମା ଅମରତ୍ୱ ବର ଲାଭ କରିଥିବାରୁ ତାହାର ମୃତ୍ୟୁ ନାହିଁ ବୋଲି ଶ୍ରୀକୃଷ୍ଣ କହିଲେ । ପାଣ୍ଡବମାନେ ଅଶ୍ୱତ୍ଥାମାଙ୍କୁ ଖୋଜି ବ୍ୟାସଦେବଙ୍କ ଆଶ୍ରମ ଯଜ୍ଞଶାଳାରେ ପାଇଲେ । ଅଶ୍ୱତ୍ଥାମା ଅର୍ଜୁନଙ୍କୁ ମାରିବାକୁ ପିତାଙ୍କଠାରୁ ପ୍ରାପ୍ତ ଲୋକକଲ୍ୟାଣ ପାଇଁ ଉଦ୍ଦିଷ୍ଟ ବ୍ରହ୍ମଶ୍ରୀ ଅସ୍ତ୍ରର ଅନୁଚିତ ପ୍ରୟୋଗ କଲେ । ଏହା ଦେଖି ତାହାର ପ୍ରତିହତ ପାଇଁ ଅର୍ଜୁନ ମଧ୍ୟ ବ୍ରହ୍ମଶ୍ରୀ ଅସ୍ତ୍ର ପ୍ରୟୋଗ କଲେ । ଦୁଇ ଅସ୍ତ୍ର ପରସ୍ପରମୁଖୀ ହେଲେ ସୃଷ୍ଟି ବିନାଶ ହେବ ଜାଣି ବ୍ୟାସଦେବ ଆକାଶରେ ଦୁଇପଟେ ଏକ ଏକ ହସ୍ତରେ ତାହାକୁ ଗତିରୋଧ କରି ଅଶ୍ୱତ୍ଥମା ଓ ଅର୍ଜୁନଙ୍କୁ ଅସ୍ତ୍ର ଫେରାଇବାକୁ ଆଦେଶ ଦେଲେ । ଅର୍ଜୁନ ଅସ୍ତ୍ର ଲେଉଟାଇଲେ । କିନ୍ତୁ ଅଶ୍ୱତ୍ଥାମା ଲେଉଟାଇବା ବିଦ୍ୟା ଜାଣି ନଥିଲେ । ତେଣୁ ସେ ତାହାର ଦିଗ ପରିବର୍ତ୍ତନ କରି ପାଣ୍ଡବ ବଂଶ ନାଶ ପାଇଁ ତାହାକୁ ଅଭିମନ୍ୟୁଙ୍କ ପତ୍ନୀ ଉତ୍ତରାର ଗର୍ଭନଷ୍ଟ ନିମନ୍ତେ ପ୍ରୟୋଗ କଲେ । ବ୍ୟାସଦେବ ଅଶ୍ୱତ୍ଥାମା ବାଣରେ ପୁତ୍ରର ମୃତ୍ୟୁଯୋଗ ଅଛି ବୋଲି ଆଗରୁ ଉତ୍ତରାଙ୍କୁ କହିଥିଲେ । ତେଣୁ ଉତ୍ତରା ନାରାୟଣଙ୍କ ଶରଣ ନେଇଥିଲେ । ଏହି ଅସ୍ତ୍ର ପଡ଼ିବା ଦେଖି ଉତ୍ତରା ନାରାୟଣଙ୍କୁ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ର ଦ୍ୱାରା ସେହି ଅସ୍ତ୍ରର ପ୍ରତିରୋଧ କଲେ । ଶ୍ରୀକୃଷ୍ଣଙ୍କ ଅନୁରୋଧରେ ଅନୁଚିତ ପ୍ରୟୋଗ ହୋଇଥିବା ନିଜ ଅସ୍ତ୍ରକୁ ବ୍ରହ୍ମା ଫେରାଇନେଲେ । ଏହାହିଁ ଉପରୋକ୍ତ ଭାଗବତ ପଦାବଳୀର ମୂଳ ରହସ୍ୟ । ଭଗବାନ ଶ୍ରୀକୃଷ୍ଣ ଏହିପରି ମହାମହା ବିପଦରୁ ଭକ୍ତମାନଙ୍କୁ ରକ୍ଷା କରିବାର ବହୁ ଦୃଷ୍ଟାନ୍ତ ଭାଗବତରେ ରହିଛି । ଶ୍ରୀକୃଷ୍ଣ ପରମ କୃପାଳୁ । ଆଜି ମଧ୍ୟ ଯେ ତାଙ୍କୁ ଭକ୍ତି କରେ ଓ ବିପଦରେ ଶରଣ ପଶେ, ସେ ତାକୁ ରକ୍ଷା କରନ୍ତି । କେବଳ ବିଶ୍ୱାସ ଟିକକ ମନରେ ରହିବା ଦରକାର ।

ଏ.ଏଲ୍–୫୩, ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର

# ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି

ଡକ୍ଟର ନିର୍ମଳା କୁମାରୀ ମହାପାତ୍ର

ଭୁବନେଶ୍ୱରର ଆଚାର୍ଯ୍ୟବିହାର ଛକର ଅନତିଦୂରରେ ଦେଖିବାକୁ ମିଳେ ପଠାଣି ସାମନ୍ତ ପ୍ଲାନେଟାରିୟମ୍ । ଏହା ଏକ ଗମ୍ବୁଜ ଆକୃତିର ଗ୍ରହ ନକ୍ଷତ୍ର ନିରୀକ୍ଷଣ ଭବନ । ସହଜବୋଧ ପାଇଁ ଏହାକୁ ତାରାଘର କୁହାଯାଇପାରେ । ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ (ସଂକ୍ଷେପରେ ପଠାଣିସାମନ୍ତ) ଥିଲେ ମହାନ୍ ଜ୍ୟୋତିଷାଚାର୍ଯ୍ୟ । ଜଣେ ପ୍ରଖ୍ୟାତ ଆକାଶବିଜ୍ଞାନୀ । ତାଙ୍କର ଅମ୍ଳାନ କୀର୍ତ୍ତି ହେଲା ୩୫୦ ପୃଷ୍ଠା ସଂବଳିତ ସଂସ୍କୃତଗ୍ରନ୍ଥ– 'ସିଦ୍ଧାନ୍ତ ଦର୍ପଣ' । ଦରବାର କାବ୍ୟରେ କବିବର ରାଧାନାଥ ରାୟ ଲେଖିଥିଲେ– 'ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ । ନର ଦେହେ ଥିବ ଯାବତ ହୃଦୟ' । ଏହି ମହାମୂଲ୍ୟ ଗ୍ରନ୍ଥରେ ୫୬ ପୃଷ୍ଠାର ଇଂରାଜୀ ଉପକ୍ରମଣିକା ଲେଖିଛନ୍ତି ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ । ସେ ଜ୍ୟୋତିର୍ବିତ୍ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କୁ ବହୁ ମାନ୍ୟ କରୁଥିଲେ । ରେଭେନ୍ସା କଲେଜ, କଟକ (ବର୍ତ୍ତମାନ ଏହା ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ) ର ମୁଖପତ୍ର Revenshawvian, ୧୯୩୮ରେ ସେ 'Remeniscences of Chandrasekhar' ଶୀର୍ଷକ ପ୍ରବନ୍ଧରେ ବିସ୍ତୃତ ବର୍ଣ୍ଣନା କରିଛନ୍ତି । କିପରି ସେ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ପ୍ରତିଭାର ପରିଚୟ ପାଇଥିଲେ, ତାହାର ବିବରଣୀ ସେଥିରେ ରହିଛି । ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ଆତ୍ମଚରିତ (ବଙ୍ଗଳା ଭାଷାରେ) ରୁ ଜଣାଯାଏ ଯେ ସେ ପଠାଣି ସାମନ୍ତଙ୍କୁ ପରିଚିତ ଓ ସମ୍ମାନିତ କରିବାପାଇଁ ବହୁବିଧ ପ୍ରଚେଷ୍ଟା କରିଥିଲେ । ସେ ଇଣ୍ଡିଆନ ନେସନ୍, ସାପ୍ତାହିକ ପତ୍ରିକା ଅଗଷ୍ଟ ୧୧, ୧୮, ୨୫ ଓ ସେପ୍ଟେମ୍ବର ୧, ୧୯୦୨ ମସିହାର ଚାରିଗୋଟି ସଂଖ୍ୟାରେ ସାମନ୍ତ ସ୍ମାରକୀ ସ୍ୱରୂପ ଏକ ପର୍ଯ୍ୟବେକ୍ଷଣିକାର ସ୍ଥାପନ ପାଇଁ ଦାବି ଉପସ୍ଥାପନ କରିଥିଲେ । ସେତେବେଳେ (୧୯୦୨) ବଙ୍ଗ–ବିହାର–ଓଡ଼ିଶା ସରକାର । ଯୋଗେଶଚନ୍ଦ୍ର ରାୟଙ୍କର ଦାବି ଯେ ନ୍ୟାୟସମ୍ମତ – ଏକଥା କିଏ ବା କେଉଁ ସରକାର ବିଚାର କରିନଥିଲେ । ତା' ଛଡା ପଠାଣି ସାମନ୍ତଙ୍କ ଜନ୍ମସ୍ଥାନ ଖଣ୍ଡପଡ଼ା ଥିଲା ଏକ ଦେଶୀୟ ଗଡଜାତ ରାଜ୍ୟ । ତାହା ସେକାଳରେ ସେତେ ବିକାଶ ଉନ୍ମୁଖୀ ହୋଇନଥିବା ଅନୁମାନ କରାଯାଏ । ସେଠାରେ ଜନ୍ମିତ ବିରାଟ ପ୍ରତିଭା ଓ ତାଙ୍କର ସାରସ୍ୱତ ସାଧନାର ଅନୁସନ୍ଧାନ କରିଥିଲେ ସୁଯୋଗ୍ୟ ଅଧ୍ୟାପକ ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ । ପ୍ରକାଶ ଥାଉକି, ପଦ୍ମଭୂଷଣ, ଡକ୍ଟର ପ୍ରାଣକୃଷ୍ଣ ପରିଜା (ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି), ଶ୍ୟାମଚନ୍ଦ୍ର ତ୍ରିପାଠୀ, I.E.S, ନାରାୟଣ ମିଶ୍ର, ନୀଳମଣି ସେନାପତି ICS (ପରବର୍ତ୍ତୀ କାଳରେ ଓଡ଼ିଶା ସରକାରଙ୍କର ମୁଖ୍ୟ ସଚିବ), ଶିକ୍ଷାବିତ୍ ଅଧିରାଜମୋହନ ସେନାପତି, ବିରାଜମୋହନ ସେନାପତି ଆଦି ଥିଲେ ଯୋଗେଶଚନ୍ଦ୍ରଙ୍କର ଛାତ୍ର । ଏତଦ୍‌ବ୍ୟତୀତ ମୟୂରଭଂଜର ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ ମଧ୍ୟ ଥିଲେ ତାଙ୍କର ଛାତ୍ର ।

ଯୋଗେଶଚନ୍ଦ୍ର ରାୟଙ୍କର ଜନ୍ମ (୧୮୫୯, ଅକ୍ଟୋବର, ୨୦– ମୃତ୍ୟୁ ୧୯୫୬) ପଶ୍ଚିମବଙ୍ଗର ଆରାମବାଗସ୍ଥିତ ଦିଘଡ଼ା ନାମକ ଏକ

ଅନୁନ୍ନତ ପଲ୍ଲୀଗ୍ରାମରେ । ତାଙ୍କର ମାତା ମଙ୍ଗଳା ଦେବୀ ଥିଲେ ଜଣେ ଧର୍ମପରାୟଣା ଗୃହିଣୀ । ପିତା ରାମତାରକ ରାୟ (ବି.ଏଲ୍) ଥିଲେ ଜଣେ ମୁନିସଫ୍ । ଯୋଗେଶଚନ୍ଦ୍ରଙ୍କ ପିଲାଦିନର ନାମ ଥିଲା ହାରାଧନ । ଏଇ ନାମରେ ବାପାଙ୍କ ଚାକିରି ଜାଗାରେ ଥିଲେ ଜଣେ ସୂପକାର ଓ ଜଣେ ଅର୍ଦ୍ଦଳି । ଆଉ କେତେଜଣ ମଧ୍ୟ ସେଇ ନାମରେ ଥିବାରୁ ଅଡୁଆ ପରିସ୍ଥିତି ସୃଷ୍ଟି ହେଉଥିଲା । ଏଣୁ ତାଙ୍କର ମୁନିସଫ୍ ପିତା ପୁଅର ନାମ ବଦଳାଇଥିଲେ । ସ୍କୁଲ ରେଜିଷ୍ଟରରେ ନାମ ଦରଜ ହୋଇଥିଲା: ଯୋଗେଶଚନ୍ଦ୍ର ରାୟ । ସେ ଏଗାରବର୍ଷ ବୟସରେ ପିତୃହରା ହୋଇ ବହୁ ବାଧାବିଘ୍ନ ଭିତରେ ଅଧ୍ୟୟନ ଜାରି ରଖି ଉଦ୍ଭିଦ ବିଜ୍ଞାନରେ ଏମ୍.ଏ.ଡିଗ୍ରୀ ୧୮୯୨ ରେ ହାସଲ କରିଥିଲେ । ସେ କାଳରେ ଏମ୍.ଏ., ଏମ୍.ଏସ୍‌ସି – ଏପରି କଳା ଓ ବିଜ୍ଞାନ ବିଭାଗକୁ ଅଲଗା ଅଲଗା କରି ପାଠପଢ଼ା ଯାଉନଥିଲା କି ଡିଗ୍ରୀ ବି ଦିଆଯାଉ ନଥିଲା । ଯୋଗେଶଚନ୍ଦ୍ର ବି.ଏ.ଶ୍ରେଣୀରେ ପଢ଼ିଥିଲେ ଇଂରାଜୀ ସାହିତ୍ୟ, ଗଣିତ, ରସାୟନ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ଓ ପ୍ରାକୃତିକ ଭୂଗୋଳ । ଉଦ୍ଭିଦ ବିଜ୍ଞାନରେ ସମ୍ମାନ ସେ ଲାଭ କରିଥିଲେ । ଏମ୍.ଏ.ରେ ସେ ପଢ଼ିଲେ କେବଳ ଉଦ୍ଭିଦ ବିଜ୍ଞାନ । ଏମ୍.ଏ.ଡିଗ୍ରୀ ଲାଭକରି ସେ କଲିକତାର ଭଦ୍ରେଶ୍ୱର ହାଇସ୍କୁଲରେ ଦୁଇ ମାସ ପାଇଁ ପ୍ରଧାନଶିକ୍ଷକ ହୋଇଥିଲେ । ତା'ପରେ ଟ.୧୦୦/– (ଶହେ ଟଙ୍କା ମାତ୍ର) ମାସିକ ଦରମାରେ ଏପ୍ରିଲ ୧୦, ୧୮୮୩ ମସିହାରେ କଟକ, ରେଭେନ୍‌ସା କଲେଜର ଭୌତିକ ବିଜ୍ଞାନ ଅଧ୍ୟାପକ ରୂପେ ଯୋଗ ଦେଲେ । ସେକାଳରେ କଲିକତାରୁ କଟକ ଆସିବା ଥିଲା ଦୁରୁହ ବ୍ୟାପାର । କଲିକତାରୁ ଜାହାଜରେ ଚାନ୍ଦବାଲି ବନ୍ଦର (ଏବେ ଭଦ୍ରକ ଜିଲାରେ), ସେଠାରୁ ଷ୍ଟିମର ଯୋଗେ ଭିନ୍ନ ଭିନ୍ନ ନଦୀ–ନାଳ ଦେଇ ସେ କଟକରେ ପହଂଚିଥିଲେ । ସେଥିପାଇଁ ତିନିଦିନରେ ଦୁଇରାତି ତାଙ୍କୁ ଜଳଯାତ୍ରା କରିବାକୁ ପଡିଥିଲା ।

ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟଙ୍କର ଚାକିରି ଜୀବନ ୧୮୮୩–୧୯୧୯ ଯାଏ । ମୋଟ ୩୬ ବର୍ଷରୁ ସେ ୩୩ ବର୍ଷ ରେଭେନ୍‌ସା କଲେଜ, କଟକରେ ଅଧ୍ୟାପନା କରିଥିଲେ । ଏଠାରେ ସେ ୧୮୮୩–୧୮୮୬, ପୁଣି ୧୮୮୯–୧୯୧୯, ଅବସର ଗ୍ରହଣ ପର୍ଯ୍ୟନ୍ତ ପ୍ରୋକ୍ତ କଲେଜର ବିଜ୍ଞାନ ବିଭାଗକୁ ଚଳାଉଥିଲେ । ସନ ୧୮୮୩ ବେଳକୁ ପ୍ରିନ୍‌ସପାଲ ମିଷ୍ଟର ଏସ୍.ଏଜର ସାହେବଙ୍କୁ ମିଶାଇ କଲେଜରେ ଅଧ୍ୟାପନା କରୁଥିଲେ ସାତଜଣ । ଅଧ୍ୟକ୍ଷ ନିଜେ ଇଂରାଜୀ ଭାଷା–ସାହିତ୍ୟ ପଢ଼ାଉଥିଲେ । ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଜ୍ଞାନର ସବୁ ବିଷୟ, ତାହା ପୁଣି ଭିନ୍ନ ଭିନ୍ନ ଶ୍ରେଣୀରେ ଅଧ୍ୟାପନା କରୁଥିଲେ । ତାଙ୍କ ଆତ୍ମଚରିତରେ ସେ ସ୍ପଷ୍ଟ କରିଛନ୍ତି ଯେ ସପ୍ତାହର ଛଅଟି କାର୍ଯ୍ୟଦିବସରେ ତାଙ୍କୁ ୨୭(ସତେଇଶ) ଘଣ୍ଟା ଲେକ୍ଚର ଦେବାକୁ ପଡୁଥିଲା । ତା' ସହିତ ପରୀକ୍ଷାଗାରରେ ଆଉ ୦୯(ନଅ) ଘଣ୍ଟା କାମ କରିବାକୁ ହେଉଥିଲା । ଏଥିରୁ ଅନୁମିତ ଯେ ବିଜ୍ଞାନ ଶିକ୍ଷା ସେ କାଳରେ ଅତି ଅବହେଳିତ ଅବସ୍ଥାରେ ଥିଲା । ରେଭେନ୍‌ସା କଲେଜରେ ମୋଟ ଛାତ୍ର ସଂଖ୍ୟା ଥିଲା ୮୩ ବା ୮୪ । ସନ ୧୯୦୩ ବେଳକୁ କଳା ଓ ବିଜ୍ଞାନପାଠ ଅଲଗା ଅଲଗା କରାଗଲା । ବି.ଏ ଓ ବି.ଏସ୍‌ସି ଡିଗ୍ରୀର ପ୍ରବର୍ତ୍ତନ କରାଯାଇଥିଲା । କେବଳ କଳା ସଂପର୍କିତ ପାଠପଢ଼ି ଓ ପରୀକ୍ଷାରେ ପାଶ୍ କଲେ ବି.ଏ ଓ ବିଜ୍ଞାନ ସଂପର୍କିତ ପାଠରେ ସେହିପରି ବି.ଏସ୍‌ସି ଡିଗ୍ରୀ ଲାଭର ସୁଯୋଗ ଆସିଥିଲା ୧୯୦୩ ମସିହା ପରେ ।

ଶ୍ରୀ ରାୟ ଥିଲେ ଜଣେ ସଫଳ ଅଧ୍ୟାପକ ଓ ସୁଯୋଗ୍ୟ ସାରସ୍ୱତ ସାଧକ । ବଙ୍ଗଳା ଭାଷାରେ ସେ ୨୨ (ବାଇଶ) ଖଣ୍ଡ ଓ ଇଂରାଜୀ ଭାଷାରେ ୦୭(ସାତ) ଖଣ୍ଡ ବହି ଲେଖିଛନ୍ତି । ସ୍କୁଲ–କଲେଜର ପିଲାମାନଙ୍କ ପାଇଁ ମଧ୍ୟ ସେ ପାଠ୍ୟପୁସ୍ତକ ରଚନା କରିଥିଲେ । ତାଙ୍କର ଚରନା ପଦାର୍ଥବିଜ୍ଞାନ (୧୮୮୭) ଓ ପ୍ରାକୃତ ଭୂଗୋଳ (୧୮୮୮) ବିଦ୍ୟାର୍ଥୀମାନଙ୍କ ପାଇଁ ଥିଲା ଅତି ଉପଯୋଗୀ । ପ୍ରୋକ୍ତ ଦୁଇପୁସ୍ତକ ଓଡ଼ିଆଭାଷାରେ ଅନୂଦିତ ହୋଇଥିଲା ମଧ୍ୟ । ଶ୍ରୀ ରାୟଙ୍କ ସଂରଚିତ ଗ୍ରନ୍ଥ– 'ANCIENT INDIAN LIFE' (୧୯୪୮) ରବୀନ୍ଦ୍ର ପୁରସ୍କାର ଲାଭ କରିଥିଲା । ପୁନଶ୍ଚ ଏଇ ଗ୍ରନ୍ଥ ଯୁକ୍ତରାଷ୍ଟ୍ର ଆମେରିକାର ଉଇସକନସିନ୍ ବିଶ୍ୱବିଦ୍ୟାଳୟର ପାଠ୍ୟ ତାଲିକା ଅନ୍ତର୍ଭୁକ୍ତ ହୋଇପାରିଥିଲା । ଏତଦ୍‌ବ୍ୟତୀତ ୩୫୦ରୁ ଅଧିକ ସଂଖ୍ୟକ ଲେଖା ତାଙ୍କର ବିବିଧ ପତ୍ରପତ୍ରିକାରେ ସ୍ଥାନିତ ହୋଇଥିଲା ।

ଅଧ୍ୟାପକ ଶ୍ରୀ ରାୟ ଥିଲେ ବହୁମୁଖୀ ପ୍ରତିଭା । ଉପକାରୀ ସଦ୍‌ଜ୍ଞାନୀ । କେବଳ କଲେଜ ପିଲାଙ୍କୁ ପଢ଼ାଇବାରେ ତାଙ୍କର କାର୍ଯ୍ୟପରିସର ସୀମିତ ନଥିଲା । ଜନସାଧାରଣଙ୍କ ପାଇଁ ସେ କାର୍ଯ୍ୟ କରୁଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶଗଠନ, ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର, ଶିଳ୍ପ–ବାଣିଜ୍ୟ କ୍ଷେତ୍ରରେ ଉନ୍ନତି, କଳା–ସାହିତ୍ୟ–ସଂସ୍କୃତିର ପୁନରୁଦ୍ଧାର ଓ ଅଗ୍ରଗତି ନିମନ୍ତେ ତାଙ୍କର ଉଦାର ଦୃଷ୍ଟି ରହିଥିଲା । ବିଶେଷତଃ ମୟୂରଭଂଜ, ବାମଣ୍ଡା ଓ କେନ୍ଦୁଝର ଦେଶୀୟ ରାଜ୍ୟର ରାଜପରିବାର ସହ ତାଙ୍କର ବନ୍ଧୁତା ଥିଲା । ମୟୂରଭଂଜର ମହାରାଜ ଶ୍ରୀରାମଚନ୍ଦ୍ର ଭଂଜଦେଓ ତାଙ୍କର ଛାତ୍ରଥିବାରୁ ରେଭେନ୍‌ସା କଲେଜ କଟକର ବିଜ୍ଞାନଗାରର ଉନ୍ନୟନ ପାଇଁ ଅକୁଣ୍ଠ ସହାୟତା ପ୍ରଦାନ କରିଥିଲେ । ବାମଣ୍ଡା (ସେ କାଳରେ ଥିଲା ସେଣ୍ଟ୍ରାଲ ପ୍ରେସିଡେନ୍‌ସି ଅନ୍ତର୍ଗତ, ଏବେ ତାହା ଦେବଗଡ଼ ଜିଲା)ର ସୁଯୋଗ୍ୟ ନରପତି ସାର୍ ବାସୁଦେବ ସୁଢ଼ଳଦେବ ଓ ତାଙ୍କର ସୁପୁତ୍ର ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଅନୁରୋଧକ୍ରମେ ଶ୍ରୀ ରାୟ ବାମଣ୍ଡା ଯାଇ ସେଠାରେ ଏକ ବିଜ୍ଞାନ ମନ୍ଦିର ପ୍ରତିଷ୍ଠା କରିଥିଲେ । ସେ ମଧ୍ୟ କେନ୍ଦୁଝର ରାଜକୁମାରମାନଙ୍କର ପାଠପଢ଼ାର ଥିଲେ ମାର୍ଗଦର୍ଶକ ଓ ତତ୍ତ୍ୱାବଧାରକ । କେନ୍ଦୁଝରରେ ଉପଲବ୍‌ଧ ଅତି ସୂକ୍ଷ୍ମ ତାର ବାଦ୍ୟଯନ୍ତ୍ରରେ ଉପଯୋଗୀ । ଏକଥା ଶ୍ରୀ ରାୟ ରାଜାଙ୍କୁ ବୁଝାଇଥିବା କାରଣରୁ ପ୍ରୋକ୍ତ ତାରର ରପ୍ତାନୀ କାରବାରରେ ସେଠାକାର ରାଜସ୍ୱ ବୃଦ୍ଧି ଘଟିଥିଲା ।

ଉତ୍କଳଗୌରବ ମଧୁସୂଦନ ଦାସ C.I.E. ଙ୍କ ସହ ଅଧ୍ୟାପକ ଯୋଗେଶଚନ୍ଦ୍ରଙ୍କର ଉତ୍ତମ ବନ୍ଧୁତା ଥିଲା । ମଧୁବାବୁଙ୍କର ତାରକସି କାମର ସେ ଥିଲେ ଉଚ୍ଚ ପ୍ରଶଂସକ । ସେଥିରୁ ପ୍ରେରଣା ପାଇ ଶ୍ରୀ ରାୟ କଟକରେ ବସାଇଥିଲେ 'ଉଦ୍ୟୋଗୀ ସମିତି ଭଣ୍ଡାର' । ଏହା ଥିଲା ଏକ ସମବାୟ ସଂସ୍ଥା । ରେଭେନ୍‌ସା କଲେଜର ତତ୍‌କାଳୀନ ଲାଇବ୍ରେରିଆନ୍ ଆର୍ତ୍ତବଲ୍ଲଭ ମହାନ୍ତି (ପରବର୍ତ୍ତୀ କାଳରେ ଅଧ୍ୟାପକ, ଗବେଷକ ଓ ପ୍ରାଚୀ ସମିତିର ପ୍ରତିଷ୍ଠାତା) ପ୍ରୋକ୍ତ ଭଣ୍ଡାରର ହିସାବ କିତାବ (ସାମୟିକ) କରୁଥିଲେ । କୁଟୀର ଶିଳ୍ପଭିତ୍ତିକ ବିବିଧ ଉତ୍ପାଦନ, ବୟନ ସାମଗ୍ରୀର କ୍ରୟ–ବିକ୍ରୟ । ଏଇ ସମିତି ମାଧ୍ୟମରେ କରାଯାଉଥିଲା । କୃଷକମାନଙ୍କର ଜଳସେଚନ ଓ ପନିପରିବା ଚାଷ ପାଇଁ ସେ କାଠ ଓ ବାଉଁଶରେ ପବନଚକ୍ରୀ ନିର୍ମାଣର କୌଶଳ ଶିଖାଉଥିଲେ । ପବନଚକ୍ରୀ ଦ୍ୱାରା ବାଂଫୀରୁ ସହଜରେ ଜଳଉଠାଯାଇ ଉଦ୍ଦେଶ୍ୟ ପୂରଣ କରାଯାଉଥିଲା । ଢିଙ୍କିଆକଳ ବ୍ୟବହାରପୂର୍ବକ ଜଳଉଠା ପମ୍ପ ତିଆରି କରିବାର ଏକ ପେଟେଣ୍ଟ ଶ୍ରୀ ରାୟ ଲାଭକରିଥିଲେ । ଏହାକୁ କୁହାଯାଉଥିଲା ରାୟପମ୍ପ ଅଧ୍ୟାପକ ଶ୍ରୀ ଯୋଗେଶଚନ୍ଦ୍ର କଟକ ନଗରର ସୁଖଦୁଃଖରେ ଭାଗୀଦାର ଥିଲେ । ସନ ୧୮୯୧ ବେଳକୁ ସେ ହୋଇଯାଇଥିଲେ କଟକ ପୌରସଂସ୍ଥାର ଜନୈକ ୱାର୍ଡ଼ କମିଶନର । ବର୍ତ୍ତମାନ ଏଇ ପଦବୀକୁ 'କର୍ପୋରେଟର' କୁହାଯାଉଛି । ସେତେବେଳେ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ଥିଲେ କଟକର ସିଭିଲସର୍ଜନ ଡାକ୍ତର ଜୋରାବ ସାହେବ । ତାଙ୍କଦ୍ୱାରା ମନୋନୀତ ୧୮(ଅଠର) ଜଣ ୱାର୍ଡ଼ କମିଶନରଙ୍କ ମଧ୍ୟରୁ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ଥିଲେ ଜଣେ । ତାଙ୍କ ସୌଜନ୍ୟ ତଥା କର୍ମଦକ୍ଷତାରୁ ଖରାଦିନେ ନଦୀଶଯ୍ୟାରେ ଅସ୍ଥାୟୀ ନଳକୂପ ବସାଯାଇ ଲୋକମାନଙ୍କ ପାଇଁ ନିରାପଦ ପାନୀୟଜଳର ବ୍ୟବସ୍ଥା କରାଯାଉଥିଲା । ସାଧାରଣଲୋକଙ୍କ ରୋଜଗାର ବଢ଼ାଇବା ପାଇଁ ସେ ଲୁଗାଧୁଆ କ୍ଷାର ପ୍ରସ୍ତୁତିର ପଦ୍ଧତି, ଲୁଗାରଙ୍ଗ କରିବାର କୌଶଳ, ଚିତ୍ରକଳାର ଟ୍ରେନିଂ, ମାଟିପାତ୍ର ତିଆରିର ଉପାୟ ଶିଖାଉଥିଲେ । ସ୍ଥୂଳତଃ କଟକ ନଗରର ସେ ଥିଲେ ଏକାଧାରରେ ଶିକ୍ଷକ, ମାର୍ଗଦର୍ଶକ,ସମାଜସେବୀ ତଥା ଦାୟିତ୍ୱବାନ୍ ଗୁରୁଜନ ।

ଜ୍ଞାନ–ତପସ୍ୱୀ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ନିଜର ବିଜ୍ଞତା ବଳରେ ସନ ୧୯୦୧ ବେଳକୁ ଫେଲୋ ଅଫ୍ ଦି ରୟାଲ ମାଇକ୍ରୋସ୍କୋପିକ୍ ସୋସାଇଟି ହୋଇପାରିଥିଲେ । ନିରନ୍ତର ସାଧନା ବଳରେ ସନ ୧୯୦୨ ବେଳକୁ ସେ ଫେଲୋ ଅଫ୍ ଦି ରୟାଲ ଆଷ୍ଟ୍ରୋନୋମିକାଲ ସୋସାଇଟି ହୋଇସାରିଥିଲେ । ସେବର୍ଷ

(୧୯୦୨) ବେଳକୁ ସେ ମଧ୍ୟ ଆନ୍ତର୍ଜାତିକ ଉଦ୍ଭିଦବିଜ୍ଞାନୀ ସଂଘର ସଭ୍ୟ ହୋଇ ପାରିଥିଲେ । ବିହାର–ଓଡ଼ିଶା ଗବେଷଣା ପରିଷଦର ସଭ୍ୟ ଭାବେ ତାଙ୍କୁ ବହୁମାନିତ କରାଯାଇଥିଲା । ତାଙ୍କର ଉଚ୍ଚକୋଟୀର କୃତିତ୍ୱ–ସାରସ୍ୱତ ସାଧନା ଓ କର୍ମକୁଶଳତାକୁ ସମ୍ମାନ ଜଣାଇ ବିହାର–ଓଡ଼ିଶା ସରକାର ତାଙ୍କ ପ୍ରତି ୧୯୧୩ରେ ରାୟସାହେବ ଓ ୧୯୧୬ରେ ରାୟବାହାଦୁର ଉପାଧି ପ୍ରଦାନ କରିଥିଲେ । କାଶୀର ଭାରତ ଧର୍ମ ମହାମଣ୍ଡଳ ତାଙ୍କୁ 'ବିଜ୍ଞାନଭୂଷଣ' ଉପାଧିରେ ଭୂଷିତ କରିଥିଲେ । ବଙ୍ଗୀୟ ସାହିତ୍ୟସଭା ତାଙ୍କୁ 'ଆଚାର୍ଯ୍ୟ' ଉପାଧି ପ୍ରଦାନ କରିଥିଲେ । ପୁରୀର ପଣ୍ଡିତସଭା ତାଙ୍କୁ ବିଦ୍ୟାନିଧି ଉପାଧିରେ ମଣ୍ଡିତ କରିଥିଲେ ୧୯୧୦ ମସିହାରେ । ସାରା ଦେଶରେ ସେ ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ, ବିଦ୍ୟାନିଧି ଭାବେ ସୁପରିଚିତ । ସନ ୧୯୫୫ରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର ଶ୍ରୀ ରାୟଙ୍କୁ ସମ୍ମାନଜନକ ଡି.ଲିଟ୍ ଉପାଧିରେ ଭୂଷିତ କରିଥିଲେ । ତା' ପରବର୍ଷ କଲିକତା ବିଶ୍ୱବିଦ୍ୟାଳୟ ମଧ୍ୟ ସମ୍ମାନଜନକ ଡି.ଲିଟ୍ ଡିଗ୍ରୀ ଶ୍ରୀରାୟଙ୍କୁ ପ୍ରଦାନ କରିଥିଲେ ।

ଇତି ମଧ୍ୟରେ ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟଙ୍କର ଦେହାବସାନ ଘଟିଛି ୧୯୫୬ ମସିହାରେ । ତାଙ୍କର କୃତି–କୀର୍ତ୍ତି ଅମଳିନ । ଯଦି ସେ ଓଡ଼ିଶା ଆସି ନଥା'ନ୍ତେ ତେବେ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ବିରାଟ ପ୍ରତିଭାର ଉନ୍ମୋଚନ ହୋଇପାରି ନଥା'ନ୍ତା । ଗୁଣ ଚିହ୍ନେ ଗୁଣିଆ । ଦୂରବୀକ୍ଷଣ ଯନ୍ତ୍ର ଧରି ସେ ଆକାଶ ବିଜ୍ଞାନ ଅନୁଧ୍ୟାନ କରୁଥିଲେ । ପଠାଣି ସାମନ୍ତ ନିଜେ ତିଆରି କରିଥିବା ସରଳଯନ୍ତ୍ର ମାଧ୍ୟମରେ ଗବେଷଣା କରୁଥିଲେ । ଯୋଗେଶଚନ୍ଦ୍ର ଠିକ୍ ବୁଝିପାରିଥିଲେ ଯେ ସକଳ ଆଧୁନିକ ଯନ୍ତ୍ରର ସାହାଯ୍ୟ ନ ନେଇ ବି ସାମନ୍ତଙ୍କ ଗଣନା ନିର୍ଭୁଲ । ପ୍ରକୃତରେ ଯୋଗେଶଚନ୍ଦ୍ର ହିଁ ପଠାଣି ସାମନ୍ତଙ୍କ ପ୍ରତିଭାର ଆବିଷ୍କାରକ ବୋଲି କହିବାରେ ଅତ୍ୟୁକ୍ତି ନାହିଁ । ସେ ବହୁ ସୁଗୁଣର ଅଧିକାରୀ ତଥା ପ୍ରତିଭାର ପ୍ରକାଶକାରୀ ଭାବେ ସ୍ୱତନ୍ତ୍ର ମର୍ଯ୍ୟାଦାର ହକ୍‌ଦାର । ତାଙ୍କୁ ଉଚ୍ଚ ପ୍ରଶଂସାକରି ବ୍ୟାସକବି ଫକୀରମୋହନ ସେନାପତି 'ଉତ୍କଳଭ୍ରମଣଂ' କାବ୍ୟରେ ଲେଖିଛନ୍ତି ଏହିପରି, ଯଥା–

'ଶୁଣିଥିଲି ଗତ ହେଲା ସାତବର୍ଷ ପ୍ରାୟ
କଟକରେ ଅଛି ଜଣେ ଯୋଗେଶ୍ଚନ୍ଦ୍ର ରାୟ ।
ବୋଟାନି ଓ କେମିଷ୍ଟ୍ରିରେ ଭାରି ତା'ର ନଲେଜ୍
କାମ କରେ ପ୍ରଫେସରି କଟକ କଲେଜ ।
ଜ୍ୟୋତିଷ ପାଠରେ ପୁଣି ଭାରି ସେ ପ୍ରବୀଣ
ହାତରୁ ପକାଏ ନାହିଁ ନିମିଷେ ଦୁର୍ବିଣ ।
ଗୋଟାଏ କଲା ସେ କାମ ଓଡ଼ିଶା ସକାଶେ
ସେଥିପାଇଁ ତାହାକଥା ମୋ' ମନକୁ ଆସେ ।
ବଣର ମାଳତୀ ପରି ପଠାଣି ସାଆନ୍ତେ
କାହିଁ ପଡ଼ିଥିଲେ ବଣଭିତରେ ଏକାନ୍ତେ ।
କେବେ କେହି ଲୋକ ତାଙ୍କୁ ନ ପଚାରେ ଥରେ
ଯୋଗେଶ ଚିହ୍ନାଇ ଦେଲେ ଭାରତ ମଧ୍ୟରେ ।
ଆମ୍ଭମାନଙ୍କର କଲ ଭାରି ଉପକାର
ହେ ଯୋଗେଶଚନ୍ଦ୍ର ରାୟ ଜୁହାର ଜୁହାର ।'

(ଫକୀରମୋହନ ଗ୍ରନ୍ଥାବଳୀ, ପ୍ରଥମଭାଗ, ପୃ.୨୦୮)

ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ, ବିଦ୍ୟାନିଧିଙ୍କ ଯୋଗୁ 'ସିଦ୍ଧାନ୍ତ ଦର୍ପଣ' ସାରା ପୃଥିବୀରେ ପ୍ରସିଦ୍ଧ । ତାଙ୍କ ପ୍ରତି ଆମ୍ଭର ଶ୍ରଦ୍ଧା–ସମ୍ମାନ ଓ ଭକ୍ତିପୂତ ପ୍ରଣାମ ।

ସେକ୍ଟର–୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧



# ଜୁଆଙ୍ଗମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନରେ ପର୍ବପର୍ବାଣିର ଭୂମିକା

ରଞ୍ଜନ ପ୍ରଧାନ

ଜୁଆଙ୍ଗମାନଙ୍କ ଜୀବନଧାରା ପ୍ରକୃତି ଓ ଅରଣ୍ୟ ସହିତ ଓତପ୍ରୋତ ଭାବେ ଜଡ଼ିତ । ସେମାନେ ଅରଣ୍ୟ, ବୃକ୍ଷ, ଜଙ୍ଗଲ, ନଦୀ, ଝରଣା, ସୂର୍ଯ୍ୟ, ପୃଥିବୀ, ଗ୍ରହ, ନକ୍ଷତ୍ର ଆଦି ପ୍ରାକୃତିକ ଏବଂ ସ୍ୱର୍ଗୀୟ ବସ୍ତୁକୁ ଦେବତା ରୂପେ ପୂଜା କରନ୍ତି । ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ଯେ ସେମାନଙ୍କ ଦେବଦେବୀ ଅରଣ୍ୟରେ, ପାହାଡ଼ରେ ଏବଂ ନଦୀ କିମ୍ବା ଝରଣାରେ ଅବସ୍ଥାନ କରନ୍ତି । ସାଧାରଣତଃ ଜୁଆଙ୍ଗମାନେ ବାର ମାସରେ ତେର ପର୍ବ ପାଳନ କରିଥାନ୍ତି ।

ଗୋଷ୍ଠୀଗତ ଭାବେ ବଞ୍ଚିବା ହେଉଛି ଜୁଆଙ୍ଗ ଜୀବନର ସଫଳ ସୂତ୍ର । ଯେକୌଣସି ସାମାଜିକ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମକୁ ସେମାନେ ଗୋଷ୍ଠୀଗତ ଭାବେ ତୁଲେଇଥାନ୍ତି । ପର୍ବପର୍ବାଣି ପାଳନ ମାଧ୍ୟମରେ ସେମାନେ ଏକତ୍ରିତ ହେବାର ସୁଯୋଗଲାଭ କରିଥାନ୍ତି । ପ୍ରତ୍ୟେକ ପର୍ବପର୍ବାଣିମାନଙ୍କରେ ଜୁଆଙ୍ଗମାନେ ନିଜର କର୍ମମୟ ଜଞ୍ଜାଳ ଛାଡ଼ି ଗାଁର ମଧ୍ୟସ୍ଥଳରେ ଏକଜୁଟ୍ ହୋଇଥାନ୍ତି ।

ପର୍ବପର୍ବାଣି ପାଳନ ମାଧ୍ୟମରେ ଜୁଆଙ୍ଗମାନଙ୍କର ସାମାଜିକ-ସାଂସ୍କୃତିକ ଭାବଧାରା ଏବଂ ଗୋଷ୍ଠୀଗତ ଜୀବନ ଅତ୍ୟନ୍ତ ଦୃଢ଼ ହୋଇଥାଏ । ପର୍ବପର୍ବାଣି, ଉତ୍ସବ, ମହୋତ୍ସବ ପାଳନ କରି ପ୍ରଚୁର ଆନନ୍ଦ ଉପଭୋଗ କରିବା ଜୁଆଙ୍ଗ ଜୀବନର ପ୍ରମୁଖ ବିଭବ ।

ଜୁଆଙ୍ଗମାନଙ୍କର ପର୍ବପର୍ବାଣିମାନଙ୍କୁ ମୁଖ୍ୟତଃ ଛଅ ଭାଗରେ ବିଭକ୍ତ କରାଯାଇପାରେ ।

୧. କୃଷିଭିତ୍ତିକ ପର୍ବ
୨. ପାରମ୍ପରିକ ପର୍ବ
୩. ସାମାଜିକ ପର୍ବ
୪. ଶିକାରଭିତ୍ତିକ ପର୍ବ
୫. ରୋଗ ନିରାକରଣଭିତ୍ତିକ ପର୍ବ
୬. ଗ୍ରାମ ସଂସ୍କାର ପର୍ବ

ବର୍ଷର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ସମୟରେ ଜୁଆଙ୍ଗ ଗାଁରେ କିଛି ନା କିଛି ପର୍ବ ପାଳିତ ହେଉଥାଏ । ଜୁଆଙ୍ଗମାନେ ମୁଖ୍ୟତଃ କୃଷି, ଶିକାର ଓ ପଶୁପାଳନ ମାଧ୍ୟମରେ ସେମାନଙ୍କର ଜୀବିକା ନିର୍ବାହ କରିଥାନ୍ତି । ଏଣୁ ସେମାନଙ୍କର ଅଧିକାଂଶ ପର୍ବପର୍ବାଣି କୃଷିଭିତ୍ତିକ ।

'ତଇଳା' (ପାହାଡ଼ିଆ ଉଚ୍ଚ ଚାଷଭୂମି)ରେ ଭଲ ଫସଲ ହେଉ କି ଫସଲର ସୁରକ୍ଷା ପାଇଁ ଜୁଆଙ୍ଗମାନେ ଅନେକ ପର୍ବ ପାଳନ କରିଥାନ୍ତି । ସେହିଭଳି ଗୃହପାଳିତ ପଶୁପକ୍ଷୀଙ୍କ ସୁରକ୍ଷା ଏବଂ ନିଜ ସନ୍ତାନସନ୍ତତିଙ୍କ ସ୍ୱାସ୍ଥ୍ୟ ଓ ନିରାମୟ ଜୀବନ କାମନା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ଆଉ କେତେକ ପର୍ବ ପାଳନ କରିଥାନ୍ତି ।

ବର୍ଷକରେ ଥରେ ଜୁଆଙ୍ଗମାନେ ନିଜ ଗ୍ରାମକୁ ସଂସ୍କାର କରିଥାନ୍ତି । ଘରର ପୁରୁଣା ଜିନିଷପତ୍ରକୁ ବଦଳେଇ ନୂତନ ଜିନିଷପତ୍ର ଆପଣେଇଥାନ୍ତି । ପୂର୍ବେ ପ୍ରତ୍ୟେକ ଜୁଆଙ୍ଗ 'ଅଖାଣି ପର୍ବ'(ଶିକାର ଯାତ୍ରା)କୁ ଧୁମ୍‌ଧାମ୍‌ରେ ପାଳନ କରୁଥିଲେ । ଜଙ୍ଗଲରୁ ଭଲ ଶିକାର ମିଳିବା ଏବଂ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲରେ ବସବାସ କରୁଥିବାରୁ ନିଜର

ସୁରକ୍ଷା ପାଇଁ ମଧ୍ୟ ଆଉ କେତେକ ପର୍ବ ପାଳନ କରାଯାଏ ।

ଜୁଆଙ୍ଗମାନେ ନିଜନିଜର ବାଡ଼ିବଗିଚା ଏବଂ ତଇଳାରେ ଚାଷ କରିଥିବା ଶସ୍ୟ, ପନିପରିବା ଓ ଫଳମୂଳକୁ ନୂଆ କରି ଖାଇଥାନ୍ତି । ଏସବୁ ଶସ୍ୟ, ପନିପରିବାକୁ ପ୍ରଥମେ ନିଜ ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିବା ପରେ ନିଜେ ଭକ୍ଷଣ କରିଥାନ୍ତି । ଏହି କ୍ରମରେ ଜୁଆଙ୍ଗମାନେ ଧାନ ନୂଆଖିଆ, ଆମ୍ବ ନୂଆଖିଆ, ଶାଗ ନୂଆଖିଆ, ରୁମା ନୂଆଖିଆ, କୁସୁମ ନୂଆଖିଆ ଭଳି ଅନେକ ପର୍ବପର୍ବାଣି ପାଳନ କରିଥାନ୍ତି ।

ଜୁଆଙ୍ଗମାନେ ନିଜ ଗ୍ରାମ, ତଇଳା ଓ ସର୍ବୋପରି ନିଜ ପିଢ଼ର ସୁରକ୍ଷା ନିମନ୍ତେ 'ପିଢ଼ ପୂଜା'ର ଆୟୋଜନ କରିଥାନ୍ତି । ପିଢ଼ ପୂଜାଟି ତନ୍ତ୍ରମତେ ଅନୁଷ୍ଠିତ ହୋଇଥାଏ । ଗ୍ରାମର ଗୁଣିଆ (ରାଉଳିଆ) ଦ୍ୱାରା ପିଢ଼ ପୂଜା ପାଳିତ ହୋଇଥାଏ । ଏହାବ୍ୟତୀତ ଜୁଆଙ୍ଗମାନେ ମକର ପର୍ବ, ରଜ ପର୍ବ, ଗହ୍ମା ପୂର୍ଣ୍ଣିମା, ରକ୍ଷାବନ୍ଧନ ଉତ୍ସବ, ଲକ୍ଷ୍ମୀ ପୂଜା, ବିଷୁବ ସଂକ୍ରାନ୍ତି, ମହା ଶିବରାତ୍ରୀ ଭଳି ପର୍ବପର୍ବାଣି ପାଳନ କରିଥାନ୍ତି ।

ଡିସେମ୍ବର–ଜାନୁୟାରୀ ମାସରେ ଜୁଆଙ୍ଗମାନେ ପୁଷ୍ ପୂନେଇଁ (ମାଘପୋଡ଼ି) ପର୍ବ ପାଳନ କରୁଥିବାବେଳେ ମାର୍ଚ୍ଚ–ଏପ୍ରିଲ୍ ମାସ ବେଳକୁ 'ଆମ୍ବ ନୂଆଖିଆ'ପର୍ବ ପାଳନ କରିଥାନ୍ତି । ପୁଷ୍ ପୂନେଇଁ (ମାଘ ପୋଡ଼ି) ପର୍ବଟି ଜୁଆଙ୍ଗମାନଙ୍କର ଆଦ୍ୟ ପର୍ବ ଭାବେ ପାଳନ କରାଯାଇଥାଏ । ଏହି ପର୍ବ ପାଳନ ହେବା ପରେ ବର୍ଷର ଅନ୍ୟାନ୍ୟ ପର୍ବ ପାଳିତ ହୋଇଥାଏ ।

ଏପ୍ରିଲ୍–ମେ ମାସ ବେଳକୁ ଜୁଆଙ୍ଗମାନେ 'ଶିକାର ଯାତ୍ରା' (ଅଖାଣି ପର୍ବ) ପାଳନ କରୁଥିବାବେଳେ ମେ ମାସରେ ସେମାନେ ତିର୍ତୀୟା (ଅକ୍ଷି ତୃତୀୟା), ମଞ୍ଜିବୁଣା ପର୍ବ ପାଳନ କରିଥାନ୍ତି । ପ୍ରତିବର୍ଷ ଜୁନ୍ ମାସ ବେଳକୁ ଜୁଆଙ୍ଗମାନେ ରଜ ପର୍ବ ପାଳନ କରୁଥିବାବେଳେ ଜୁଲାଇ ମାସରେ ଆଷାଢ଼ି ପର୍ବ (ବାଙ୍ଗୁରୁ ଅବ) ଓ କୁସୁମ ନୂଆଖିଆ ପର୍ବ, ଜୁଲାଇ–ଅଗଷ୍ଟ ମାସରେ ପିଢ଼ପୂଜା ଓ ଗହ୍ମା ପୂର୍ଣ୍ଣିମା, ଅଗଷ୍ଟ–ସେପ୍ଟେମ୍ବର ମାସରେ ଧାନ ନୂଆଖିଆ ଓ ରୁମା ନୂଆଖିଆ ଏବଂ ଡିସେମ୍ବର–ଜାନୁୟାରୀ ମାସରେ ଗୁଣ୍ଡାଦିଆ ପର୍ବ ଓ ଗୁରୁବାର ଓଷା (ଲକ୍ଷ୍ମୀ ପୂଜା) ପାଳନ କରିଥାନ୍ତି ।

ପୁଷ୍ ପୂନେଇଁ (ମାଘ ପୋଡ଼ି)

'ପୁଷ୍ ପୂନେଇଁ' ପର୍ବଟି ଅନ୍ୟ ଅର୍ଥରେ 'ମାଘ ପୋଡ଼ି' ପର୍ବ ଭାବେ ପରିଚିତ । ଏହା ଜୁଆଙ୍ଗମାନଙ୍କ ଆଦ୍ୟ ପର୍ବ ଭାବେ ବିବେଚିତ । ଏହି ପର୍ବଟି ଧାର୍ମିକ ଦୃଷ୍ଟିରୁ ଯେତିକି ଗୁରୁତ୍ୱପୂର୍ଣ୍ଣ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ ।

ଏହା ଏକ କୃଷିଭିତ୍ତିକ ପର୍ବ । ମାଘପୋଡ଼ି ପର୍ବଟି ଡିସେମ୍ବର–ଜାନୁୟାରୀ ମାସ ବେଳକୁ ବିଶେଷକରି କ୍ଷେତରୁ ଫସଲ ଅମଳ ଶେଷ ହୋଇଯିବା ପରେ ପାଳିତ ହୋଇଥାଏ । ଏହି ପର୍ବ ପାଳନ ସହ ଜୁଆଙ୍ଗମାନଙ୍କର ନୂତନ କୃଷିବର୍ଷର ଶୁଭାରମ୍ଭ ହୋଇଥାଏ । ପରବର୍ତ୍ତୀ ବର୍ଷର କୃଷି ଯୋଜନା କିଭଳି ହେବ ତାହା ମାଘପୋଡ଼ି ପର୍ବ ପାଳନ ପରେ ହିଁ ସ୍ଥିର କରାଯାଇଥାଏ । ମାଘ ପୋଡ଼ି ପର୍ବ ପାଳନ ପରେ ଜୁଆଙ୍ଗମାନେ 'ତଇଳା'(ପାହାଡ଼ିଆ ଉଚ୍ଚଭୂମି) ସଫା କରି ପୋଡୁ ଚାଷ ପାଇଁ ପ୍ରସ୍ତୁତ ହୁଅନ୍ତି ।

ମାଘ ପୋଡ଼ି ପର୍ବ ପାଳନ ପରେ ପରେ ଜୁଆଙ୍ଗ ସେଲାନ୍, କଙ୍ଗେରମାନେ ଚାଙ୍ଗୁ ବାଦନ କରିଥାନ୍ତି । ମାଘପୋଡ଼ି ପର୍ବ ପାଳନ ପୂର୍ବରୁ ଜୁଆଙ୍ଗ ଗ୍ରାମମାନଙ୍କରେ ଚାଙ୍ଗୁ ନୃତ୍ୟ ଓ ଗୀତର ଆସର ହୋଇ ନଥାଏ । କ୍ଷେତରୁ ଫସଲ ଅମଳ ନ ହେବା ପର୍ଯ୍ୟନ୍ତ ଜୁଆଙ୍ଗମାନଙ୍କୁ ଚାଙ୍ଗୁ ବଜେଇବାକୁ ମନା ଥାଏ ।

ପୁଷ୍ ପୂନେଇଁ (ମାଘପୋଡ଼ି) ପର୍ବର ଏକ ସାମାଜିକ ଗୁରୁତ୍ୱ ରହିଛି । ବର୍ଷକରେ କେବଳ ଏହି ପର୍ବ ପାଳନ ବେଳେ ହିଁ ଜୁଆଙ୍ଗମାନେ ସେମାନଙ୍କ ବାସସ୍ଥାନ ପରିବର୍ତ୍ତନ, ନୂତନ ଗୃହ ନିର୍ମାଣାଦି କାମ କରିଥାନ୍ତି । ଯେଉଁ ଜୁଆଙ୍ଗମାନେ ନିଜର ପୁରୁଣା ଗ୍ରାମ ପରିବର୍ତ୍ତନ କରି ଜଙ୍ଗଲ ମଧ୍ୟରେ

ନୂତନ ଗ୍ରାମ ପ୍ରତିଷ୍ଠା କରିବାକୁ ଚାହିଁବେ, ସେମାନେ କେବଳ ମାଘପୋଡ଼ି ପର୍ବ ବେଳେ କରିପାରିବେ । ନଚେତ୍ ସେମାନଙ୍କୁ ପୁଣି ବର୍ଷେ ଅପେକ୍ଷା କରିବାକୁ ପଡ଼ିଥାଏ ।

ପୁଷ୍ ପୂନେଇଁ ପର୍ବ ପାଳନ ପରେପରେ ଜୁଆଙ୍ଗ ସମାଜରେ ବିବାହ, ବ୍ରତ ଆଦିର ଶୁଭାରମ୍ଭ ହୋଇଥାଏ । ପୁଷ୍ ପୂନେଇଁ ପର୍ବ ପାଳନ ପରେପରେ ଜୁଆଙ୍ଗମାନେ ବିରି, ମୁଗ, ରୁମା (ବରୁଗୁଡ଼ି) ଆଦି ଡାଲି ଜାତୀୟ ଶସ୍ୟକୁ ରଗଡ଼ି ଡାଲି କରି ଖାଆନ୍ତି । ପୁଷ୍ ପୂନେଇଁ ପୂର୍ବରୁ ଡାଲି ଜାତୀୟ ଶସ୍ୟ ଖାଇବା ମନା ଥାଏ । ମାଘପୋଡ଼ି ପର୍ବ ପରଠାରୁ ଜୁଆଙ୍ଗମାନେ ବିଧବଦ୍ଧ ଭାବେ ନଡ଼ାକୁଟା, ଅନ୍ୟାନ୍ୟ ଶସ୍ୟଜାତ ଶୁଷ୍କ ଗଛ (ଧାନ, ମାଣ୍ଡିଆ, ମକା, ବାଜରା, ସୁଆଁ ଘାସ) ଆଦି ଜାଳିଥାନ୍ତି ।

ପୁଷ୍ ପୂନେଇଁ (ମାଘପୋଡ଼ି) ପର୍ବ ତିନି ଦିନ ଧରି ଚାଲେ । ପର୍ବ ପାଳନର ସପ୍ତାହେ କି ଦୁଇ ସପ୍ତାହ ପୂର୍ବରୁ ଗାଁ ମୁଖିଆ (ପଧାନ) ଓ ଧାର୍ମିକ ମୁଖିଆ (ନାଗମ୍)ଙ୍କ ନେତୃତ୍ୱରେ ଗାଁର ମଜାଙ୍ଗ୍ (ମଣ୍ଡଘର)ରେ ଏକ ପ୍ରସ୍ତୁତି ବୈଠକ ବସିଥାଏ । ଏଥିରେ ନାଗମ୍, ରାଉଳିଆ, ବାରଭାଇ ଏବଂ ଅନ୍ୟାନ୍ୟ ପୁରୁଖା ଲୋକମାନେ ଉପସ୍ଥିତ ରହି ପର୍ବର ଦିନ ଧାର୍ଯ୍ୟ କରିଥାନ୍ତି । ପର୍ବ ପାଳନ ପାଇଁ ଗ୍ରାମର ପ୍ରତି ପରିବାରରୁ ନିର୍ଦ୍ଦିଷ୍ଟ ପରିମାଣର ଚାନ୍ଦା ମଗାଯାଇ ମଜାଙ୍ଗ୍ ପାଣ୍ଠିରେ ଦାଖଲ କରାଯାଏ ।

ଏହି ସଂଗୃହିତ ପାଣ୍ଠିକୁ ଗାଁ ମୁଖିଆ 'ପଧାନ' ନିଜ ହେପାଜତରେ ମଣ୍ଡଘରେ ସାଇତି ରଖନ୍ତି ଏବଂ ପର୍ବ ପାଳନ ପାଇଁ ଏହି ପାଣ୍ଠିରୁ ହିଁ ଖର୍ଚ୍ଚ କରାଯାଇଥାଏ । ଏହି ଅର୍ଥରେ ପୂଜାରେ 'ଛେଦ' (ବଳି) ପଡ଼ିବାକୁ ଥିବା ଛେଳି, ମେଣ୍ଢା, କୁକୁଡ଼ା, ମହୁଲି ମଦ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ କିଣାଯାଇଥାଏ । ପର୍ବଟି ତିନି ଦିନ ଧରି ପାଳିତ ହୋଇଥାଏ ।

**ପ୍ରଥମ ଦିନ**

ପ୍ରଥମ ଦିନ ଗାଁର ପୂଜକ, ମୁଖିଆ ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ସକାଳୁ ସ୍ନାନ ଓ ନିତ୍ୟକର୍ମ ସାରି ନିଷ୍ଠାର ସହ ଉପବାସ ରହିଥାନ୍ତି । ଏହାକୁ 'ବାର ରୁଆ' କୁହାଯାଇଥାଏ । ନାଗମ୍ ଏବଂ ପଧାନ ସକାଳୁ ସ୍ନାନ ସାରି ନୂତନ ବସ୍ତ୍ର ପରିଧାନ କରନ୍ତି । ଜୁଆଙ୍ଗ ସ୍ତ୍ରୀଲୋକମାନେ ସ୍ନାନତର୍ପଣ ସାରି ଘରଦ୍ୱାର ଲିପାପୋଛା କରିଥାନ୍ତି । କାନ୍ଥରେ ଝୋଟି ଚିତା ପକେଇଥାନ୍ତି । ସକାଳୁ ସକାଳୁ ସେଲାନ୍ (ଯୁବତୀ)ମାନେ ଗୋବର ଓ ରଙ୍ଗୀନ୍ ମାଟିରେ ମଜାଙ୍ଗ (ମଣ୍ଡଘର)ର କାନ୍ଥ ଓ ଅଗଣାକୁ ଲିପାପୋଛା କରିବା ପରେ ଝୋଟି ଚିତା ପକେଇଥାନ୍ତି ।

ସ୍ନାନ ସାରିବା ପରେ ନାଗମ୍ ଓ ପଧାନ ନିଜ ଘରେ ଅପେକ୍ଷା କରିଥାନ୍ତି । ଗାଁର ସମସ୍ତ ପରିବାରର ପ୍ରତିନିଧିମାନେ ନିଜ ନିଜ ଘରୁ ଧାନ, ମାଣ୍ଡିଆ, ଗଙ୍ଗେଇ, କାଙ୍ଗୁ, ସୁଆଁ ଆଦି ଶସ୍ୟ ଡାଲାରେ ଭର୍ତ୍ତି କରି ନାଗମ୍ କିମ୍ବା ପଧାନଙ୍କ ଘରେ ଠୁଳ କରନ୍ତି । ସଂଗୃହୀତ ଧାନ, ଚାଉଳ, ବିରି, ମାଣ୍ଡିଆ ଆଦି ଶସ୍ୟକୁ ପୃଥକ କରି ରଖାଯାଏ ।

ଗ୍ରାମବାସୀଙ୍କଠାରୁ ସଂଗୃହୀତ ଶସ୍ୟକୁ ଚାରି ଭାଗ କରାଯାଏ । ଗୋଟିଏ ଭାଗ ଗାଁର ବୟସ୍କ ବ୍ୟକ୍ତି (ବାରଭାଇ)ଙ୍କୁ ପ୍ରଦାନ କରାଯାଏ । ଦ୍ୱିତୀୟ ଭାଗଟି ଗାଁର ଯୁବକ, ଯୁବତୀଙ୍କୁ, ତୃତୀୟ ଭାଗକୁ ପୂଜକ ଏବଂ ଚତୁର୍ଥ ଭାଗଟିକୁ ଗାଁ ମୁଖିଆ 'ପଧାନ'ଙ୍କୁ ପ୍ରଦାନ କରାଯାଏ । ଏହି ଚାରି ଭାଗ ଧାନ, ବିରି, ମାଣ୍ଡିଆ, ସୁଆଁ ଆଦି ଶସ୍ୟକୁ ନାଗମ୍ କିମ୍ବା ପଧାନଙ୍କ ଘରର ସ୍ତ୍ରୀଲୋକମାନେ ଶୁଖେଇ ଏଥିରୁ ଏକ ବିଶେଷ ପ୍ରକାର ଚୂନା ପ୍ରସ୍ତୁତ କରନ୍ତି । ଏହି ଚୂନାରେ ମଣ୍ଡାପିଠା ପ୍ରସ୍ତୁତ କରାଯାଇ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଏ ।

ପ୍ରଥମ ଦିନ ନାଗମ୍ ଓ ପଧାନଙ୍କୁ ଗାଁର ଯୁବକ, ଯୁବତୀମାନେ ଶୋଭାଯାତ୍ରାରେ ମଣ୍ଡଘରକୁ ପାଛୋଟି ଆଣିଥାନ୍ତି । ନାଗମ୍ ଓ ପଧାନ ଏକ ଡାଲାରେ ଅରୁଆ ଚାଉଳ, ହଳଦି ଗୁଣ୍ଡ, ସିନ୍ଦୂର, କଜ୍ଜଳ, ଧୂପ, ଦୀପ, ଦୁବ, ଶିଆଳି ପତ୍ର, ଲାଉ ତୁମ୍ବାରେ ଭର୍ତ୍ତି ପବିତ୍ର ପାଣି ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ହାତରେ ଧରି ମଣ୍ଡଘର ନିକଟକୁ ଆସନ୍ତି । ଗ୍ରାମର କିଛି ଜୁଆଙ୍ଗ ବାଜା ବଜେଇ ରୋଷଣି କରି ନାଗମ୍ ଓ ପଧାନଙ୍କୁ ମଣ୍ଡଘର ନିକଟକୁ ଆଣିଥାନ୍ତି ।

ନାଗମ୍ ଓ ପଧାନ ମଣ୍ଡଘରୁ ମହୁଲି ମଦ ଆଣି ମଣ୍ଡଘର ସମ୍ମୁଖ ଭାଗରେ ଥିବା ଗ୍ରାମଶିରିଙ୍କ ନିକଟକୁ ଯାଆନ୍ତି । ସେଠାରେ ନାଗମ୍ ଓ ପଧାନ ଧରମ୍ ଦେବତା, ବସୁମତୀ ମାତା ଓ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜାର୍ପଣ କରିଥାନ୍ତି । ଭୂମି ଉପରେ ମହୁଲି ମଦ ଢାଳି ନାଗମ୍, ପଧାନ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ପ୍ରଥମ ଦିନର ପୂଜା କାର୍ଯ୍ୟ ଏଇଠୁ ଶେଷ ହୋଇଥାଏ ।

**ଦ୍ୱିତୀୟ ଦିନ**

ଦ୍ୱିତୀୟ ଦିନ ମଧ୍ୟ ଗାଁର ସେଲାନ୍ (ଯୁବତୀ)ମାନେ ପୁନର୍ବାର ମଣ୍ଡଘରକୁ ଲିପାପୋଛା କରିଥାନ୍ତି । ନାଗମ୍ ଓ ପଧାନ ସ୍ନାନ ସାରି ପୂଜା ପାଇଁ ପ୍ରସ୍ତୁତ ହୁଅନ୍ତି । ପ୍ରଥମ ଦିନ ଭଳି ଦ୍ୱିତୀୟ ଦିନ ନାଗମ୍ ଓ ପଧାନଙ୍କୁ ଶୋଭାଯାତ୍ରାରେ ମଣ୍ଡଘର ନିକଟକୁ ଅଣାଯାଏ । ନାଗମ୍ ଓ ପଧାନ ଡାଲାରେ ଅରୁଆ ଚାଉଳ, ହଳଦୀ ଗୁଣ୍ଡ, ସିନ୍ଦୂର, କଜ୍ୱଳ, ଧୂପ, ଦୀପ, ଦୁବ, ଶିଆଳି ପତ୍ର ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି ମଣ୍ଡଘରକୁ ଆସନ୍ତି ।

ପୂର୍ବଦିନ ଭଳି ନାଗମ୍ ଓ ପଧାନ ମଣ୍ଡଘରୁ ମହୁଲି ନେଇ ଗ୍ରାମଶିରିଙ୍କ ପାଖକୁ ଯାଆନ୍ତି । ଗ୍ରାମଶିରୀଙ୍କ ପିଣ୍ଡିରେ ଭୂମି ଉପରେ ମହୁଲି ମଦ ଢାଳି ନାଗମ୍, ପଧାନ ଧରମ୍ ଦେବତା, ବସୁମତୀ ମାତା ଓ ନିଜର ପିତୃପୁରୁଷ ଓ ଅନ୍ୟାନ୍ୟ ଦେବଦେବୀଙ୍କୁ ଆବାହନ କରନ୍ତି ।

ଏହା ପରେ ବାରଭାଇଙ୍କ ମଧ୍ୟରୁ ଜଣେ ବୟସ୍କ ବ୍ୟକ୍ତି ନାଗମ୍ ଓ ପଧାନଙ୍କ ହାତ ପାପୁଲିରେ ମହୁଲି ମଦ ଢାଳନ୍ତି । ନାଗମ୍ ଓ ପଧାନ ମହୁଲି ମଦକୁ ହାତରୁ ଭୂମି ଉପରେ ଢାଳି ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରନ୍ତି ।

ଗ୍ରାମଶିରିଙ୍କ ନିକଟରେ ପୂଜା କାମ ଶେଷ ହେବା ପରେ ନାଗମ୍, ପଧାନଙ୍କ ସମେତ ବାରଭାଇମାନେ ଗାଁ ମୁଣ୍ଡରେ ଥିବା 'ଶାଳଘର'କୁ ଯାଆନ୍ତି । ଗ୍ରାମଶିରିଙ୍କ ନିକଟରୁ ଶାଳ ପର୍ଯ୍ୟନ୍ତ ଜୁଆଙ୍ଗମାନେ ପଧାନ, ନାଗମ୍‌ଙ୍କୁ ବାଜା ବଜେଇ, ରୋଷଣି କରି ନେଇଥାନ୍ତି । ଶାଳଘର ନିକଟରେ ପହଞ୍ଚିବା ପରେ ସେଠାରେ ବଳକା ପୂଜା କାର୍ଯ୍ୟ ସମ୍ପନ୍ନ ହୁଏ ।

ଶାଳଘର ନିକଟରେ ନାଗମ୍ ଓ ପଧାନ ଭୂମିରେ ମାଟି ଖୋଳି ଏକ ଚୁଲି ନିର୍ମାଣ କରନ୍ତି । ଛୋଟ ଛୋଟ ଶୁଖିଲା ଶାଳକାଠ ସଂଗ୍ରହ କରନ୍ତି । ପୂର୍ବରୁ ଶାଳଘରେ ଥିବା ଏକ ଶାଳ ଗଛର କୋରଡ଼ରେ ଗୁପ୍ତରେ ଏକ ମାଟି ହାଣ୍ଡି ରଖାଯାଇଥାଏ । ନାଗମ୍ ଗଛ କୋରଡରୁ ଏହି ମାଟି ହାଣ୍ଡିଟି ବାହାର କରି ସେଥିରେ ଗାଈ ଦୁଧ ଭର୍ତ୍ତି କରି ଶାଳଘରେ ନିର୍ମାଣ କରାଯାଇଥିବା ଚୁଲିରେ ବସାନ୍ତି । ହାଣ୍ଡିରେ ଦୁଧ ସହିତ ଅରୁଆ ଚାଉଳ ପକାଇ ପଧାନ ଓ ନାଗମ୍ ତାକୁ ସାତ ଫୁଟଣା କରନ୍ତି । ସାତଫୁଟଣା ସମୟରେ ଯେଭଳି ପେଜ ଉତୁରି ତଳେ ନ ପଡ଼େ ସେଥିପ୍ରତି ଧ୍ୟାନ ରଖିବାକୁ ପଡ଼ିଥାଏ । ପେଜ ଉତୁରି ଭୂମି ଉପରେ ପଡ଼ିଗଲେ ଗାଁ ପ୍ରତି ଅମଙ୍ଗଳ ହେବ ବୋଲି ବିଶ୍ୱାସ ରହିଛି ।

ସାତଫୁଟଣା ହୋଇଯିବା ପରେ ମାଟି ହାଣ୍ଡିକୁ ତଳକୁ ଓହ୍ଲାଇ ଖିରିକୁ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ବାଢ଼ନ୍ତି । ଦେବଦେବୀ ଓ ପିତୃପୁରୁଷଙ୍କୁ ସମର୍ପଣ କରିବା ପରେ ମାଟି ହାଣ୍ଡିରେ ଯାହା ଖିରି ବଳିଥାଏ, ତାକୁ ସାତଗୋଟି ଶିଆଳି ପତ୍ରରେ ଗୁଡ଼େଇ ନାଗମ ଶାଳଗଛ କୋରଡ଼ରେ ଲୁକ୍କାୟିତ ଭାବେ ରଖି ଦିଅନ୍ତି ।

ମାଘପୋଡ଼ି ପର୍ବ ପରେ ଗାଁରେ ଆମ୍ବନୂଆଖିଆ ପାଳନ କରାଯାଉଥିବାବେଳେ ସେତେବେଳେ ଏହି ମାଟି ହାଣ୍ଡିକୁ ଶାଳଗଛ କୋରଡ଼ରୁ ବାହାର କରାଯାଇଥାଏ ।

ଶାଳଘରେ ପୂଜା ସମୟରେ ଦେବଦେବୀ ଓ ପିତୃପୁରୁଷଙ୍କୁ ମଦ ଦାନ କରାଯାଇଥାଏ । ଦେବଦେବୀ ଓ ପିତୃପୁରୁଷଙ୍କୁ ମହୁଲି ଅର୍ପଣ କରିବା ପରେ ନାଗମ, ପଧାନଙ୍କ ସମେତ ବାରଭାଇ ଓ ଅନ୍ୟାନ୍ୟ ବୟସ୍କ ଜୁଆଙ୍ଗମାନେ ଭୋଗ ଲାଗି ହୋଇଥିବା ମହୁଲି ମଦକୁ ପାନ କରିଥାନ୍ତି । ଜୁଆଙ୍ଗମାନଙ୍କର ଏହି ସମୂହ ମଦ୍ୟ ପାନକୁ 'ଜୁରିପକା' କହନ୍ତି । ଏହାପରେ ସମସ୍ତେ ଶାଳଘର ଛାଡ଼ି ପୁନର୍ବାର ଗ୍ରାମକୁ ଅର୍ଥାତ୍ ମଣ୍ଡଘରକୁ ଫେରନ୍ତି ।

### ତୃତୀୟ ଦିନ

ତୃତୀୟ ଦିନ ପିଠାଖିଆ ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ଗାଁର ସମସ୍ତ ପରିବାରଙ୍କ ପକ୍ଷରୁ ପୂଜକ (ନାଗମ୍)ଙ୍କୁ ପ୍ରଦାନ କରାଯାଇଥିବା ବୁଆ (ଧାନ), କୁଦୁ (ମାଣ୍ଡିଆ), ରୁମା (ବରୁଗୁଡ଼ି), ଜାଲି, ଗଙ୍ଗେଇ (ବାଜରା), କାଙ୍ଗୁ (ସୁଆଁ), ଜୁଆଣି (ମକା) ଆଦି ନୂତନ ଶସ୍ୟରୁ ଚାଉଳ ପ୍ରସ୍ତୁତ କରାଯାଇ ସେଥିରୁ ଚୂନା ତିଆରି ହୋଇଥାଏ । ଏହି ଚୂନାରେ ନାଗମ୍ଙ୍କର ଘର ଲୋକେ ପିଠା ପ୍ରସ୍ତୁତ କରନ୍ତି ।

ପିଠାଖିଆ ଦିନ ଗ୍ରାମର ସମସ୍ତ ପରିବାର ପିଠା କରି ନାଗମଙ୍କ ଦ୍ୱାରକୁ ନିଅନ୍ତି । ସେଠାରେ ସମସ୍ତ ପିଠାକୁ ଏକତ୍ର କରି ଗ୍ରାମବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଏ ।

ପୂର୍ବ ଦୁଇଦିନମାନଙ୍କ ଭଳି ସକାଳୁ ସକାଳୁ ନାଗମ୍ ଓ ପଧାନ ସ୍ନାନ ସାରି ହାତରେ ପୂଜା ସାମଗ୍ରୀ ଡାଲା ଧରି ଗ୍ରାମଶିରିଙ୍କ ନିକଟରେ ହାଜର ହୁଅନ୍ତି । ପୂର୍ବଦିନମାନଙ୍କ ଭଳି ବାଜା ବଜେଇ ଭୂମି ଉପରେ ପବିତ୍ର ଜଳ ସିଞ୍ଚନ କରି ନାଗମ ଓ ପଧାନଙ୍କୁ ସେମାନଙ୍କ ଘରୁ ମଣ୍ଡଘର ନିକଟକୁ ଅଣାଯାଏ । ମଣ୍ଡଘରେ ପହଞ୍ଚିବା ପରେ ନାଗମ୍ ସେଠୁ ଗ୍ରାମଶିରିଙ୍କ ନିକଟକୁ ଯାଇ ପୂଜା କାର୍ଯ୍ୟ ଆରମ୍ଭ କରନ୍ତି ।

ଏହାପରେ ନାଗମ୍ ଓ ପଧାନଙ୍କ ସମେତ ବାରଭାଇ, ସେଲାନ୍, କଙ୍ଗେରମାନେ ଗ୍ରାମ ଉପକଣ୍ଠସ୍ଥ ଏକ ଖୋଲା ସ୍ଥାନକୁ ଯାଇ ସେଠାରେ ପୂଜାପାଠ କରନ୍ତି । ଏହାକୁ 'ଦାଣ୍ଡ ପୂଜା' କହନ୍ତି । ନାଗମ୍ ସେଠାରେ ଭୂମି ଉପରେ ଗୋବର ପାଣି ଢାଳି ଭୂମିକୁ ଲେପନ କରି ଶୁଦ୍ଧ କରନ୍ତି । ଭୂମି ସଂସ୍କାର କରିବା ପରେ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଭୋଗ ଅର୍ପଣ କରନ୍ତି । ଏଠାରେ ମଧ୍ୟ ପୂର୍ବଦିନମାନଙ୍କ ଭଳି ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରାଯାଏ । ଦାଣ୍ଡ ପୂଜାରେ ଏକ ଛୋଟ କୁକୁଡ଼ା ଛୁଆ ବଳି ପକାଯାଇଥାଏ ।

ଦାଣ୍ଡ ପୂଜା ସରିଗଲା ପରେ ନାଗମ୍, ପଧାନ, ବାରଭାଇ ପୁନର୍ବାର ମଣ୍ଡଘର ନିକଟକୁ ଫେରି ଆସନ୍ତି । ସମସ୍ତେ ଗ୍ରାମଶିରିଙ୍କ ସମ୍ମୁଖ ସଦର ଦାଣ୍ଡରେ ଏକତ୍ରିତ ହୁଅନ୍ତି । ନାଗମ ଗାଁର ମଝିଦାଣ୍ଡରେ ପୂଜାପାଠ ଆରମ୍ଭ କରନ୍ତି । ସମସ୍ତେ ପୂଜାସ୍ଥଳର ଚତୁର୍ପାର୍ଶ୍ୱରେ ଘେରି ବସନ୍ତି କିମ୍ବା ଠିଆ ହୁଅନ୍ତି । ସେଠାରେ ନାଗମ୍ ଓ ପଧାନ ଧରମ୍ ଦେବତା, ବସୁମତୀ ମାତାଙ୍କ ଉଦ୍ଦେଶ୍ୟରେ ପୂଜା କରନ୍ତି ।

ନଅ ଖଣ୍ଡ ସାନ ସାନ ଶୁଖିଲା ଓ କଞ୍ଚା ଫାଳିକିଆ ଶାଳକାଠିକୁ ନାଗମ୍ ଦେବତାମାନଙ୍କ ନାମ ଉଚ୍ଚାରଣ କରି ଭୂମି ଉପରେ ଫିଙ୍ଗିଥାନ୍ତି । ଏହି ଦୁଇଫାଳ କାଠିରୁ ଗୋଟିଏ ଉପରକୁ ଓ ଅନ୍ୟଟି ତଳକୁ ମୁହଁକରି ଭୂମି ଉପରେ ପଡ଼ିଲେ ଏହା ଶୁଭ ବୋଲି ବିଚାର କରାଯାଏ । ଏହାଦ୍ୱାରା ଗାଁ ରୋଗମୁକ୍ତ ହେବା ସହିତ ଜମିରେ ଭଲ ଫସଲ ଓ ଗୃହପାଳିତ ପଶୁପକ୍ଷୀ, ଶିଶୁମାନେ ନିରୋଗ ରହିଥାନ୍ତି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ନଅ ଖଣ୍ଡ ସାନ ସାନ ଶୁଖିଲା ଓ କଞ୍ଚା ଫାଳିକିଆ କାଠି ବ୍ୟତୀତ ୭ଟି କଞ୍ଚା ପିଜୁଳି, କଣାଯୁକ୍ତ ଏକ ଗୋଲାକୃତି ଲାଉତୁମ୍ବା, ସାତଗୋଟି ଶିଆଳି ପତ୍ର, ଧୂପ, ଦୀପ, ଅରୁଆ ଚାଉଳ, ସିନ୍ଦୂର, କଜ୍ଜଳ, ହଳଦୀଗୁଣ୍ଡ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଏହି ପୂଜା କାର୍ଯ୍ୟରେ ଆବଶ୍ୟକ ହୋଇଥାଏ ।

ସଦର ଦାଣ୍ଡରେ ନାଗମ୍ ପବିତ୍ର ଜଳକୁ ସିଞ୍ଚନ କରି ଗାଁ ଦାଣ୍ଡକୁ ଶୋଧନ କରି ଦିଅନ୍ତି । ଲାଉ ତୁମ୍ବାରେ ଭର୍ତ୍ତି ଥିବା ପବିତ୍ର ପାଣିକୁ ନାଗମ୍ କିମ୍ବା ପଧାନ ସେଠାରେ ସମବେତ ହୋଇଥିବା ସେଲାନ୍, କଙ୍ଗେର ଓ ଛୋଟଛୋଟ ଶିଶୁମାନଙ୍କ ଚତୁର୍ପାର୍ଶ୍ୱରେ ସାତ ଥର ପରିକ୍ରମା କରି ଭୂମି ଉପରେ ସିଞ୍ଚନ କରନ୍ତି । ଏହା ଦ୍ୱାରା ଗାଁ ଦାଣ୍ଡ ଏବଂ ଗାଁର ସମସ୍ତ ସଦସ୍ୟମାନଙ୍କୁ ଶୁଦ୍ଧ ପବିତ୍ର କରାଯାଏ ବୋଲି ସେମାନଙ୍କର ବିଶ୍ୱାସ ରହିଛି । ଏହାକୁ 'ଗାଁ ବନ୍ଧା' କୁହାଯାଏ । ଗାଁକୁ ସୁରକ୍ଷିତ ରଖିବା ହେଉଛି 'ଗାଁ ବନ୍ଧା'ର ଉଦ୍ଦେଶ୍ୟ ।

ଗାଁ ବନ୍ଧା କାର୍ଯ୍ୟକ୍ରମରେ ନାଗମ୍, ପଧାନ ଓ ବାରଭାଇ ନିକଟସ୍ଥ ଝରଣା କିମ୍ବା ନଦୀ କୂଳକୁ ଯାଆନ୍ତି । ସେଠାରେ ପଶୁ ବଳି ଦିଆଯାଏ । ଏହାକୁ 'ଛେଦ' କୁହାଯାଏ । ଏଠାରେ ଏକାଧିକ ଛେଳି, କୁକୁଡ଼ା, ମେଣ୍ଢାମାନଙ୍କୁ ବଳି ଦିଆଯାଇଥାଏ ।

ଛେଦ କାର୍ଯ୍ୟକ୍ରମ ପୂର୍ବରୁ ନାଗମ୍ ପ୍ରଥମେ ଝରଣା କୂଳ ଭୂମିକୁ ଗୋବରରେ ଲେପନ କରି ସଂସ୍କାର କରନ୍ତି । ଏହାକୁ 'ଭୂମି ବନ୍ଧାଦକୁହାଯାଏ । ଏଠାରେ ଧରମ ଦେବତା, ବସୁମତୀ ମାତା, ପିତୃପୁରୁଷ ଏବଂ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଭୋଗ ଓ ମଦ ଅର୍ପଣ କରାଯାଏ । ଏହା ପରେ ପରେ ଛେଦ ପକାଯାଏ । ଛେଦ ପରେ ପଶୁପକ୍ଷୀଙ୍କ କଟା ମୁଣ୍ଡକୁ ନାଗମ୍ ଓ ପଧାନଙ୍କୁ ପ୍ରଦାନ କରାଯାଇଥାଏ । ଛେଦ ପଡ଼ିଥିବା ପଶୁପକ୍ଷୀଙ୍କ ମାଂସରେ ଏକ ଗୋଷ୍ଠୀ ଭୋଜନର ଆୟୋଜନ ହୋଇଥାଏ ।

ମାଘ ପୋଡ଼ି ପର୍ବ ପାଳନ ବେଳେ ଯୁବକ, ଯୁବତୀମାନେ ଚାଙ୍ଗୁ ବାଦ୍ୟ ବାହାର କରି ପ୍ରଥମ ଥର ପାଇଁ ବଜେଇ ଶୁଭାରମ୍ଭ କରିଥାନ୍ତି । ମାଘ ପୋଡ଼ି ପୂର୍ବରୁ ଚାଙ୍ଗୁ ନାଚ ଓ ଗୀତ ହୋଇ ନଥାଏ । ମାଘ ପୋଡ଼ି ପର୍ବ ପାଳନ ପରେ ହିଁ ଜୁଆଙ୍ଗମାନେ ବିଭିନ୍ନ ପ୍ରକାର ଡାଲିଜାତୀୟ ଶସ୍ୟକୁ ଖାଇବା ଆରମ୍ଭ କରନ୍ତି । ପ୍ରଥମେ ନାଗମ୍ ଖାଇବା ପରେ ଗ୍ରାମବାସୀ ଖାଆନ୍ତି ।

ତିନି ଦିନ ଧରି ପାଳନ କରାଯାଉଥିବା ମାଘପୋଡ଼ି ପର୍ବର ଉଦ୍‌ଯାପନର ପ୍ରାୟ ସପ୍ତାହ ପରେ ଗ୍ରାମର ଜୁଆଙ୍ଗମାନଙ୍କ ମଧ୍ୟରେ ଚାଷ ଜମିର ଭାଗବଣ୍ଟା ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ଦିନରେ ଗାଁ ମୁଖିଆ ପଧାନ, ପୂଜକ ନାଗମ୍, ବାରଭାଇ ଏବଂ ଅନ୍ୟାନ୍ୟ ମୁରବୀ ଶ୍ରେଣୀୟ ଜୁଆଙ୍ଗମାନେ ମଣ୍ଡଘରେ ବସି ନିଜନିଜ ମଧ୍ୟରେ ତଇଳା ଓ ଅନ୍ୟାନ୍ୟ ଭୂମି ବଣ୍ଟନ କରିଥାନ୍ତି । ଗ୍ରାମବାସୀ ନିକଟସ୍ଥ ଜଙ୍ଗଲକୁ ଯାଇ ଜଙ୍ଗଲ ସଫା କରି ନିଜନିଜର ମନ ମୁତାବକ ତଇଳା ଜମି ବାଣ୍ଟି ନେଇଥାନ୍ତି । ସମସ୍ତ ପରିବାରର ସଦସ୍ୟମାନେ ପର୍ବତ ଉପରକୁ ଯାଇ ନିରୂପଣ କରାଯାଇଥିବା ତଇଳା ଭୂମିର ସ୍ଥାନ ଚିହ୍ନଟ କରନ୍ତି ।

ଅତୀତରେ ଜୁଆଙ୍ଗ ଗ୍ରାମଗୁଡ଼ିକର ସମସ୍ତ ଭୂମି ଅର୍ଥାତ୍ ତଇଳା ଭୂମି, ଏକାନ୍ (ଚାଷ ଜମି), ଗୋଡା ଭୂମି ଏପରିକି ଘରବାଡ଼ିମାନଙ୍କରେ ମଧ୍ୟ ଜୁଆଙ୍ଗମାନଙ୍କର ବ୍ୟକ୍ତିଗତ ମାଲିକାନା ନଥିଲା । ସମସ୍ତ ଭୂମି ଗ୍ରାମର ସାମୂହିକ ସମ୍ପତ୍ତି ଥିଲା । ଗାଁ ମୁଖିଆ (ପଧାନ), ପୁରୋହିତ (ନାଗମ୍), ବାରଭାଇ ଓ ଅନ୍ୟାନ୍ୟ ପୁରୁଖା ବ୍ୟକ୍ତିମାନେ ମାଘପୋଡ଼ି ପର୍ବରେ ଏକତ୍ରିତ ହୋଇ ପରିବାର ମଧ୍ୟରେ ଭୂମି ବଣ୍ଟନ କରୁଥିଲେ । ବସତି ଓ ଗ୍ରାମଗୁଡ଼ିକ ମଧ୍ୟ ଏକ ନିର୍ଦ୍ଦିଷ୍ଟ ସମୟ ଖଣ୍ଡରେ ସ୍ଥାନାନ୍ତରିତ ହେଉଥିଲା ।

**ଆମ୍ବ ନୂଆଖିଆ ପର୍ବ**

ଜୁଆଙ୍ଗମାନେ ଶସ୍ୟ, ଡାଲି, ପନିପରିବା ଖାଇବା ପୂର୍ବରୁ ପ୍ରଥମେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଏହାକୁ ନୂଆଖିଆ କୁହାଯାଏ । ଅନୁରୂପ 'ଆମ୍ବ ନୂଆ' ପର୍ବରେ ନୂଆକରି ଫଳିଥିବା ଆମ୍ବକୁ ଖାଇବା ପୂର୍ବରୁ ପ୍ରଥମେ ତାହାକୁ ଦେବତା ଓ ପିତୃପୁରୁଷଙ୍କୁ ଅର୍ପଣ କରିଥାନ୍ତି । ମାର୍ଚ୍ଚ–ଏପ୍ରିଲ୍ ମାସ ବେଳକୁ ଜୁଆଙ୍ଗମାନେ ଆମ୍ବ ନୂଆଖିଆ ପର୍ବ ପାଳନ କରିଥାନ୍ତି ।

ଆମ୍ବ ଗଛରେ ଆମ୍ବ ସାମାନ୍ୟ ବଡ଼ ହୋଇ ଭୋଜନଯୋଗ୍ୟ ଅବସ୍ଥାକୁ ଆସିଲେ ଏହାକୁ ଦେବତାମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଇଥାଏ । ଗ୍ରାମବାସୀ ଆମ୍ବ ବଉଳ ଓ ଆମ୍ବକଷି ସଂଗ୍ରହ କରି ନାଗମ୍ (ପୂଜକ)ଙ୍କୁ ଅର୍ପଣ କରନ୍ତି । ନାଗମ୍ ସେଗୁଡ଼ିକୁ ଦେବତାମାନଙ୍କ ଉଦ୍ଦେଶ୍ୟରେ ପୂଜା କରି ଗ୍ରାମବାସୀଙ୍କୁ ବିତରଣ କରନ୍ତି । ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବା ପରେ ଜୁଆଙ୍ଗମାନେ ବିଧିବଦ୍ଧ ଭାବେ ଆମ୍ବ ଖାଇବା ଆରମ୍ଭ କରନ୍ତି । ଆମ୍ବ ନୂଆ ପର୍ବଟି ଚାରିଦିନ ଧରି ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ମଣ୍ଡାଖିଆ, ଦ୍ୱିତୀୟ ଦିନ ବାରରୁଆ, ତୃତୀୟ ଦିନ ଭାତଖିଆ ଏବଂ ଚତୁର୍ଥ ଦିନ ଆମ୍ବ ନୂଆଖିଆ କରାଯାଇଥାଏ ।

ଚତୁର୍ଥ ଦିନରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁବଳି (ଛେଦ) ଦିଆଯାଇଥାଏ । ଏହିଦିନ ନୂଆକରି ଯୁବକମାନେ (ଯେଉଁମାନେ ପୂର୍ବରୁ ମଣ୍ଡଘରର ସଦସ୍ୟତା ଗ୍ରହଣ କରି ନଥିବେ) ଗ୍ରାମ ସଂଗଠନ 'ମଣ୍ଡଘର'ର ସଦସ୍ୟତା ଗ୍ରହଣ କରିଥାନ୍ତି । ଏହି ଦିନଟି ଅବିବାହିତ ଯୁବକ, ଯୁବତୀମାନଙ୍କ ପାଇଁ ଏକ ସ୍ମରଣୀୟ ଦିବସ ଭାବେ ପରିଗଣିତ ହୋଇଥାଏ । ଯୁବକମାନେ ନୂତନ ଭାବେ ବ୍ରତ ଗ୍ରହଣ କରି 'ମଣ୍ଡଘର' (ମଜାଙ୍ଗ)ର ସଭ୍ୟ ପଦ ଗ୍ରହଣ କରନ୍ତି ।

ମଣ୍ଡଘରର ସଦସ୍ୟତା ଗ୍ରହଣ କରିଥିବା ଯୁବକମାନେ ସ୍ୱୟଂ କିମ୍ବା ନାଗମ୍‌ଙ୍କ ଦ୍ୱାରା ଟାଙ୍ଗୁ ଦେବତା 'କାଞ୍ଚୁଣୀ'ଙ୍କୁ ପୂଜା କରନ୍ତି । ଯୁବକମାନେ ଟାଙ୍ଗୁ ଦେବତାଙ୍କୁ କୁକୁଡ଼ା ଅଣ୍ଡା ଓ ପେଣ୍ଠି କୁକୁଡ଼ା ଅର୍ପଣ କରନ୍ତି । ଯୁବକମାନେ ଘୋଡ଼ା, ହାତୀ ବେଶ ଧାରଣ କରି ନୃତ୍ୟ କରନ୍ତି । ଏହାକୁ ଘୋଡ଼ାନାଚ କୁହାଯାଏ । ବିଳମ୍ବିତ ରାତିରେ ଘୋଡ଼ାନାଚର ଆୟୋଜନ କରାଯାଇଥାଏ । ଦିନବେଳା ଗ୍ରାମରେ ଭୋଜିଭାତ, ମଦପାଣି (ମହୁଲି) ଓ ନାଚଗୀତର ଆୟୋଜନ ହୋଇଥାଏ ।

### ଜୁଆଙ୍ଗଙ୍କ ଶିକାର ଯାତ୍ରା (ଅଖାଣି ପର୍ବ)

ଆମ୍ବନୂଆ ପର୍ବ ଶେଷ ହେବା କ୍ଷଣି ସାମୂହିକ ଶିକାର (ଅଖାଣି ପର୍ବ)ର ଆୟୋଜନ କରାଯାଏ । ଦ୍ରୁତ ଜଙ୍ଗଲ କ୍ଷୟ ଓ ଜଙ୍ଗଲ ବିଭାଗର କଟକଣା କାରଣରୁ ଶିକାର ଯାତ୍ରା ଆଉ ପୂର୍ବଭଳି ହେଉନାହିଁ । ମାତ୍ର ପ୍ରତୀକାତ୍ମକ ଭାବେ ଏହାକୁ ପାଳନ କରାଯାଉଛି ।

ଶିକାର ପର୍ବ ପାଳନ ନେଇ ପୂର୍ବରୁ ପଧାନ, ନାଗମ୍ ଓ ବାରଭାଇ ମଜାଙ୍ଗରେ ବସି ଦିନ ଧାର୍ଯ୍ୟ କରିଥାନ୍ତି । ଶିକାର ଯାତ୍ରାର ପୂର୍ବଦିନ ସନ୍ଧ୍ୟାରେ ପୂଜକ (ନାଗମ) ପ୍ରତି ଘରୁ ଧନୁ, ତୀର ବର୍ଚ୍ଛା ଓ ଅନ୍ୟାନ୍ୟ ଶିକାର ସାମଗ୍ରୀ ସଂଗ୍ରହ କରି ମଣ୍ଡଘରେ ଏକତ୍ରିତ କରି ରଖନ୍ତି । ଏହାପରେ ଏ ସମସ୍ତ ଅସ୍ତ୍ରଶସ୍ତ୍ରକୁ ନାଗମ୍ ପୂଜା କରି ଶିକାର ପାଇଁ ଅନୁକୂଳ କରନ୍ତି । ଏହି ଅବସରରେ ମଣ୍ଡଘର ସାମ୍ନାରେ ଗ୍ରାମଶିରିଙ୍କ ନିକଟରେ ଜୁଆଙ୍ଗମାନେ ଏକତ୍ର ହୋଇ ନିଜନିଜର ପିତୃପୁରୁଷ ଓ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା ଲାଗି କରନ୍ତି ।

ପରଦିନ ଶିକାର ଯାତ୍ରାରେ ସାମିଲ ହେବାକୁ ଥିବା ପ୍ରତି ସଦସ୍ୟ ନିଜ ସାଥୀରେ ଅସ୍ତ୍ରଶସ୍ତ୍ର ସହିତ ଗୋଟିଏ ଗୋଟିଏ କୁକୁଡ଼ା ସଂଗ୍ରହ କରି ସାଥୀରେ ନେଇଥାନ୍ତି । ନାଗମ୍ ଏ ଯାତ୍ରାର ନେତୃତ୍ୱ ନିଅନ୍ତି । ଗାଁର ସ୍ତ୍ରୀଲୋକମାନେ ଘର ମଧ୍ୟରେ କବାଟ କିଳି ରହିଥାନ୍ତି । ଯେଉଁ ଜୁଆଙ୍ଗ ମହିଳା ଋତୁବତୀ ହୋଇଥାଏ, ତା' ସ୍ୱାମୀକୁ ଏ ଶିକରା ଯାତ୍ରାରେ ସାମିଲ ହେବାକୁ ବାରଣ କରାଯାଇଥାଏ ।

ଜୁଆଙ୍ଗମାନେ ଗ୍ରାମରୁ ବାହାରିଯାଇ ଜଙ୍ଗଲରେ ପ୍ରବେଶ କଲାମାତ୍ରେ ନାଗମ୍ ଜଙ୍ଗଲ ମଧ୍ୟରେ ଏକ ଭୂମିକୁ ସଫା କରି ଗୋବର ପାଣିରେ ଶୋଧନ କରନ୍ତି । ଭୂମି ସଂସ୍କାର ହେବା ପରେ ନାଗମ ସେଠାରେ ମାଟିରେ ଏକ ଛୋଟ ବେଦୀ ବା ମଣ୍ଡପ ନିର୍ମାଣ କରନ୍ତି । ବେଦୀ ଉପରେ ନାଗମ୍ ହଳଦୀଗୁଣ୍ଡ ଓ ଚାଉଳ ଚୂନାରେ ମୁରୁଜ ପକାନ୍ତି । ନାଗମ୍ ଦୁଇଖଣ୍ଡ ବଡ଼ ଶିଶୁକାଠ ଓ ଦୁଇଖଣ୍ଡ ଶାଳକାଠ ବେଦୀର ଉଭୟ ପାର୍ଶ୍ୱରେ ପୋତି ଦିଅନ୍ତି । ପରେ ଜୁଆଙ୍ଗମାନେ ସାଥୀରେ ଆଣିଥିବା ସମସ୍ତ ଅସ୍ତ୍ରଶସ୍ତ୍ରକୁ ବେଦୀ ନିକଟରେ ରଖନ୍ତି । ଜୁଆଙ୍ଗ ଯୁବକମାନେ ସାଥୀରେ ଆଣିଥିବା କୁକୁଡା କିମ୍ବା କୁକୁଡ଼ା ଛୁଆଗୁଡ଼ିକୁ ନାଗମ୍ ଜଙ୍ଗଲ ଠାକୁରାଣୀ ବନଦୁର୍ଗା ଏବଂ ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପୂଜା କରି ବଳି ଚଢ଼ାଇଥାନ୍ତି ।

କୁକୁଡ଼ା ରକ୍ତକୁ ନାଗମ୍ ବେଦୀ ନିକଟରେ ରଖାଯାଇଥିବା ଅସ୍ତ୍ରଶସ୍ତ୍ରରେ ସିଞ୍ଚନ କରନ୍ତି । ପୂଜା କାମ ଶେଷ ହେଲା ପରେ ନାଗମ୍ ସେଠାରେ ପୋତାଯାଇଥିବା ଶାଳକାଠ ଦୁଇଖଣ୍ଡକୁ ଶୂନ୍ୟରେ ଫିଙ୍ଗି ଦିଅନ୍ତି । ଯଦି ଶାଳକାଠ ଦୁଇଖଣ୍ଡ ଅସଜଡ଼ା ହୋଇ ଭୂମି ଉପରେ ପଡ଼େ ତେବେ ଏହା ଶୁଭ ସୂଚନା ବୋଲି ନାଗମ୍ ଘୋଷଣା କରନ୍ତି । ପୂଜା ପରେ ନାଗମ୍ ଅସ୍ତ୍ରଶସ୍ତ୍ରଗୁଡ଼ିକୁ ଯୁବକମାନଙ୍କୁ ଫେରାଇ ଦିଅନ୍ତି ।

ଜୁଆଙ୍ଗ ଯୁବକମାନେ ଜଣଜଣ କରି ଶିଶୁ କାଠ ପୋତା ଯାଇଥିବା ସ୍ଥାନକୁ ଡେଇଁ ଆଗକୁ ମାଡ଼ି ଚାଲନ୍ତି । ଶିକାର ଯାତ୍ରାର ନେତୃତ୍ୱ ନେଉଥିବା ଜୁଆଙ୍ଗ ଯୁବକ (କଙ୍ଗେର)ଟି ଯଦି ଝୁଣ୍ଟି ପଡେ ତା' ପଛରେ ଥିବା ଅନ୍ୟ ଜୁଆଙ୍ଗମାନେ ତାକୁ ଧରି ନେଇ ତାକୁ ସମ୍ବର ବୋଲି ବଡ଼ ପାଟିରେ ଘୋଷଣା କରନ୍ତି । ଜଣେ ଜୁଆଙ୍ଗ ତା'ର କାନ ଧରି ତାକୁ ଏହା ସତ୍ୟ ନା ମିଥ୍ୟା ବୋଲି ପଚାରେ । ଭୂମି ଉପରେ ଝୁଣ୍ଟି ପଡ଼ିଥିବା କଙ୍ଗେରଟି ଏହା ସତ୍ୟ ବୋଲି କହିବା ପରେ ସମସ୍ତ ଜୁଆଙ୍ଗ ଶିକାର ଯାତ୍ରାରେ ଜଙ୍ଗଲ ମଧ୍ୟକୁ ଯାଆନ୍ତି ।

ଯେଉଁ ଯୁବକଟି ପ୍ରଥମେ ପଶୁ ଶିକାର କରିବାରେ ସମର୍ଥ ହୁଏ, ତାକୁ ଅନ୍ୟ ଜୁଆଙ୍ଗମାନେ 'ରାଜା' ବୋଲି ସମ୍ବୋଧନ କରନ୍ତି । ସେହି ରାଜାର ଗଳାରେ ଏକ ଫୁଲ ହାର ପିନ୍ଧାଇ ଅନ୍ୟ ଯୁବକମାନେ କାନ୍ଧରେ ବସାଇ ଜଙ୍ଗଲ ମଧ୍ୟରେ ବୁଲାନ୍ତି । ଏହାପରେ ଜୁଆଙ୍ଗମାନେ ମୃତ ପଶୁର ଶରୀରକୁ ବୋହି ଝରଣା କୂଳକୁ ନିଅନ୍ତି । ସେଠାରେ ପଶୁଟିକୁ କାଟି ମାଂସ ପ୍ରସ୍ତୁତ କରାଯାଏ ଏବଂ ମାଂସକୁ ଭାଗ କରି ସମସ୍ତେ ନିଅନ୍ତି । ମାତ୍ର 'ରାଜା'କୁ ଏକ ବଡ଼ଭାଗ ପ୍ରଦାନ କରାଯାଇଥାଏ । ଯଦି ପଶୁଟି ମାଈ ହୋଇଥାଏ, ତେବେ ତାର ସ୍ତନ ଦୁଇଟି ଏବଂ ଯଦି ପଶୁଟି ପୁରୁଷ ହୋଇଥାଏ, ତେବେ ତା'ର ଅଣ୍ଡକୋଷକୁ ରାଜାକୁ ଦିଆଯାଇଥାଏ ।

### ଅକ୍ଷି ତୃତୀୟା (ତିର୍ତିୟା)

ଅକ୍ଷି ତୃତୀୟ (ତିର୍ତିୟା) ଏକ କୃଷିଭିତ୍ତିକ ପର୍ବ । ଏହି ପର୍ବ ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା ଦିନ ପାଳନ କରାଯାଇଥାଏ । ଜୁଆଙ୍ଗମାନେ ଏ ପର୍ବଟିକୁ ଦୁଇ ଦିନ ଧରି ପାଳିଥାନ୍ତି ।  ଅକ୍ଷି ତୃତୀୟା ପର୍ବକୁ ଜୁଆଙ୍ଗମାନେ 'ମୁଠି ଛୁଆଁ' କହିଥାନ୍ତି । ତିର୍ତିୟା ଦିନ ମୁଠି ଅନୁକୂଳ କରିବା ପରେ ଜୁଆଙ୍ଗମାନେ ଚାଷ କାର୍ଯ୍ୟ ଆରମ୍ଭ କରିଥାନ୍ତି । ଅକ୍ଷି ତୃତୀୟା ପରେ ପରେ ବର୍ଷା ଉପରେ ନିର୍ଭର କରି ଜୁଆଙ୍ଗମାନେ କୃଷି କାର୍ଯ୍ୟକୁ ଆଗକୁ ବଢ଼େଇଥାନ୍ତି ।

ନାଗମ୍‌ଙ୍କ ଘରୁ ସଂଗୃହୀତ ଧାନକୁ ଗ୍ରାମଶିରିଙ୍କ ନିକଟରେ ପୂଜା କରିବା ପରେ ଏହାକୁ ପ୍ରତି ଜୁଆଙ୍ଗ ଘରକୁ ଗୋଟିଏ ଗୋଟିଏ ଚୌପତି (ଦନା)ରେ ଭାଗ କରାଯାଇ ପ୍ରଦାନ କରାଯାଏ । ଜୁଆଙ୍ଗମାନେ ଏହି ଧାନକୁ ନେଇ ନିଜ ଘରେ ଥିବା ଧାନ ସହ ମିଶେଇ ଅଖି ମୁଠି ଅନୁକୂଳ କରିବାକୁ କ୍ଷେତକୁ ଯାଆନ୍ତି । ପ୍ରଥମ ଦିନରେ ଧାନ (ଲକ୍ଷ୍ମୀ ଦେବୀ)ଙ୍କୁ ଆବରଣ କରି ଗ୍ରାମଶିରିଙ୍କ ନିକଟକୁ ଆଣିଥାନ୍ତି । ଯୁବକମାନେ ପାଳରେ ଦୁଇଟି ଆଉଳିଆ (ଓଳିଆ) ନିର୍ମାଣ କରନ୍ତି । ନାଗମଙ୍କ ଘରୁ ଅଣାଯାଇଥିବା ପବିତ୍ର ଧାନକୁ ଏହି ଦୁଇ ଓଳିଆରେ ଭର୍ତ୍ତି କରାଯାଏ । ଏହି ଦୁଇ ଓଳିଆକୁ ଗାଁ ଦୁଇ ମୁଣ୍ଡରେ ଥିବା ଗଛର କୋରଡ଼ରେ ରଖାଯାଏ । ପରେ ନାଗମ୍ ଓ ପଧାନ ଏ ସ୍ଥାନକୁ ଯାଇ ଓଳିଆ ଦୁଇଟିକୁ ପୁନର୍ବାର ଗ୍ରାମଶିରିଙ୍କ ନିକଟକୁ ଆଣନ୍ତି । ଏହାକୁ 'ଦୁଆ ଆବରଣ' କହନ୍ତି ।

ଦ୍ୱିତୀୟ ଦିନ ମୁଠି ଅନୁକୂଳ କରାଯାଇଥାଏ । ପ୍ରଥମେ ନାଗମ୍ ନିଜ କ୍ଷେତକୁ ଯାଇ ମୁଠି ଅନୁକୂଳ କରିବା ପରେ ଗ୍ରାମର ଅନ୍ୟାନ୍ୟ ଲୋକେ ନିଜନିଜର କ୍ଷେତକୁ ଯାଇ ମୁଠି ଅନୁକୂଳ କରନ୍ତି ।

### ରଜ ପର୍ବ

ରଜ ପର୍ବ ଜୁଆଙ୍ଗମାନଙ୍କ ସାମାଜିକ ଜୀବନକୁ ଅଧିକ ମାତ୍ରାରେ ପ୍ରଭାବିତ କରିଥାଏ । ରଜ ପର୍ବ ପାଳନ ଅବସରରେ ଜୁଆଙ୍ଗ ପୁରପଲ୍ଲୀ ଉତ୍ସବମୁଖର ହୋଇଉଠେ । ସବୁଠି ଦୋଳି ଖେଳ ଓ ଦୋଳିଗୀତର ଆସର ଜମିଥାଏ । ଜୁଆଙ୍ଗ ଯୁବତୀମାନେ ଦୋଳି ଖେଳିବା ସାଙ୍ଗକୁ ରଜଗୀତ ଗାଇ ଖୁସି ମନେଇଥାନ୍ତି ।

ରଜ ପର୍ବଟି ଏକ ଗ୍ରାମ୍ୟ କୃଷିଭିତ୍ତିକ ପର୍ବ । ଗ୍ରୀଷ୍ମର ଅବସାନ ଓ ବର୍ଷାର ଆଗମନ ମଧ୍ୟରେ ମିଥୁନ ସଂକ୍ରାନ୍ତିକୁ ହିଁ ରଜ ସଂକ୍ରାନ୍ତି ଭାବେ ପାଳନ କରାଯାଇଥାଏ । ସାଧାରଣତଃ ରଜପର୍ବ ତିନି ଦିନ ବ୍ୟାପୀ ଚାଲେ । ଯୁବକମାନେ ରଜଦୋଳି ପ୍ରସ୍ତୁତ କରନ୍ତି । ଦୋଳି ତିଆରି ଶେଷ ହେବା ପରେ ଦୋଳି ପୂଜା ହୋଇଥାଏ । ଗାଁର କୁମାରୀମାନେ ରଜପିଠା ନେଇ ଦୋଳି ପାଖକୁ ଯାଆନ୍ତି । ତିନିଦିନ ଧରି ଜୁଆଙ୍ଗ ଝିଅମାନେ ବିଭିନ୍ନ ଅଞ୍ଚଳ ବୁଲନ୍ତି । ଏହି ସମୟରେ ଝିଅବୋହୂମାନେ କାମଧନ୍ଦା କରନ୍ତି ନାହିଁ କି ଜଙ୍ଗଲ ଯାଆନ୍ତି ନାହିଁ ।

ପୃଥିବୀ ମାତାଙ୍କୁ ପୂଜା କରାଯାଉଥିବାରୁ ଜୁଆଙ୍ଗମାନେ ମାଟି ଖୋଳନ୍ତି ନାହିଁ । ଶେଷ ଦିନରେ ଜୁଆଙ୍ଗ ଝିଅବୋହୂମାନେ ରଜକୁ ବିଦାୟ ଦେଇଥାନ୍ତି । ଗାଁ ଝିଅମାନେ ବରକନ୍ୟା ବସନ୍ତି । ତା'ପରେ ଶବର, ଶବରୁଣୀ ନାଚ ଅନୁଷ୍ଠିତ ହୋଇଥାଏ । ରଜ ବିଦାୟ ଉତ୍ସବରେ ପୁରୁଷମାନେ ଅଂଶଗ୍ରହଣ କରନ୍ତି ନାହିଁ ।

ରଜ ତିନି ଦିନ କୃଷି କାର୍ଯ୍ୟ ହୋଇ ନଥାଏ । ଏହି ସମୟରେ ପୃଥିବୀମାତା ରଜୋବତୀ ହୋଇଥିବାରୁ ମାଟି

ଖୋଲା ହୋଇ ନଥାଏ । ଧରିତ୍ରୀ ରଜୋବତୀ ହେଉଥିବା କାରଣରୁ ଜୁଆଙ୍ଗମାନେ ଖାଲି ପଦାରେ ଭୂମି ଉପରେ ଚାଲନ୍ତି ନାହିଁ । ଗ୍ରାମର ଯୁବତୀମାନେ କଦଳୀପଟୁଆ, ଗୁଆ ଖୋଳପା ଆଦି ପାଦରେ ବାନ୍ଧି ଭୂମି ଉପରେ ଚାଲନ୍ତି । ଶବର–ଶବରୁଣୀ ନୃତ୍ୟ ମାଧ୍ୟମରେ ପ୍ରକୃତି ଓ ପୁରୁଷର ମିଳନରେ ଶସ୍ୟଶ୍ୟାମଳା ଧରିତ୍ରୀ କାମନା କରନ୍ତି । ରଜ ଅବସରରେ ଜୁଆଙ୍ଗ ଯୁବତୀମାନଙ୍କୁ ଶିଳରେ ବାଟଣ ବାଟିବା, ପରିବା କାଟିବା ଆଦି ମନା ହୋଇଥାଏ ।

ଶେଷ ଦିନ ବସୁମତୀ ଗାଧୁଆ କରାଯାଇଥାଏ । ଧରମ ଦେବତାଙ୍କ ପରେ ବସୁମତୀ ମାତା ହେଉଛନ୍ତି ଜୁଆଙ୍ଗମାନଙ୍କର ଆରାଧ୍ୟ ଦେବୀ । ଏଣୁ ବସୁମତୀ ମାତାଙ୍କୁ ଆରାଧନା କରିବା ପାଇଁ ଜୁଆଙ୍ଗମାନେ ରଜପର୍ବ ପାଳନ କରିଥାନ୍ତି ।

### ଅଷାଢ଼ି ପର୍ବ (ବାଙ୍ଗୁରୁ ଅବ)

କୁସୁମ (ବାଙ୍ଗୁରୁ) ଗଛଟି ଜୁଆଙ୍ଗ ଜନଜୀବନ ସହିତ ଓତପ୍ରୋତ ଭାବେ ଜଡ଼ିତ । କୁସୁମ ଗଛଟିକୁ ଜୁଆଙ୍ଗମାନେ ମିତ୍ର ଭଳି ଦେଖିଥାନ୍ତି । ଏହାକୁ ଏକ ଦେବ ବୃକ୍ଷ ଭାବେ ଜୁଆଙ୍ଗମାନେ ପୂଜା କରିଥାନ୍ତି । କୁସୁମ ଫଳ, କୁସୁମ ତେଲ, କୁସୁମ ଗଛର ଛାଲି, ଚେର, ପତ୍ର ଜୁଆଙ୍ଗମାନଙ୍କ ପାଇଁ ଅତି ଉପଯୋଗୀ ହୋଇଥାଏ ।

ବର୍ଷା ଦିନ ଆରମ୍ଭରେ କୁସୁମ ଫଳ ପାଚିଥାଏ । ଫଳ ଖାଇବା ପୂର୍ବରୁ ଜୁଆଙ୍ଗମାନେ ନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିଥାନ୍ତି । କୁସୁମ ନୂଆଖିଆ ପର୍ବକୁ ଜୁଆଙ୍ଗମାନେ ଅଷାଢ଼ି ପର୍ବ ଭାବେ ପାଳନ କରନ୍ତି । ଆଷାଢ଼ ମାସରେ ଏହି ପର୍ବ ପାଳନ ହେଉଥିବାରୁ ଏହାର ନାମ ଆଷାଢ଼ି ପର୍ବ ହୋଇଛି ।

ଏହି ପର୍ବରେ ଜୁଆଙ୍ଗମାନେ କୁସୁମ, ଆମ୍ବଷଢ଼ା, ଆମ୍ବୁଲ ଆଦି ଖାଦ୍ୟଦ୍ରବ୍ୟ ଦେବଦେବୀ ଓ ପିତୃପୁରୁଷଙ୍କୁ ଅର୍ପଣ କରିବା ପରେ ନିଜେ ଖାଇଥାନ୍ତି । ଏହି ପର୍ବଟି ଏକ କୃଷିଭିତ୍ତିକ ପର୍ବ । ଭଲ ଫସଲ ଓ ବର୍ଷା ଉଦ୍ଦେଶ୍ୟରେ ଏହି ପର୍ବ ପାଳନ କରଯାଇଥାଏ । ଏହି ପର୍ବ ପାଳନ ପରେ ପରେ ଜୁଆଙ୍ଗମାନେ ଚାଷ କାର୍ଯ୍ୟ ଆରମ୍ଭ କରିଥାନ୍ତି । ବିଶେଷକରି ପାହାଡ଼ିଆ ଉଚ୍ଚଭୂମିମାନଙ୍କରେ ଧାନ, ରାଶି, ସୋରିଷ, ମାଣ୍ଡିଆ, କାଙ୍ଗୁ, ଗଙ୍ଗେଇ ଆଦି ମଞ୍ଜି ବୁଣାଯାଇଥାଏ ।

ଆଷାଡ଼ି ପର୍ବଟି ଆଷାଢ଼ ମାସର ଯେକୌଣସି ଦିନରେ ପାଳିତ ହୋଇଥାଏ । ଏଥିପାଇଁ କିଛି ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ ହୋଇ ନଥାଏ । ପର୍ବ ପାଳନ ପୂର୍ବରୁ ପଧାନ, ନାଗମ୍ ଓ ବାରଭାଇ ମଣ୍ଡଘରେ ବସି ପ୍ରସ୍ତୁତି କରିଥାନ୍ତି ।

ଆଷାଢ଼ି ପର୍ବରେ ଗ୍ରାମଶିରି କିମ୍ବା ଗାଁ ଉପକଣ୍ଠରେ ଥିବା ଶାଳ (ଗ୍ରାମଦେବୀ)ଙ୍କ ନିକଟରେ ଘୁଷୁରି ଓ କୁକୁଡ଼ା ବଳି ପଡ଼ିଥାଏ । ଆଷାଢ଼ି ପର୍ବ ପରେ ଧାନ ବେହୁଡ଼ା ହୁଏ । ଆଷାଢ଼ି ପର୍ବ ଦୁଇଦିନ ଧରି ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ବାରରୁଆ ଏବଂ ଦ୍ୱିତୀୟ ଦିନ ଛେଦ ପକା କାର୍ଯ୍ୟକ୍ରମ ହୋଇଥାଏ ।

ଦ୍ୱିତୀୟ ଦିନ ନାଗମ୍ ଓ ପଧାନ ସ୍ନାନ ସାରି ଘରେ ଅପେକ୍ଷା କରିଥାନ୍ତି । ଜୁଆଙ୍ଗ ଯୁବକମାନେ ବାଜା ବଜେଇ ରୋଷଣି କରି ଏ ଦୁହିଁଙ୍କୁ ମଣ୍ଡଘର ଓ ଗ୍ରାମଶିରି ନିକଟକୁ ଆଣନ୍ତି । ନାଗମ୍ ଏକ ବାଉଁଶ ଡାଲାରେ କିଛି କୁସୁମ ଫଳ, ଆମ୍ବଷଢ଼ା, ଆମ୍ବୁଲ, ଶାଳପତ୍ର, ଶିଆଳି ପତ୍ର, ଧୂନ, ଦୀପ, ଅରୁଆ ଚାଉଳ, କ୍ଷୀର, ହଳଦୀ, ସିନ୍ଦୂର ଆଦି ପୂଜା ସାମଗ୍ରୀ ପ୍ରସ୍ତୁତ କରି ମଣ୍ଡଘରେ ପହଞ୍ଚନ୍ତି ।

ପଧାନ ନିଜ ଘରୁ ପାଟଖଣ୍ଡା ଧରି ଗାଁ ଶାଳକୁ ଯିବାକୁ ପ୍ରସ୍ତୁତ ହୁଅନ୍ତି । ଗ୍ରାମଶିରିଙ୍କ ନିକଟରେ ଯଥାବିଧି ପୂଜା ହେଲା ପରେ ସେମାନେ ଗ୍ରାମ ଶାଳକୁ ଯାଆନ୍ତି । ନାଗମ୍, ପଧାନ ଓ ବାରଭାଇ ପୂଜା ସାମଗ୍ରୀ ଧରି ଗାଁ ଶାଳକୁ ଯିବା ବେଳେ ଗ୍ରାମର କେତେକ ଯୁବକ ଏକ ଠେଙ୍ଗାରେ ଘୁଷୁରିର ଚାରିଗୋଡ଼କୁ ବାନ୍ଧି ନିଜନିଜର ଚାଷ ଜମିକୁ ନେଇଥାନ୍ତି । ଯୁବକମାନେ ଘୁଷୁରିକୁ କାନ୍ଧରେ ବୋହି ବୋହି ଚାଷ ଜମିର ଚତୁର୍ପାର୍ଶ୍ୱରେ ପରିକ୍ରମା କରନ୍ତି । ଏହି ପରିକ୍ରମା ଅନେକ ସମୟ ନେଇଥାଏ ।

ପ୍ରତି ଜୁଆଙ୍ଗର ଚାଷ ଜମି ଚାରିକଡ଼େ ଘୁଷୁରି ବୁଲାଇବା ବାଧ୍ୟତାମୂଳକ ହୋଇଥାଏ । ଏପରି କଲେ

ଭଲ ଫସଲ ହେବ ବୋଲି ଜୁଆଙ୍ଗମାନଙ୍କର ବିଶ୍ୱାସ ରହିଛି । ଚାଷ ଜମି ପରିକ୍ରମା କରିବା ପରେ ଘୁଷୁରିକୁ ଶାଳ ନିକଟକୁ ଅଣାଯାଏ ଏବଂ ପରେ ଏହାକୁ ଛେଦ ପକାଯାଏ ।

ନାଗମ୍ ଓ ପଧାନ ଶାଳ ନିକଟରେ ପହଞ୍ଚିବା ପରେ ପୂଜା କାର୍ଯ୍ୟ ଆରମ୍ଭ ହୁଏ । ଶାଳଘର ପରିସରରେ ଏକ ଚୁଲି ଥାଏ ଏବଂ ଶାଳ ଗଛ କୋରଡ଼ରେ ପୂର୍ବରୁ ଏକ ମାଟି ହାଣ୍ଡି ରଖାଯାଇଥାଏ । ନାଗମ୍, ପଧାନ ଛୋଟ ଛୋଟ ଶୁଖିଲା ଶାଳକାଠ ସଂଗ୍ରହ କରନ୍ତି । ପଧାନ ଗଛ କୋରଡ଼ରୁ ମାଟି ହାଣ୍ଡିକୁ ବାହାର କରି ସେଥିରେ ଗାଈଦୁଧ, ପାଣି, ଅରୁଆ ଚାଉଳ ପକେଇ ସାତ ଫୁଟଣା କରନ୍ତି । ସାତଥର ଫୁଟିବା ପରେ ମାଟି ହାଣ୍ଡିକୁ ତଳକୁ ଓହ୍ଲାଇ ଭାତକୁ ସାତଗୋଟି ଶିଆଳି ପତ୍ରରେ ଦେବଦେବୀ ଓ ପିତୃପୁରୁଷଙ୍କ ଆତ୍ମା ଉଦ୍ଦେଶ୍ୟରେ ବାଢନ୍ତି । ଏଠାରେ ପିତୃପୁରୁଷଙ୍କୁ ଭାତ ପିଣ୍ଡଦାନ କରାଯାଏ ।

ଶାଳଘରେ 'ଭାତଖିଆ' ପୂଜା ସମୟରେ ଦେବଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମହୁଲି ମଦ ଦାନ କରାଯାଏ । ଗ୍ରାମର ଯୁବକମାନେ ଘୁଷୁରିକୁ ବିଲ ପରିକ୍ରମା କରି ଶାଳ ଘର ନିକଟରେ ପହଞ୍ଚନ୍ତି । ପ୍ରଥମେ ଘୁଷୁରି ମୁଣ୍ଡରେ ସିନ୍ଦୂର ଲଗାଇ ଅରୁଆ ଚାଉଳ (ଆକତା) ଖାଇବାକୁ ଦିଆଯାଏ । ଘୁଷୁରିଟି ଅରୁଆ ଚାଉଳ ଖାଇଲେ ଗାଁର ସବୁ ମଙ୍ଗଳ ବୋଲି ନାଗମ କହିଥାଏ । ଯଦି ଘୁଷୁରି ଅରୁଆ ଚାଉଳ ନ ଖାଏ, ତେବେ ଗ୍ରାମ ପ୍ରତି ବିପଦ ଅଛି ବୋଲି ନାଗମ୍ ପ୍ରକାଶ କରେ । ଘୁଷୁରି ଅରୁଆ ଚାଉଳ ଖାଇବା ପରେ ତାକୁ ସେଠାରେ ଛେଦ ପକାଯାଏ । ଏହାପରେ ସମସ୍ତେ ପୁନର୍ବାର ଗାଁର ମଣ୍ଡଘରକୁ ଫେରନ୍ତି ଏବଂ ସେଠାରେ ସମୂହ ମହୁଲି ମଦ ପାନ (ଜୁରି ପକା) କାର୍ଯ୍ୟକ୍ରମର ଆୟୋଜନ ହୋଇଥାଏ ।

### ପିଢ଼ ପୂଜା

ଜୁଲାଇ–ଅଗଷ୍ଟ ମାସ ବେଳକୁ ଜୁଆଙ୍ଗମାନେ ପିଢ଼ ପୂଜା କରନ୍ତି । ଫସଲ ଭଲ ଅମଳ ହେବା ଏବଂ ତଇଳାରେ ଫସଲର ସୁରକ୍ଷା ନିମନ୍ତେ ଜୁଆଙ୍ଗମାନେ ଏ ପୂଜା କରନ୍ତି । ଚାଷଜମିରେ ଫସଲ ପାଚିଗଲା ପରେ ଏହାର ସୁରକ୍ଷା ନିମନ୍ତେ ଜୁଆଙ୍ଗମାନେ ଅଧିକ ତତ୍ପର ହୋଇ ଉଠନ୍ତି । ଜୁଆଙ୍ଗମାନଙ୍କର ଚାଷଜମି ନିଜ ବାସଗୃହ ଏବଂ ଗ୍ରାମଠାରୁ ଦୂରରେ ଥିବାରୁ ବାର୍ହା, ଭାଲୁ, ହାତୀ ଭଳି ଜଙ୍ଗଲୀ ପଶୁ ଏବଂ ନାନା ପ୍ରକାର ପାପ ଆତ୍ମାମାନଙ୍କ କବଳରୁ ଫସଲକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ପିଢ଼ ପୂଜା କରିଥାନ୍ତି । ବିଶେଷକରି ମୂଷା ଓ ହାତୀ ଦାଉରୁ ଫସଲକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ପିଢ଼ ପୂଜାର ଆୟୋଜନ କରିଥାନ୍ତି । ଏହି ପୂଜା ଏକାନ୍ (ଚାଷଜମି) କିମ୍ବା ତଇଳାରେ ହୋଇଥାଏ ।

ପିଢ଼ ପୂଜା ମାତ୍ର ଗୋଟିଏ ଦିନ ପାଳିତ ହୋଇଥାଏ । ରାଉଳିଆ (ତାନ୍ତ୍ରିକ) ଏ ପୂଜା କାର୍ଯ୍ୟ ସମାପନ କରିଥାନ୍ତି । ଯେଉଁ ଗାଁର ନାଗମ୍ (ପୂଜକ) ନିଜେ ଗୁଣିଗାରେଡ଼ି କାମ କରୁଥାନ୍ତି, ସେ ଏହି ପୂଜା କରିଥାନ୍ତି ।

ଅନ୍ୟ ପର୍ବମାନଙ୍କ ଭଳି ପିଢ଼ ପୂଜାରେ ଜୁଆଙ୍ଗ ଯୁବକମାନେ ରାଉଳିଆକୁ ଗ୍ରାମଶିରିଙ୍କଠାରୁ ଏକାନ୍ ପର୍ଯ୍ୟନ୍ତ ବାଜା ବଜେଇ, ରୋଷଣି କରି ନେଇଥାନ୍ତି । ରାଉଳିଆ ଏକ ଡାଲାରେ ଧୂପ, ଦୀପ, ଅରୁଆ ଚାଉଳ, ସିନ୍ଦୂର, ହଳଦୀ, ଶିଆଳି ପତ୍ର, ଗୁଡ଼, କ୍ଷୀର, କଦଳୀ ଏବଂ ଅନ୍ୟାନ୍ୟ ପୂଜା ସାମଗ୍ରୀ ସାଥୀରେ ଧରି ନେଇଥାନ୍ତି ।

ରାଉଳିଆ ଏକାନ୍‌ରେ ପହଞ୍ଚି ନିଜର ତନ୍ତ୍ରବିଦ୍ୟାର ପ୍ରୟୋଗ କରି ସାଥୀରେ ଗାଁରୁ ଡାଲାରେ ନେଇଥିବା ଧାନକୁ ମନ୍ତୁରେଇ ଦୁଇ ଜଣ ଯୁବକଙ୍କ ହାତରେ ଦୁଇ ମୁଠା ଦେଇଥାନ୍ତି । ଦୁଇ ଜଣ ଜୁଆଙ୍ଗ ଯୁବକ ହାତ ମୁଠାରେ ମନ୍ତୁରା ଧାନ ଧରି ଏକାନ୍‌ର କଡ଼େ କଡ଼େ ବୁଣି ବୁଣି ଚାଲନ୍ତି । ଶେଷରେ ଯେଉଁ ସ୍ଥାନରେ ପୂଜା କାର୍ଯ୍ୟ ହେଉଥାଏ, ପୁଣି ସେଠାରେ ଉପସ୍ଥିତ ହୁଅନ୍ତି ।

ବାର୍ହା ଗଡ଼ର ଶ୍ରୀଧର ଜୁଆଙ୍ଗଙ୍କ କହିବା ଅନୁଯାୟୀ, ରାଉଳିଆ ଏମିତି ମନ୍ତ୍ରତନ୍ତ୍ର କରନ୍ତି ଯେ, ହାତୀ ଫସଲ କିଆରିକୁ ଆସିଲେ ମଧ୍ୟ ଧାନ ନଖାଇ ଫେରି ଯାଆନ୍ତି । ସେମାନଙ୍କୁ ଧାନ ପିତା ଲାଗେ ଓ ନଖାଇ ଫେରି ଯାଆନ୍ତି । ସେହିଭଳି ବାର୍ହା କିମ୍ବା ମୂଷାମାନେ

ମଧ୍ୟ ପିତା ଲାଗିବା କାରଣରୁ ଧାନ ଖାଆନ୍ତି ନାହିଁ । ଏହା ସହିତ ଏକାନର ଚାରିକଡ଼େ ବୁଣା ଯାଇଥିବା ଏହି ମନ୍ତୁରା ଧାନକୁ ଡେଇଁ ହାତୀ, ବାର୍‌ହା କିମ୍ବା ମୂଷାମାନେ ଧାନ କ୍ଷେତକୁ ପ୍ରବେଶ କରିପାରନ୍ତି ନାହିଁ ।

ପୂଜା କାର୍ଯ୍ୟରେ ରାଉଳିଆଙ୍କୁ ପଧାନ ଓ ଡାଙ୍ଗୁଆ ସହାୟତା କରିଥାନ୍ତି । ଫସଲକୁ ପାପାତ୍ମା ଏବଂ ଅନ୍ୟ ବନ୍ୟ ପଶୁପକ୍ଷୀଙ୍କ କବଳରୁ ଉଦ୍ଧାର କରିବା ପାଇଁ ରାଉଳିଆ ତନ୍ତ୍ର ସାଧନା କରନ୍ତି । ଗାଁର ନାଗମ୍ ଓ ପଧାନ ଧରମ ଦେବତା, ବସୁମତୀ ମାତା, ଗ୍ରାମଶିରି ଏବଂ ପିତୃପୁରୁଷଙ୍କୁ ଆବାହନ କରନ୍ତି । ଏହି ଅବସରରେ ପ୍ରତି ଜୁଆଙ୍ଗ ପରିବାର ପକ୍ଷରୁ ମାନସିକ ରଖାଯାଇଥିବା କୁକୁଡ଼ାକୁ ଏକାନ୍‌ରେ ଛେଦ ପକା ଯାଇଥାଏ । ଛେଦ ପକାଯାଇଥିବା କୁକୁଡାଙ୍କ ରକ୍ତକୁ ବସୁମତୀ ମାତା (ମାଟି ମାଆ)ଙ୍କୁ ଅର୍ପଣ କରାଯାଏ । ଏହା କରାଗଲେ ଆସନ୍ତା ବର୍ଷ ମାଟି ମା' ଭଲ ଫସଲ ଫଳାଇବେ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ଅତୀତରେ ପିଢ଼ ପୂଜା ସମୟରେ ରାଉଳିଆ କିମ୍ବା ନାଗମ୍ ଦେବଦେବୀଙ୍କ ଉଦ୍ଦେଶ୍ୟରେ ନିଜନିଜର ଅଙ୍ଗଦାନ କରୁଥିଲେ । ସେମାନେ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ନିଜର ହାତ, ଗୋଡ଼, ଜିଭ, ନାକ, କାନ, ଚକ୍ଷୁ ଭଳି ଯେକୌଣସି ଅଙ୍ଗ ଦାନ କରୁଥିଲେ । ମାତ୍ର, ବର୍ତ୍ତମାନ ଏହା କରାଯାଉନାହିଁ । ଏଭଳି ଏକ ଜଘନ୍ୟ ପରମ୍ପରା ପୂଜାବିଧିରେ ଅନେକ ପରିବର୍ତ୍ତନ ଦେଖା ଦେଇଛି ।

### ଧାନ ନୂଆଖିଆ (ଗୁଡ଼ା ବୁଆ ପର୍ବ)

ବୁଆ (ଧାନ) ନୂଆ ଖିଆ ପର୍ବ ହେଉଛି ଏକ କୃଷିଭିତ୍ତିକ ପର୍ବ । ଏହା ଭାଦ୍ରବ-ଆଶ୍ୱିନ (ଅଗଷ୍ଟ-ସେପ୍‌ଟେମ୍ବର)ରେ ଅନୁଷ୍ଠିତ ହୋଇଥାଏ । ଦେବତା, ଦେବୀଙ୍କୁ ନୂଆକରି ଅମଳ ହୋଇଥିବା ଧାନ ଅର୍ପଣ କରି ପରେ ଜୁଆଙ୍ଗମାନେ ଭକ୍ଷଣ କରନ୍ତି ।

ଧାନ ନୂଆଖିଆ ପର୍ବଟି ତିନି ଦିନ ଧରି ପାଳନ କରାଯାଏ । ପ୍ରଥମ ଦିନଟି ବାର ରୁହା ହୋଇଥାଏ । ନାଗମ୍ ଓ ପଧାନ ଉପବାସ ରହି ନିଷ୍ଠାର ସହ ବ୍ରତ ଧାରଣ କରନ୍ତି । ଦ୍ୱିତୀୟ ଦିନ ଗାଁର କିଛି ଯୁବକ ଏକାନ୍ କିମ୍ବା ତଇଲାକୁ ଯାଇ ସେଠାରୁ କିଛି ନୂଆ ଧାନ କେଣ୍ଡା ସଂଗ୍ରହ କରି ଆଣନ୍ତି । ତଇଲାରୁ ଆଣିଥିବା ଧାନ କେଣ୍ଡାକୁ ଯୁବକମାନେ ମଣ୍ଡଘରେ ରଖନ୍ତି । ଏହା ପରେ ନୂଆ ଧାନକୁ ମଣ୍ଡଘର ସମ୍ମୁଖରେ ଥିବା ଗ୍ରାମଶିରିଙ୍କ ନିକଟରେ ପୂଜା କରାଯାଏ । ନୂଆ ଧାନ ପୂଜା ହୋଇ ସାରିବା ପରେ ପୂଜକ ସବୁତକ ଧାନକୁ ଗୋଟିଏ ଗୋଟିଏ ଦନାରେ ଭାଗ କରି ପ୍ରତି ପରିବାରକୁ ବଣ୍ଟନ କରିଥାନ୍ତି ।

ପୂଜକ ଦେଇଥିବା ନୂଆ ଧାନ ଓ ଘରେ ଥିବା ପୁରୁଣା ଧାନକୁ ମିଶେଇ ଜୁଆଙ୍ଗମାନେ କୁଟି ଚାଉଳ ପ୍ରସ୍ତୁତ କରନ୍ତି । ଏହି ଚାଉଳ ସହ ଗୁଡ଼, ଦୁଧ, ଘିଅ ମିଶେଇ ଜୁଆଙ୍ଗମାନେ ଖିରି ପ୍ରସ୍ତୁତ କରନ୍ତି । ଖିରି ପ୍ରସ୍ତୁତ ହୋଇଗଲା ପରେ ପ୍ରତି ପରିବାର ପକ୍ଷରୁ ଶାଳପତ୍ର ଦନାରେ ଗ୍ରାମ ଶିରିଙ୍କ ନିକଟକୁ ଆଣି ପୂଜା କରାଯାଏ । ଜୁଆଙ୍ଗମାନେ ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ ପରେ ନବାନ୍ନ ଭକ୍ଷଣ କରନ୍ତି ।

ତୃତୀୟ ଦିନରେ ଗ୍ରାମଶିରିଙ୍କ ନିକଟରେ ପୂଜାର୍ଚ୍ଚନା ପରେ ସେମାନେ ଗାଁମୁଣ୍ଡରେ ଥିବା ଶାଳ ନିକଟକୁ ଯାଆନ୍ତି । ସେଠାରେ ଥିବା ଦେବଦେବୀଙ୍କ ନିକଟରେ ଛେଳି, ମେଣ୍ଢା, କୁକୁଡ଼ା ଆଦି ପଶୁବଳି (ଛେଦ) ପଡ଼ିଥାଏ । ଜୁଆଙ୍ଗମାନେ କ୍ଷେତରେ ହୋଇଥିବା ନୂଆ ଧାନକୁ ଇଷ୍ଟଦେବୀଙ୍କ ନିକଟରେ ପୂଜା କରିଥାନ୍ତି । ଏହି ଛେଦ କାର୍ଯ୍ୟକ୍ରମରେ ମହିଳା ଓ ଶିଶୁମାନଙ୍କୁ ବାରଣ କରାଯାଇଥାଏ । ଏହି ସମୟରେ ଚାଙ୍ଗୁ ବାଦ୍ୟକୁ ନିଷିଦ୍ଧ କରାଯାଇଥାଏ ।

### ରୁମା ପର୍ବ (କାଳାର ଅବ)

ରୁମା (ବରୁଗୁଡ଼ି)କୁ ଖାଇବା ପୂର୍ବରୁ ଜୁଆଙ୍ଗମାନେ ନିଜନିଜର ପିତୃପୁରୁଷ ଓ ଦେବଦେବୀଙ୍କୁ ଅର୍ପଣ କରିଥାନ୍ତି । ଏହି ଅବସରରେ ରୁମା ନୂଆଖିଆ ପାଳିତ ହୋଇଥାଏ । ଏହି ପର୍ବ ସେପ୍‌ଟେମ୍ବର-ଅକ୍ଟୋବର ମାସ ବେଳକୁ ପାଳନ କରାଯାଇଥାଏ । ରୁମା ନୂଆଖିଆ ପାଳନ ପରେ ଜୁଆଙ୍ଗମାନେ ରୁମା ଛୁଇଁକୁ ବିଧିବଦ୍ଧ ଭାବେ ଖାଇଥାନ୍ତି ।

ରୁମା ଛୁଇଁ ବ୍ୟତୀତ ଜୁଆଙ୍ଗମାନେ ସାରୁ, ପିତାଳୁ, ବଇଁଗାଳୁ, ଦେଶିଆଳୁ, କଖାରୁ, ପାଣିକଖାରୁ ଆଦି ଖାଦ୍ୟକୁ ନୂତନ କରି ଖାଇଥାନ୍ତି ।

ରୁମା ନୂଆଖିଆ ପରେ ଜୁଆଙ୍ଗମାନେ ତଇଳାରୁ ଦେବ ଧାନ (କିମ୍ବା ଧାନ/କିମା ଧାନ) କାଟିବା ଆରମ୍ଭ କରିଥାନ୍ତି । କିମ୍ବା ଧାନ ହେଉଛି ଏକ ପ୍ରକାର ବିଳମ୍ବିତ କିସମର ଧାନ । ଏହି ଧାନ ପାଚିବାକୁ ଚାରି ପାଞ୍ଚ ମାସ ସମୟ ନେଇଥାଏ । ରୁମା ନୂଆଖିଆ ପର୍ବଟି ଦୁଇ ଦିନ ଧରି ପାଳିତ ହୋଇଥାଏ । ପ୍ରଥମ ଦିନକୁ ବାର ରୁଆ କୁହାଯାଏ । ନାଗମ୍, ପଧାନ ଓ ବାରଭାଇ ଉପବାସ ରହି ବ୍ରତ ଧାରଣ କରିଥାନ୍ତି ।

ଦ୍ୱିତୀୟ ଦିନ ସକାଳୁ ନାଗମ୍ ତଇଳାକୁ ଯାଇ ନୂଆ କରି ଫଳିଥିବା ରୁମା ଛୁଇଁ (ବରୁଗୁଡ଼ି) ତୋଳି ଆଣନ୍ତି । ନାଗମ ଏକ ଡାଲାରେ କିଛି ରୁମା ଛୁଇଁ, ବଣ ଆଳୁ, ସାରୁ, ପିତାଳୁ, ଟମାଟର, ବୋଇତାଳୁ, ପାଣିକଖାରୁ, ଲାଉ, ଫୁଲ, ଅରୁଆ ଚାଉଳ, ହଳଦୀଗୁଣ୍ଡ, ସିନ୍ଦୁର, ଧୁପ, ଦୀପ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ଧରି ମଣ୍ଡଘରେ ଉପସ୍ଥିତ ହୁଅନ୍ତି ।

ଏହାପରେ ଗ୍ରାମଶିରିଙ୍କ ନିକଟରେ ରୁମା ଛୁଇଁ ବ୍ୟତୀତ ଅନ୍ୟାନ୍ୟ ପନିପରିବାକୁ ପୂଜା କରାଯାଇଥାଏ । ନାଗମ୍ ଗ୍ରାମଶିରିଙ୍କ ପାଖରେ ଦୁଧ ଢାଳି ଦେବଦେବୀଙ୍କ ଉଦ୍ଦେଶ୍ୟରେ ରୁମା, ସାରୁ, ପିତାଳୁ, ବଇଁଗାଳୁ, ଶାଗ, ଲାଉ, ପାଣିକଖାରୁ ଆଦି ଅର୍ପଣ କରିଥାନ୍ତି ।

ଗ୍ରାମଶିରିଙ୍କ ନିକଟରେ ପୂଜା ହେବା ପରେ ନାଗମ୍, ପଧାନ ଓ ବାରଭାଇ ଗାଁ ମୁଣ୍ଡରେ ଥିବା ଗ୍ରାମଶାଳକୁ ପୂଜା କରିବାକୁ ଯାଆନ୍ତି । ଗ୍ରାମଶାଳରେ ଯଥାବିଧି ପୂଜାର୍ଚ୍ଚନା ହୁଏ ।

ଗ୍ରାମଶାଳରୁ ପୂଜା ହୋଇ ଆସିଥିବା ରୁମାଛୁଇଁ, ବଣଆଳୁ, ସାରୁ, ବୋଇତାଳୁ, ପାଣିକଖାରୁ, ଲାଉ ଆଦି ପନିପରିବାକୁ ମିଶାଇ ଏକ ଘାଣ୍ଟ ତରକାରୀ ପ୍ରସ୍ତୁତ କରାଯାଏ । ଏହି ପର୍ବ ବେଳେ ଚାଙ୍ଗୁ ବଜାଇବା ନିଷିଦ୍ଧ ଥାଏ ।

ଏହା ବ୍ୟତୀତ ଜୁଆଙ୍ଗମାନେ ଗହ୍ମା ପୂନେଇଁ, ତଇଳା ପୂଜା (ବିଲ ପୂଜା), ଗୁରୁବାର (ଲକ୍ଷ୍ମୀ) ଓଷା, ଗୁଣ୍ଡାଦିଆ ପର୍ବ (କିମିୟାଂ ଅବ) ଭଳି କୃଷିଭିତ୍ତିକ ପର୍ବ ପାଳନ କରିଥାନ୍ତି । ତଇଳା ପୂଜା ଓ ଗୁଣ୍ଡାଦିଆ ପର୍ବ ଫସଲ କ୍ଷେତରେ ହୋଇଥାଏ । ଗୁରୁବାର ଓଷାକୁ ଜୁଆଙ୍ଗ ମହିଳାମାନେ ନିଜ ଘରେ ପାଳିଥାନ୍ତି ।

**ଉପସଂହାର**

ପର୍ବପର୍ବାଣି ଜୁଆଙ୍ଗମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନକୁ ଅଧିକ ଶୃଙ୍ଖଳିତ କରିଥାଏ । ଏଥିରେ ସାମାଜିକ ବାର୍ତ୍ତା ଥାଏ । ନୂଆଖିଆ ପର୍ବ ମାଧ୍ୟମରେ ଜୁଆଙ୍ଗମାନଙ୍କ ମଧ୍ୟରେ ଥିବା ଭାଇଚାରା ଅଧିକ ଦୃଢ଼ ହୋଇଥାଏ । ମାଘପୋଡ଼ି ପର୍ବ ମାଧ୍ୟମରେ ଗାଁର କୃଷିନୀତି ଓ କୃଷି କାର୍ଯ୍ୟର ଏକ ଚିଠା ପ୍ରସ୍ତୁତ ହୋଇଥାଏ । ପର୍ବପର୍ବାଣି ମାଧ୍ୟମରେ ଜୁଆଙ୍ଗମାନଙ୍କର ଗୋଷ୍ଠୀ ଜୀବନ ଅଧିକ ଋଦ୍ଧିମନ୍ତ ହୋଇଥାଏ । ମାତ୍ର ଏବେ ଅଧିକାଂଶ ପର୍ବପର୍ବାଣି ଜୁଆଙ୍ଗମାନଙ୍କ ବାର୍ଷିକ ପର୍ବପର୍ବାଣି କ୍ୟାଲେଣ୍ଡରରୁ ଲିଭିଗଲାଣି । ଏସବୁ ପର୍ବଗୁଡ଼ିକ କୃଷିଭିତ୍ତିକ ହୋଇଥିବାରୁ ଏହା ଜୁଆଙ୍ଗମାନଙ୍କ କୃଷି ଜୀବନକୁ ପ୍ରଭାବିତ କରିଥାଏ । ବର୍ତ୍ତମାନ ଜୁଆଙ୍ଗମାନେ ଅଖାଣି ଯାତ୍ରା (ଶିକାର ପର୍ବ) ପୂର୍ବ ଭଳି ପାଳନ କରୁନାହାନ୍ତି । ଜଙ୍ଗଲ କ୍ଷୟ ଓ ବନ ବିଭାଗର କଟକଣା ଯୋଗୁଁ ଏ ପର୍ବଟିକୁ ପ୍ରତୀକାତ୍ମକ ଢଙ୍ଗରେ ଜୁଆଙ୍ଗମାନେ ପାଳୁଛନ୍ତି । ଏସବୁ ପର୍ବର ଗୋଟିଏ ଗୋଟିଏ ସାମାଜିକ ମୂଲ୍ୟବୋଧ ରହିଛି । ଭଲ ଫସଲ ଅମଳ ହେଉ କି ଗ୍ରାମବାସୀ ରୋଗମୁକ୍ତ ହେବା ଉଦ୍ଦେଶ୍ୟରେ ଜୁଆଙ୍ଗମାନେ ଅଧିକାଂଶ ପର୍ବ ପାଳନ କରିଥାନ୍ତି । ଦୁର୍ଭାଗ୍ୟର ବିଷୟ, ଆଜି ତଥାକଥିତ ଆଧୁନିକତା ଓ ଶିକ୍ଷା ଆଳରେ ଅଧିକାଂଶ ପର୍ବପର୍ବାଣି ଅପ୍ରାସଙ୍ଗିକ ହୋଇ ପଡୁଥିବା ଲକ୍ଷ୍ୟ କରାଯାଉଛି ।

**ସହାୟକ ଗ୍ରନ୍ଥସୂଚୀ**

୧. ପ୍ରଧାନ ରଞ୍ଜନ, 'ଜୁଆଙ୍ଗ ପର୍ବପର୍ବାଣି', ପ୍ରକାଶକ: କ୍ରିଏଟିଭ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ୨୦୧୪

୨. ପ୍ରଧାନ ରଞ୍ଜନ, 'ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର' ପ୍ରକାଶକ: କ୍ରିଏଟିଭ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ୨୦୧୩

**କ୍ଷେତ୍ର ସହାୟକ/ସହାୟିକା**

୧. ଶୁକଦେବ ଜୁଆଙ୍ଗ (ପଧାନ), କୁସୁମାଇ ଜୁଆଙ୍ଗ (ନାଗମ୍), ପିନ୍ଧିକା ଜୁଆଙ୍ଗ (ଡାଙ୍ଗୁଆ), ଅର୍ଜୁନ ଜୁଆଙ୍ଗ, ମାଧବ ଜୁଆଙ୍ଗ, ରତ୍ନାକର ଜୁଆଙ୍ଗ, ବେଣୁ ଜୁଆଙ୍ଗ, ଯୋଗୀ ଜୁଆଙ୍ଗ

ଗ୍ରାମ: ଗୁପ୍ତ ଗଙ୍ଗା, ଗ୍ରାମପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର

୨. ରାହାସ ଜୁଆଙ୍ଗ, ଶ୍ରୀକାନ୍ତ ଜୁଆଙ୍ଗ, ବୀରବର ନାଏକ

ଗ୍ରାମ: ଗୋନାସିକା, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର

୩. ପରବାସିଆ ଜୁଆଙ୍ଗ (ପଧାନ), ମଣିଆ ଜୁଆଙ୍ଗ (ନାଗମ୍), ନାରଦ ଜୁଆଙ୍ଗ (କାର୍ଜି), ଚେମନ୍ ଜୁଆଙ୍ଗ (ଡାଙ୍ଗୁଆ), ଗୋବିନ୍ଦ ଜୁଆଙ୍ଗ, ବଙ୍ଗାଳି ଜୁଆଙ୍ଗ, ବେନୁ ଜୁଆଙ୍ଗ, ବିନୋଦ ଜୁଆଙ୍ଗ (ମାଟା କଙ୍ଗେର), ପ୍ରାଣବଲ୍ଲଭ ଘଣା

ଗ୍ରାମ: ଉପର ରଡୁଆଁ, ଗ୍ରାମପଞ୍ଚାୟତ: ତଳ ଚମ୍ପେଇ, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର

୪. ରଘୁ ଜୁଆଙ୍ଗ (ନାଗମ୍), ସୁନିଆଁ ଜୁଆଙ୍ଗ (ପଧାନ), ଲକ୍ଷ୍ମୀଧର ଜୁଆଙ୍ଗ, ଦେଶ ଜୁଆଙ୍ଗ

ଗ୍ରାମ: ଉପର ବୈତରଣୀ, ଗ୍ରାମପଞ୍ଚାୟତ: ଗୋନାସିକା, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର

୫. ଶ୍ରୀଧର ଜୁଆଙ୍ଗ, କୈଳାସ ଜୁଆଙ୍ଗ, ପ୍ରଫୁଲ୍ଲ ଜୁଆଙ୍ଗ, ସନାତନ ଜୁଆଙ୍ଗ, ଶଇଳ ଜୁଆଙ୍ଗ, ବାରିକ ଜୁଆଙ୍ଗ, ସାଗର ଜୁଆଙ୍ଗ, ରାଜ ଜୁଆଙ୍ଗ, ଋଷି ଜୁଆଙ୍ଗ

ଗ୍ରାମ: ବାର୍ହାଗଡ଼, ଗ୍ରାମପଞ୍ଚାୟତ: ବାର୍ହାଗଡ଼, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର

୬. ଲଛମନ ଜୁଆଙ୍ଗ, ଧୀର ଜୁଆଙ୍ଗ, ଦାଶରଥୀ ଜୁଆଙ୍ଗ, ପଠାଣି ଜୁଆଙ୍ଗ, ଶୁକୁରା ଜୁଆଙ୍ଗ, ଦୀନବନ୍ଧୁ ଜୁଆଙ୍ଗ, କଲିଆ ଜୁଆଙ୍ଗ

ଗ୍ରାମ: ଟେଢେନାଳି, ଗ୍ରାମପଞ୍ଚାୟତ: ପୋଡ଼ାଙ୍ଗ, ବ୍ଲକ୍: ତେଲକୋଇ, ଜିଲ୍ଲା: କେନ୍ଦୁଝର

ବରିଷ୍ଠ ସାମ୍ବାଦିକ, ସମ୍ବାଦ ଭବନ
ରସୁଲଗଡ଼ ଶିଳ୍ପାଞ୍ଚଳ, ଭୁବନେଶ୍ୱର–୧୦



# ଉତ୍କଳ ଭାରତୀ କୁନ୍ତଳା କୁମାରୀ

**କବିତା ଦେବୀ**

ସାହିତ୍ୟ ଜୀବନର କଥା କହେ । ଏହା ଜନ ଜୀବନରେ କମନୀୟ କୁସୁମ ଫୁଟାଇବା ସହିତ ଗଭୀର ଜାତି ପ୍ରେମ ସୃଷ୍ଟିକରି ଯୁଗଯୁଗକୁ କାଳଜୟୀ ହୋଇଥାଏ । କବି ହାତରେ ମାତ୍ର କଲମଟିଏ ଲୋଡା । ତା’ କ୍ଷୁଦ୍ର କଲମ ମୁନରୁ ସେ ସୃଷ୍ଟି କରିଥାଏ ଅତୀତର ଗୌରବ, ସଂସ୍କାର, ସଂସ୍କୃତି ଓ ଉତ୍କର୍ଷ କଳାସ୍ଥାପତ୍ୟ । ଚେତନାବୋଧରେ ସମସ୍ତଙ୍କ ହୃଦୟକୁ ଆନ୍ଦୋଳିତ କରିଥାଏ । ସେହିପରି ଓଡିଆ ସାରସ୍ୱତ କ୍ଷେତ୍ରରେ ଲେଖନୀ ଚାଳନା କରି ଯେଉଁ ଦିବଂଗତ କବୟିତ୍ରୀ ଜଣକ ପାଠକଙ୍କୁ ମନ୍ତ୍ରମୁଗ୍ଧ କରି ରଖିଛନ୍ତି ଏବଂ ଓଡିଆ ସାହିତ୍ୟ କ୍ଷେତ୍ରରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରି ପାରିଛନ୍ତି ସେ ହେଉଛନ୍ତି ନାରୀ କବି ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ୍ ।



ଦେଶ ଯେତେବେଳେ ଘଡିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଥିଲା, ସେତିକିବେଳେ ଏକ ତମସାପୂର୍ଣ୍ଣ ପରିବେଶ, ପରିସ୍ଥିତି ମଧ୍ୟରେ, ଧରାପୃଷ୍ଠକୁ ଆସିଥିଲେ କୁନ୍ତଳା । ପିଲା ଦିନରୁ ସେ ଅତି ବୁଦ୍ଧିମତୀ ଏବଂ ସାହସୀ ଥିଲେ । ସେ ନାରୀ ଜାତିକୁ, ଦରିଦ୍ର ଜନସାଧାରଣଙ୍କୁ ଅଶେଷ ଆତ୍ମପ୍ରତ୍ୟୟ ଓ ପ୍ରେରଣା ଯୋଗାଇବାରେ ସମର୍ଥ ହୋଇଥିଲେ । ତାଙ୍କର ବାଲ୍ୟକାଳ ସୁଦୂର ବର୍ମାରେ କଟିଥିଲା । ଚଉଦ ବର୍ଷ ବୟସରେ ସେ ଓଡିଶା ଆସିଥିଲେ । ତାଙ୍କର ପାରିବାରିକ ଜୀବନ ଖୁବ୍ ଦୁଃଖଦାୟକ ଥିଲା । ଭାଇ ଭଉଣୀ ଓ ମାତାଙ୍କ ସହ କୁନ୍ତଳା ଖୋର୍ଦ୍ଧାରେ ରହିଲେ । ଖୋର୍ଦ୍ଧାର ପାଇକ ଆଖଡା, ବରୁଣେଇ ପାହାଡର ସୌନ୍ଦର୍ଯ୍ୟ ସହିତ ଓଡିଶାର ଐତିହ୍ୟ ସଂପର୍କରେ ଅନେକ ତଥ୍ୟ ଜାଣିଥିଲେ । ଦାରିଦ୍ର୍ୟ କଷାଘାତରେ ଜର୍ଜରିତା କୁନ୍ତଳା ଉଚ୍ଚଶିକ୍ଷା ପାଇଁ କଟକ ରେଭେନ୍ସା ଗାର୍ଲ୍ସ ସ୍କୁଲରେ ପଢିଥିଲେ । ମେଡିକାଲ୍ ପ୍ରବେଶିକା ପରୀକ୍ଷା ଦେଇ ପ୍ରାୟ ଚାରିବର୍ଷ ମଧ୍ୟରେ ଡାକ୍ତରୀ ପାଶ୍ କରିଗଲେ । ସେ ଅତି ମେଧାବୀ ଥିଲେ । ସେଥିପାଇଁ ଅଧ୍ୟୟନ ସମୟରେ ୧୬ଟି ସ୍ୱର୍ଣ୍ଣ ପଦକ ପ୍ରାପ୍ତ ହୋଇଥିଲେ ।

କୁନ୍ତଳା କୁମାରୀ କେବଳ ଜଣେ ନାରୀ ନଥିଲେ, ଏକାଧାରରେ ସେ ହେଉଛନ୍ତି ଚିକିତ୍ସାବିତ୍, କବି, ଔପନାସିକା, ବାଗ୍ମୀ, ପ୍ରଶାସିକା ଭଳି ଏକ ବିଚକ୍ଷଣସମ୍ପନ୍ନ ପ୍ରତିଭାର ଅଧିକାରୀ । ସେ ଅଗଣିତ ନରନାରୀଙ୍କ ସେବାକରି ଯେପରି ସୁନାମ ଅର୍ଜନ କରିଥିଲେ, ସେହିପରି ସାହିତ୍ୟ ସର୍ଜନା କରି ଉତ୍କଳର ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିପାରିଥିଲେ । ତାଙ୍କ ସାହିତ୍ୟ କୀର୍ତ୍ତି କୃତିତ୍ୱ ସାରା ଦେଶରେ ପରିବ୍ୟାପ୍ତ । କବି ଓ ଔପନ୍ୟାସିକା ଭାବେ ସେ ଚିର ଯଶସ୍ୱିନୀ । ଓଡିଆ ଭାଷା ପ୍ରତି ତାଙ୍କର ପ୍ରଗାଢ ଆତ୍ମୀୟତା ଥିଲା, ତେଣୁ ଓଡିଆ ଭାଷାକୁ ସୁଦୂରପ୍ରସାରୀ କରିବାକୁ ଥିଲା ତାଙ୍କର ସତତ ପ୍ରଚେଷ୍ଟା । ଗୋଟିଏ ହାତରେ ସେବାର

ଆନ୍ତରିକ ଏବଂ ଅନ୍ୟ ହାତରେ ଭାବମୟ କବିତାର ସୃଷ୍ଟି ତାଙ୍କ ଜୀବନକୁ ଖ୍ୟାତିସମ୍ପନ ଏବଂ ମହିମାମଣ୍ଡିତ କରିଥିଲା ।

ତାଙ୍କ ଲେଖନୀରୁ ପ୍ରଥମେ ଝଂକୃତ ହୋଇଥିଲା କବିତା 'ତାରାପ୍ରତି' । ତାହା ଉତ୍କଳ ସାହିତ୍ୟରେ ପ୍ରକାଶିତ ହେବା ପରେ 'ଶେଫାଳି ପ୍ରତି', 'କମଳ ପ୍ରତି' ଏବଂ 'ପୂଜା' ପ୍ରକାଶ  ପାଇଲା । ତା'ପରେ 'ଅଳି', 'ଉଚ୍ଛ୍ୱାସ', 'ଅର୍ଚ୍ଚନା', 'ସ୍ଫୁଲିଙ୍ଗ', 'ଆହ୍ୱାନ', ପ୍ରେମ ଚିନ୍ତାମଣି', 'ଓଡିଆଣୀଙ୍କ କାନ୍ଦଣା' ଆଦି ପୁସ୍ତକ ଏକ ବିମୁଗ୍ଧ ପରିଚୟ ସୃଷ୍ଟି କରିବାକୁ କୁନ୍ତଳା କୁମାରୀ ସକ୍ଷମ ହୋଇଥିଲେ । 'ଶେଫାଳି ପ୍ରତି' କବିତାର ସ୍ରଷ୍ଟା ପାଇଁ ସେ ସ୍ମରଣୀୟ । ଗୋଟିଏ ରାତିରେ ଫୁଟି ମଉଳି ଯାଇଥିବା ଗଂଗଶିଉଳିକୁ ଆମ୍ରାଫୁଲ ସଂଗେ ତୁଳନା କରିଛନ୍ତି । ଛୋଟ ଫୁଲଟିଏ ସିନା ସକାଳେ ଫୁଟି ସଂଧ୍ୟାରେ ମଉଳିଯାଏ । କିନ୍ତୁ ଆଶାବାଦୀ କବୟିତ୍ରୀ କୁନ୍ତଳା କୁମାରୀଙ୍କ ଆମ୍ରା ଫୁଲର ମୃତ୍ୟୁ କ'ଣ ହୋଇ ପାରିବ ? ତେଣୁ ତାଙ୍କ ଲେଖନୀ ମୁନରୁ ଝରିପଡିଛି –

'ତଥାପି ସେ ଆମ୍ରାଫୁଲ
ନ ଯିବରେ ମଉଳି
ତେଣୁ ଆଶା ବହି ଦିନ କାଟେ ଗଂଗଶିଉଳି'

ଏହା ବ୍ୟତୀତ ଜଣେ ଜାତୀୟବାଦୀନୀ କାବ୍ୟର ସ୍ରଷ୍ଟା ଭାବେ ମଧ୍ୟ ସେ ସୁବିଦିତା ।  ତାଙ୍କ କାବ୍ୟଗୁଡିକ 'ମଣି କାଂଚନ' ସହ 'ଭ୍ରାନ୍ତି', 'ନଅତୁଣ୍ଡୀ', କାଳୀ ବୋହୂ', 'ପରଶମଣି', 'ରଘୁଅରକ୍ଷିତ' ଉପନ୍ୟାସର ସେ ରଚୟିତା । ତାଙ୍କ ରଚନାରେ ନାରୀ ଜାଗରଣ, କୁସଂସ୍କାର ଦୂରୀକରଣ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି । ପରଦାପ୍ରଥା, ବାଲ୍ୟବିବାହ ଉଚ୍ଛେଦ ସହିତ ବିଧବା ବିବାହ ପ୍ରଚଳନ, ନାରୀ ଶିକ୍ଷାର ଅଗ୍ରଗତି ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ଇଂରେଜ ଶାସକଙ୍କ ଶୋଷଣ, ପୀଡନ, ଲୁଣ୍ଠନ, ଦମନ ବିରୋଧରେ କବି ଲେଖନୀ ମାଧ୍ୟମରେ ଅନେକ ଉଦ୍‌ବୋଧନ ଦେଇଛନ୍ତି । ଦଳିତ, ପତିତ, ଲାଞ୍ଛିତଙ୍କ ପାଇଁ କବି କୁନ୍ତଳା କୁମାରୀଙ୍କ ହୃଦୟ କାନ୍ଦି ଉଠୁଥିଲା । ସେହି ଅସହାୟ ମଣିଷଙ୍କର ଦୁଃଖର କରୁଣ ଝଙ୍କାର ତୋଳିଛନ୍ତି 'ସ୍ଫୁଲିଙ୍ଗ' କବିତା ସଂକଳନରେ । ସାଧାରଣ ମଣିଷଙ୍କୁ ସମାଜରେ ଉଚ୍ଚ ଆସନ ଦେବାକୁ ସେ ସଦାବେଳେ ଚେଷ୍ଟା କରୁଥିଲେ । ମାତୃଭୂମି ଉତ୍କଳକୁ କୁନ୍ତଳା କୁମାରୀଙ୍କର ଆନ୍ତରିକ ଭକ୍ତି ଏବଂ ଶ୍ରଦ୍ଧା ଥିଲା । ସେ ପ୍ରାଚୀନ ଉତ୍କଳର ଗୌରବ, କଳା ସ୍ଥାପତ୍ୟକୁ ଜନସମାଜରେ ପ୍ରଚାରିତ କରିବାକୁ ଉଦ୍ୟମ କରିଥିଲେ । ଇଂରେଜ ଶାସକଙ୍କ କଠୋରତା ଏବଂ ଘୃଣ୍ୟ ମନୋଭାବକୁ ସେ ଦୃଢତାର ସହ ପ୍ରତିବାଦ କରୁଥିଲେ । ତେଣୁ ସମାଜରେ ସମତା ଆଣିବାକୁ ତାଙ୍କ ଲେଖନୀକୁ ଅଧିକ ଚଳଚଞ୍ଚଳ କରିପାରିଥିଲେ ।

କେବଳ କବିତାରେ ନୁହେଁ, ଉପନ୍ୟାସ ରଚନାରେ କୁନ୍ତଳା କୁମାରୀ ମଧ୍ୟ ସଂସ୍କାରବାଦୀ ଚିନ୍ତାଧାରା ପ୍ରକାଶ କରିଛନ୍ତି । ବାଲ୍ୟବିବାହ ପରି କୁସଂସ୍କାରକୁ ସେ ପ୍ରତିବାଦ କରି 'କାଳୀବୋହୂ' ଉପନ୍ୟାସ ରଚନା କରି ସମାଜକୁ ଯଥେଷ୍ଟ ସଚେତନ କରିପାରିଛନ୍ତି । ତାଙ୍କ ଭାଷାରେ ଧୂଳିଖେଳ ଭିତରେ ଯାହାର ଜୀବନ ଗତି କରୁଛି, ସେ ପାରିବାରିକ ବଂଧନ ଭିତରେ କିଭଳି ନିଜକୁ ଗଢିତୋଳିବ? କେବଳ ବାଲ୍ୟ ବିବାହର ବିରୋଧ ନୁହେଁ, ବିଧବାମାନଙ୍କ ସପକ୍ଷରେ ସ୍ୱର ଉତ୍ତୋଳନ କରି ଲେଖନୀ ମୁନକୁ ଦୃଢ କରିଛନ୍ତି କୁନ୍ତଳା କୁମାରୀ । ଜଣେ ବିଧବା ଝିଅ, ଜୀବନବ୍ୟାପୀ ଦୁଃଖ ନିର୍ଯ୍ୟାତନାରେ କାଳାତିପାତ ନକରି ପୁନଶ୍ଚ ବିବାହ କରି ଗୃହସଂସାର କରିବା ଉଚିତ୍ । ସମାଜର ପ୍ରତ୍ୟେକ ମନୁଷ୍ୟ ଏପରି ଅଂଧବିଶ୍ୱାସରୁ ନିବୃତ ରହିବା ଦରକାର । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ନାରୀ ସମାଜ ପାଇଁ କେତେ ଆବେଗ ଉତ୍କଣ୍ଠା ତାଙ୍କର । 'ନଅତୁଣ୍ଡୀ' ଉପନ୍ୟାସରେ କୁନ୍ତଳା କୁମାରୀଙ୍କ ଆଦର୍ଶ ଜାତୀୟତାବୋଧ ପରିଲକ୍ଷିତ ହୁଏ । ଏଥିରେ ଗାନ୍ଧିଜୀଙ୍କ ଅସ୍ପୃଶ୍ୟତା ନିବାରଣ ବାର୍ତ୍ତାର ନିଚ୍ଛକ ରୂପାୟନ ମିଳେ । ସେ ସମାଜରୁ ଛୋଟବଡ ଛୁଆଁ ଅଛୁଆଁ ଭେଦଭାବକୁ ଲେଖନୀରେ ପ୍ରତିବାଦର ସ୍ୱର ଝଂକୃତ କରିଥିଲେ । ସେ ଥିଲେ ସ୍ୱାଧୀନ ଚେତା ଏବଂ ନିର୍ଭୀକା । ସମାଜର

କୁସଂସ୍କାରକୁ ଭ୍ରୂକ୍ଷେପ ନ କରି ଶୁଣାଇଛନ୍ତି ତାଙ୍କର ଅନ୍ତରର କଥା । ସୃଷ୍ଟି କରିଯାଇଛନ୍ତି ଅଗଣିତ ଦେଶପ୍ରେମୀଙ୍କୁ । ସେଥିପାଇଁ ପୁରୀରେ ମହିଳା ବଂଧୁ ସମିତି ୧୯୨୫ ମସିହାରେ ତାଙ୍କୁ ଉତ୍କଳ ଭାରତୀ ଉପାଧି ପ୍ରଦାନ କରିଥିଲେ । ତାଙ୍କୁ ମଧ୍ୟ ଓଡିଶାର ବୁଲ୍‌ବୁଲ୍ କୁହାଯାଏ । ସେତିକି ନୁହେଁ ଓଡିଆ ନାରୀର ପ୍ରତୀକ କୁନ୍ତଳା କୁମାରୀଙ୍କୁ ଅଶେଷ ସମ୍ମାନ ଉପାଧି ମିଳିଥିଲା । ହିନ୍ଦୀ ଭାଷାରେ ବ୍ୟୁତ୍ପତ୍ତି, କବିତା ଲେଖିବା ହେତୁ, ହିନ୍ଦୀ ପ୍ରଚାର ସଭା କୁନ୍ତଳା କୁମାରୀଙ୍କୁ 'କବିନେତ୍ରୀ– ଭାରତ' ଉପାଧିରେ ଭୂଷିତ କରିଥିଲେ । ଦିଲ୍ଲୀରେ 'ଭାରତୀ ତପୋବନ ସଂଘ' ନାମରେ ଏକ ସାହିତ୍ୟ ସଂଘ ପ୍ରତିଷ୍ଠା କରି ଓଡିଶାର ଚିତ୍ର ପ୍ରଦାନ କରିବା ସହ, ତାଙ୍କର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ଓଡିଶାର କଳାକାର, ଲେଖକମାନଙ୍କୁ ଲୋକଲୋଚନକୁ ଆଣିବାର ପ୍ରୟାସ ଜାରି ରଖିଥିଲେ । ଅକ୍ଳାନ୍ତ ପରିଶ୍ରମ, କର୍ମନିଷ୍ଠା, ତେଜସ୍ୱୀ ଭାଷା ମାଧ୍ୟମରେ ଉଦ୍ଦୀପନା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଦେଇଥାଏ । କର୍ମ କରିବାକୁ ବିରତ ନହେବା ପାଇଁ, ପୁନର୍ବାର ସମଗ୍ର ଜଗତ ପାଇଁ ସେ କହିଛନ୍ତି, କର୍ମ ହିଁ ଜୀବନ । କେବଳ କର୍ମକରି ଦୁନିଆରୁ ବିଦାୟ ନେବି ।

୧୯୩୮ ମସିହାରେ ଇହ ଜଗତରୁ ବିଦାୟ ନେଇଥିଲେ କୁନ୍ତଳା କୁମାରୀ । କେତେ ଅଳ୍ପ ତାଙ୍କର ଜୀବନ କାଳ । ସୁଦୂର ବର୍ମାରେ ବାଲ୍ୟକାଳ, ଯୌବନରେ ଡାକ୍ତର ହୋଇ ରୋଗୀଙ୍କର ସେବା ସଙ୍ଗେ ସଙ୍ଗେ, ଓଡିଆ ଭାଷା ପ୍ରତି ଥିଲା ତାଙ୍କର ନିବିଡ ଆତ୍ମୀୟତା । ନିରାଶା ଭିତରେ ଆଶାର ସ୍ୱପ୍ନଥିଲା ତାଙ୍କର ଲେଖନୀ ମୁନ । ସେ ଆଜି ନାହାନ୍ତି । କିନ୍ତୁ ପ୍ରତି ଓଡିଆଙ୍କ ପ୍ରାଣରେ ସେ 'ଉତ୍କଳ ଭାରତୀ' ଓ ଓଡିଶାର ବୁଲ୍‌ବୁଲ୍ ରୂପେ ଚିର ସ୍ମରଣୀୟ ଏବଂ କାଳଜୟୀ ହୋଇ ରହିଥିବେ ।

ଅବସରପ୍ରାପ୍ତ ଶିକ୍ଷୟିତ୍ରୀ
ସେକ୍ଟର–୩/୫୫, ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧



# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

**ଡକ୍ଟର ସର୍ବେଶ୍ୱର ସେଣ**

୧୯୩୬ ମସିହା ଅପ୍ରେଲ ୧ । ଗଠିତ ହେଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ । ଓଡ଼ିଆ ଭାଷାକୁ ଭିତ୍ତିକରି ଏଇ ପ୍ରଦେଶ । ଏଇଟି ଭାରତ ଇତିହାସର ସର୍ବପ୍ରଥମ ଘଟଣା । ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେଲା କାଳ କାଳକୁ । ଏକଦା ବିଦେଶୀଙ୍କର ରାଜନୀତିକ ଅପଶାସନର ଚକ୍ରବ୍ୟୂହ । ଅଣନିଃଶ୍ୱାସ ଓଡ଼ିଶାର ଜନଜୀବନ । ତା' ସାଙ୍ଗକୁ ବେଢ଼ି ଉପରେ କୋରଡ଼ା ନ'ଅଙ୍କ ଦୁର୍ଭିକ୍ଷ । ଧ୍ୱସ୍ତ ବିଧ୍ୱସ୍ତ ଓଡ଼ିଶାର ଆର୍ଥିକ ସ୍ଥିତି । ପୁନଶ୍ଚ ଓଡ଼ିଆ ଭାଷା ବିଲୋପର ଚକ୍ରାନ୍ତ । ଏସବୁ ବିରୋଧରେ ଓଡ଼ିଶାବାସୀଙ୍କର ନିରନ୍ତର ସଂଗ୍ରାମ । ଶତ୍ରୁ ଆତ୍ମସମର୍ପଣ କଲେ । ଉତ୍ସାହ ବଢ଼ିଲା । ଆରମ୍ଭ ହେଲା ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣ ପ୍ରକ୍ରିୟା । ଶେଷରେ ଓଡ଼ିଶା ଫେରିପାଇଲା ତା' ହୃତଗୌରବ । ଦେଶପ୍ରେମୀ, ଜାତିପ୍ରାଣ ସର୍ବୋପରି ମାତୃଭାଷା ପ୍ରୀତି–ଆର୍ଦ୍ର ଓଡ଼ିଆଏ, ତାଙ୍କ ସହ ମା'–ମାଟି–ଭାଷାକୁ ଭଲ ପାଇଥିବା ସ୍ଥାୟୀ ବାସିନ୍ଦା ବଙ୍ଗାଳୀ । ସଭିଙ୍କ ସମ୍ମିଳିତ ଉଦ୍ୟମ । ଆଣିଲା ସଫଳତା । ସେମାନଙ୍କ ମଧ୍ୟରେ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ଅନ୍ୟତମ । ସେ ଜଣେ ସୁଶାସକ, ଓଡ଼ିଆ ଭାଷାଭାଷୀ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ସ୍ୱତନ୍ତ୍ର ଭୂମିକା । କଠୋର ଶ୍ରମ, ବିଚକ୍ଷଣ ରାଜନୀତି, ବୁଦ୍ଧିମତା – ଏସବୁ ତାଙ୍କୁ କରିଛି ଯଶସ୍ୱୀ ।



୧୫୬୮ ଖ୍ରୀ.ଅ., ଗଜପତି ମୁକୁନ୍ଦଦେବଙ୍କ ନିଧନ ହେଲା । ଅସ୍ତମିତ ହେଲା ଓଡ଼ିଶାର ଭାଗ୍ୟରବି । ଦୀର୍ଘ ପରାଧୀନତାର ଶୃଙ୍ଖଳରେ ଓଡ଼ିଆ ଜନଜୀବନ । ଶେଷରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ (୧୮୦୩) । ଏହାର ବହୁ ପୂର୍ବରୁ ଦକ୍ଷିଣ ଓଡ଼ିଶା (ଗଞ୍ଜାମ, କୋରାପୁଟ) ବିଦେଶୀ ଅକ୍ତିଆରରେ । ପ୍ରଥମେ ଫରାସୀ, ପରେ ଇଷ୍ଟଇଣ୍ଡିଆ କମ୍ପାନୀ– ଏହି ଅଞ୍ଚଳକୁ ଦଖଲ କଲେ । ୧୫୬୮ରୁ ୧୮୦୩ ଦୀର୍ଘ ୨୩୫ ବର୍ଷ । ଓଡ଼ିଆଙ୍କ ଲହୁ ଲୁହର କରୁଣ କାହାଣୀ । ଆଫଗାନ, ମୋଗଲ, ମରାଠା, ଅତ୍ୟାଚାରୀ ବର୍ଗୀ– ସମସ୍ତେ ଓଡ଼ିଶା ଜନ–ଜୀବନର ଗଳଗ୍ରହ । ଆସିଲେ ଫିରିଙ୍ଗି, ଅହେତୁକ ଆଶାଟିଏ ଜନ୍ମିଲା, ଦୀର୍ଘଦିନର ପ୍ରଶାସନିକ ଅବ୍ୟବସ୍ଥା ଦୂର ହେବ ! ଇଂରେଜମାନେ ସ୍ଥାୟୀ ଶାସନ ପ୍ରଦାନ କରିବେ– ଏସବୁ ମରୀଚିକା । ଫିରିଙ୍ଗ ଦଳ ଓଡ଼ିଶା ଖଜଣାଖାନା ଲୁଟ୍ କଲେ । ସେମାନେ ଓଡ଼ିଶାକୁ ବୁଝିନଥିଲେ, ନା ଏହାର ଭାଷା, ଭୌଗୋଳିକ ସ୍ଥିତିକୁ । ଶେଷରେ ଓଡ଼ିଶାକୁ ତିନିଭାଗରେ ବିଭକ୍ତ କରିଦେଲେ । ଆପଣାର ସ୍ୱାର୍ଥସିଦ୍ଧି ଏହାର ଅସଲ

ଲକ୍ଷ୍ୟ । ମୋଗଲମାନଙ୍କ ସମୟର ଓଡ଼ିଶା ୨ ଭାଗ – (୧) ମୋଗଲବନ୍ଦୀ, (୨) ଗଡ଼ଜାତ ଅଞ୍ଚଳ । ମରହଟ୍ଟା ଶାସନ ପର୍ଯ୍ୟନ୍ତ ଏଇଟି ପ୍ରାୟ ବଳବତ୍ତର । ଇଂରେଜମାନେ ଶାସନ ଆରମ୍ଭରୁ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରିଚାଲିଲେ । ସେମାନେ ଦକ୍ଷିଣ ଓଡ଼ିଶା ଅଧିକାର କଲେ । ମିଶାଇ ଦେଲେ ମାଡ୍ରାସ୍ ପ୍ରେସିଡ଼େନ୍‌ସିରେ । ୧୮୦୩ରେ ଅଧିକାର କଲେ ଉପକୂଳ ପ୍ରଦେଶ । ଏଥିସହ ଗଡ଼ଜାତ ଅଞ୍ଚଳ, ଏସବୁକୁ ମିଶାଇଲେ ବଂଗଳା ସହିତ । ସମଦଶା ହେଲା ସମ୍ବଲପୁରର । ଉଭୟ ସମ୍ବଲପୁର, ଏହାର ସଂଲଗ୍ନ ଅଞ୍ଚଳ ରହିଲା କେନ୍ଦ୍ର ପ୍ରଦେଶରେ । ଏ ଅଞ୍ଚଳର ସଦରମହକୁମା ନାଗପୁର । ଏଠାରେ ଓଡ଼ିଆ ଭାଷାଭାଷୀମାନେ ସଂଖ୍ୟାଲଘୁ ପାଲଟିଲେ । ନାହିଁ ନଥିବା ନିର୍ଯ୍ୟାତନା ଭୋଗିଲେ । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଆଡ଼େ ବିପଦ ଘନେଇଲା । ଓଡ଼ିଆଏ ଆପଣାର ଅସ୍ମିତାକୁ ଭୁଲିବାକୁ ଲାଗିଲେ । ଆସିଲା ମହାବିପତ୍ତି । ଓଡ଼ିଆ ଜାତି ଦୁର୍ଭିକ୍ଷ ମଧ୍ୟକୁ ଠେଲି ହୋଇଗଲା । ୧୮୬୬ ମସିହା, ରାଜା ଦିବ୍ୟସିଂହ ଦେବଙ୍କ ନ' ଅଙ୍କ, ପଡ଼ିଲା ଭୟାବହ ଦୁର୍ଭିକ୍ଷ (ନ' ଅଙ୍କ ଦୁର୍ଭିକ୍ଷ) । ଅନାହାରରେ ଲକ୍ଷ ଲକ୍ଷ ଲୋକ ମଲେ, ଓଡ଼ିଆଙ୍କ ଅର୍ଥନୀତିକ ମେରୁଦଣ୍ଡ କ୍ରମେ ନଇଁ ପଡ଼ିଲା । ଗୋଟେ ଐତିହ୍ୟସମ୍ପନ୍ନ ଜାତି ସର୍ବହରା ପାଲଟିଗଲା ।

ବିପଦ ଏକା ଆସେନା, ପାଖରେ ଥାଆନ୍ତି ସାଙ୍ଗସାଥୀ । ସୁଯୋଗ ଉଣ୍ଡିଲେ କେତେକ ନ୍ୟସ୍ତସ୍ୱାର୍ଥ କୈନ୍ଦ୍ରିକ ବଙ୍ଗାଳୀ । ବିଦ୍ୟାଳୟରେ ଓଡ଼ିଆ ପଢ଼ାଇବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଚଳାଇଲେ ଚକ୍ରାନ୍ତ, ଓଡ଼ିଆକୁ ବଙ୍ଗଳାର ଉପଭାଷା କହିଲେ, ବିଲୋପ ପାଇଁ କଳବଳ କୌଶଳ ଖଟାଇଲେ । ଚକ୍ରାନ୍ତକାରୀଙ୍କ ନେତା ବଙ୍ଗୀୟ ପଣ୍ଡିତ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ । ସେ ସୁବର୍ଣ୍ଣ ଗୋଳିଆ ପାଣିର ଫାଇଦା ଉଠାଇଲେ କାନ୍ତିଲାଲ । ଦୀର୍ଘ ଦଶବର୍ଷ ଚାଲିଲା ଏହି ବିବାଦୀୟ ସ୍ଥିତି । ଓଡ଼ିଶା କମିଶନର ଗୋଲ୍ଡ଼ ସବାରୀ, ଜନ୍ ବୀମ୍‌ସ ଓଡ଼ିଆ ଭାଷାର ମୌଳିକତାକୁ ସ୍ୱୀକାର କଲେ । ପ୍ରମାଣ ମଧ୍ୟ କଲେ । ଡିବେଟିଂ କ୍ଲବ୍, କଟକ ସୋସାଇଟି, ଉତ୍କଳ ହିତୈଷିଣୀ ସଭା, ଉତ୍କଳ ଦୀପିକା, ସମ୍ବାଦ ବାହିକା– ଏସବୁ ଅନୁଷ୍ଠାନ ଆଉ ପତ୍ରପତ୍ରିକା । ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା ପାଇଁ ବ୍ରତୀ ହେଲେ । ଆଗେଇ ଆସିଲେ ଭାଷାପ୍ରେମୀ ଓଡ଼ିଆଏ । ତାଙ୍କ ସହ ହାତ ମିଳାଇଲେ ଓଡ଼ିଆ ଭାଷା–ପ୍ରୀତି–ବିହ୍ୱଳ କେତେକ ସ୍ଥାୟୀ ବାସିନ୍ଦା ବଙ୍ଗାଳୀ । ସେମାନଙ୍କ ମଧ୍ୟରେ ପ୍ୟାରୀମୋହନ ଆଚାର୍ଯ୍ୟ, କର୍ମବୀର ଗୌରୀଶଙ୍କର ରାୟ ଚିରସ୍ମରଣୀୟ । ବ୍ୟାସକବି ଫକୀର ମୋହନ ସେନାପତି, ନୀଳମଣି ବିଦ୍ୟାରତ୍ନ, ବାମଣ୍ଡା ରାଜା ବାସୁଦେବ ସୁଢ଼ଳ ଦେବଙ୍କ ନାମ ମଧ୍ୟ ସ୍ମରଣୀୟ । ଏମାନେ ସମସ୍ତେ ନବସମ୍ଭୂତ ଶିକ୍ଷିତ ସମ୍ପ୍ରଦାୟ । ସେମାନେ ନିଜକୁ ବନ୍ଧୁ ଭାବରେ ସଂଗଠିତ କଲେ । ଜନ୍ମନେଲା 'ଓଡ଼ିଆ ଜାତୀୟତାବାଦ' । ବିଭିନ୍ନ ପ୍ରକାର ସମ୍ବାଦପତ୍ରରେ ନବଜାଗରଣର ବାର୍ତ୍ତା । କ୍ରମେ ଓଡ଼ିଆଏ ସଚେତନ ହେଲେ । ଆପଣାର ସ୍ୱାଭିମାନ ରକ୍ଷା ପାଇଁ ଦୃଢ଼ପ୍ରତିଜ୍ଞ । ଆପାତତଃ ୧୮୭୦ ବେଳକୁ ଓଡ଼ିଆ ଭାଷା ସଂକଟରୁ ମୁକୁଳିଲା । ସ୍ୱତନ୍ତ୍ର ଭାଷାର ମାନ୍ୟତା ପାଇଗଲା । ଏବେ ସଚେତନ ଯୁବଗୋଷ୍ଠୀଙ୍କ ଲକ୍ଷ୍ୟ ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣ । ଉତ୍କଳ ଭାଷା ଉନ୍ନତି ସଭା, ଉତ୍କଳ ଭାଷୋଦ୍ଦୀପନା ସଭା, ଉତ୍କୋଳୋଲ୍ଲାସିନୀ, ଗଞ୍ଜାମ ଉତ୍କଳ ହିତବାଦିନୀ ସଭା, ବାଲେଶ୍ୱର ନେସନାଲ ସୋସାଇଟି, ଉତ୍କଳ ସାହିତ୍ୟ ସମ୍ମିଳନୀ, ଉତ୍କଳ ସମ୍ମିଳନୀ ସଭା, ଓଡ଼ିଶା ଆଦି ପ୍ରାୟ ୫୪ଟି ଅନୁଷ୍ଠାନ । ତତ୍କାଳୀନ ସାମାଜିକ ସମସ୍ୟା ସମାଧାନ ଥିଲା ଏଗୁଡ଼ିକର ଲକ୍ଷ୍ୟ । ଅନୁଷ୍ଠାନଗୁଡ଼ିକ ମଧ୍ୟରୁ ଅଧିକାଂଶ ଥିଲେ ଅଳ୍ପାୟୁ । ତଥାପି ଓଡ଼ିଆ ଜାତି ପ୍ରାଣରେ ସ୍ୱତନ୍ତ୍ର ଆଶାରେ ଅରୁଣିମା ସୃଷ୍ଟି ହେଲା । ଶେଷରେ ଜନ୍ମନେଲା ଉତ୍କଳ ସମ୍ମିଳନୀ (୧୯୦୩) । ଓଡ଼ିଶାର ଭାଗ୍ୟରବି ଉଦୟରେ ସହାୟକ ହେଲା । ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣରେ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଉତ୍କଳ ସମ୍ମିଳନୀ ଥିଲା ମଧୁସୂଦନଙ୍କ ମାନସପୁତ୍ର । ଏଥିସହ ସାମିଲ ହେଲେ ଗୋପବନ୍ଧୁ ଦାସ, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ, ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି । ଉତ୍କଳ ସମ୍ମିଳନୀ କାର୍ଯ୍ୟ ଦକ୍ଷତା ବୃଦ୍ଧିରେ ପାରଳା ରାଜାଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

୧୮୯୨ ମସିହା, ବୈଶାଖ ଅମାବାସ୍ୟା, ଅପ୍ରେଲ ୨୬ ତାରିଖ । ପାରଳା ରାଜପରିବାରରେ ଜନ୍ମନେଲା ଶିଶୁଟିଏ । ନାଁ ଦିଆଗଲା କୃଷ୍ଣଚନ୍ଦ୍ର, ସତରେ ସେ ଅମାବାସ୍ୟାର ଚନ୍ଦ୍ର । କୃଷ୍ଣଚନ୍ଦ୍ରଙ୍କ ବିଦ୍ୟାଳୟ ଶିକ୍ଷା ସ୍ଥାନୀୟ ମହାରାଜା ହାଇସ୍କୁଲରେ । ତା'ପରେ ତାଙ୍କ ନାମଲେଖା ହେଲା ନ୍ୟୁଇଙ୍ଗଟନ ରାଜକୁମାର କଲେଜରେ । ତାଙ୍କର ଶିକ୍ଷକ ଥିଲେ ମିଃ କାମରନ୍ ମୋରସନ୍ । ତାଙ୍କଠାରୁ ସାଧାରଣ ଜ୍ଞାନ, ଇତିହାସ, ବିଜ୍ଞାନ ଶିକ୍ଷା କଲେ । ହେଲେ ପାରଦର୍ଶୀ । ୧୯୧୩ ମସିହାରେ କୃଷ୍ଣଚନ୍ଦ୍ରଙ୍କର ରାଜାଭିଷେକ ଉତ୍ସବ ହେଲା । ସତ୍ୟପାଠ କରାଇଲେ କୁଳ ପୁରୋହିତ ମଧୁସୂଦନ ରାଜଗୁରୁ । ୫ଟି ବିଷୟ ଉପରେ ସତ୍ୟପାଠଟି ପର୍ଯ୍ୟବସିତ – (୧) ପିତାଙ୍କ ରାଜକୋଷରେ ସଞ୍ଚିତ ୨୫ ଲକ୍ଷ ଟଙ୍କାକୁ ସ୍ପର୍ଶ ନକରିବା (୨) ପୂର୍ବ କୀର୍ତ୍ତିକୁ ଅକ୍ଷୁଣ୍ଣ ରଖିବା, (୩) ପ୍ରଜା ମଙ୍ଗଳ କାର୍ଯ୍ୟରେ ମନୋନିବେଶ, (୪) ପାଦରେ ଚାଲିଚାଲି ଯାଇ ବ୍ରହ୍ମକପାଳିଠାରେ ପିତୃପୁରୁଷଙ୍କୁ ପିଣ୍ଡଦାନ ଓ (୫) ସ୍କଟ୍‌ଲାଣ୍ଡର ବନାନୀ ଭିତରେ ପଶୁ ଶିକାର କରିବେ – ଏସବୁ ପ୍ରତି ରାଜା ଯତ୍ନଶୀଳ ଥିଲେ । ପୂର୍ବବର୍ତ୍ତୀ ରାଜାମାନଙ୍କ ପରି ମାତୃଭୂମି ପ୍ରୀତି ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । କୃଷ୍ଣଚନ୍ଦ୍ର ପଢୁଥାନ୍ତି ମାନ୍ଦ୍ରାଜରେ । ସେଠାରେ ଥିବା ସଂଖ୍ୟାଲଘୁ ଓଡ଼ିଆଙ୍କ ଦୁଃଖ, ଦୁର୍ଦ୍ଦଶା ତାଙ୍କୁ ମ୍ରିୟମାଣ କରିଥିଲା । ଉତ୍କଳ ସମ୍ମିଳନୀର ମୁଖ୍ୟ ଦାବି ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣ । କୃଷ୍ଣଚନ୍ଦ୍ର ବହୁ ଭାବରେ ପ୍ରଭାବିତ ହେଲେ । ୧୯୦୪ରୁ ୧୯୧୧ । ଏହାରି ମଧ୍ୟରେ ବହୁବାର ଉତ୍କଳ ସମ୍ମିଳନୀ ଗଞ୍ଜାମ କଥା ଉଠାଇଲା । ଏହି ଅଞ୍ଚଳକୁ ଓଡ଼ିଶାରେ ମିଶାଇବାକୁ ଦାବିପତ୍ର ପ୍ରଦାନ କଲା । ମଧୁବାବୁ ଲଣ୍ଡନ ଯାତ୍ରା କଲେ (୧୯୦୮) । ସେଠାରେ ଓଡ଼ିଶା ପ୍ରସଙ୍ଗ ଉଠାଇଲେ । ତେଣେ ପଡ଼ୋଶୀ ପ୍ରଦେଶମାନଙ୍କରେ ଓଡ଼ିଶା ଆନ୍ଦୋଳନର ଘୋର ବିରୋଧ । ମାନ୍ଦ୍ରାଜରେ ତେଲୁଗୁମାନେ ଏଥିରେ ସାମିଲ ହେଲେ, ଆନ୍ଦୋଳନକୁ ଯୋରଦାର୍ କଲେ । ମାନ୍ଦ୍ରାଜ ଗଭର୍ଣ୍ଣର ଲର୍ଡ଼ ପେଟଲାଣ୍ଡ । ବ୍ରହ୍ମପୁରଠାରେ ଓଡ଼ିଆମାନଙ୍କର ସାକ୍ଷ୍ୟ ନେଲେ, ଆନ୍ଧ୍ରଭାଷା ବିବର୍ଦ୍ଧିନୀ ସଭାର ମଧ୍ୟ । ଏଇଟି ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ରାଜା କୃଷ୍ଣଚନ୍ଦ୍ର ଆଉ ନୀରବଦ୍ରଷ୍ଟା ରହିଲେନି । ଏଣିକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ – ଏଇ ତାଙ୍କର ପଣ ଓ ପ୍ରତିଜ୍ଞା ।

କୃଷ୍ଣଚନ୍ଦ୍ର ଗଜପତି ବିବାହ କଲେ ଖରସୁଆଁରେ । ସିଂହଭୂମିର ଓଡ଼ିଆ ନେତା କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ । ଦେଶ ମାତୃକାର ସେବା । ଏଥିପାଇଁ ସେ କୃଷ୍ଣଚନ୍ଦ୍ର ରାଜାଙ୍କୁ ଉତ୍ସାହିତ କଲେ । କୃଷ୍ଣଚନ୍ଦ୍ର କଟକଠାରେ ମଧୁସୂଦନଙ୍କୁ ଭେଟିଲେ (୧୯୧୮) । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାରଳାଖେମୁଣ୍ଡିରେ ହେବା ସିଦ୍ଧାନ୍ତ ହେଲା । ଲୁହା ତାତେ, ହାତୁଡ଼ି ପାହାରରେ ସହଜରେ ନରମି ଯାଏ । ବିଦେଶୀ ଇଂରେଜ ଜର୍ମାନୀ ସହ ଯୁଦ୍ଧରେ ଲିପ୍ତ । ଭାରତଠାରୁ ସହଯୋଗ ଲୋଡ଼ିଲେ ଇଂରେଜମାନେ । ଗାନ୍ଧିଜୀ ମଧ ଏହି ସହଯୋଗ ସପକ୍ଷରେ । ସମଗ୍ର ଦେଶ ମିଶ୍ରଣ ଆନ୍ଦୋଳନ ନୁହେଁ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବି ଯୁକ୍ତିଯୁକ୍ତ – ଏ କଥାଟି ରାଜା କହିଲେ । ଯୁବରାଜଙ୍କ ଏ ମତଟି ଥିଲା ଗୁରୁତ୍ୱପୂର୍ଣ୍ଣ । ସମର୍ଥନ କଲେ ଗୋପବନ୍ଧୁ ଦାସ, ଶଶିଭୂଷଣ ରଥ, ଧରାକୋଟ ରାଜା, ଫକୀରମୋହନ ସେନାପତି, ଜଗବନ୍ଧୁ ସିଂହ । ଏମାନଙ୍କ ସହ ସାମିଲ ହେଲେ ଆଉ କେତେକ ରାଜା, ଅନେକ ଦେଶ ହିତୈଷୀ ବି । ରାଜାଙ୍କ ପ୍ରସ୍ତାବ ଗୃହୀତ ହେଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବି ପାଇଁ ସମସ୍ତେ ମାଗିଲେ । ପାରଳାଖେମୁଣ୍ଡିରେ ସମ୍ମିଳନୀର ଅଧିବେଶନ । ଏଥିରେ ବିକ୍ରମ ଦେବବର୍ମା ସଭାପତିତ୍ୱ କଲେ । ଏହି ଅଧିବେଶନ ପାଇଁ ରାଜା କୃଷ୍ଣଚନ୍ଦ୍ର ଦାନ କଲେ ୧୦,୦୦୦/– ଟଙ୍କା । ସଭାରେ ଚମତ୍କାର ଭାଷଣ ବି ଦେଲେ । ଉପସ୍ଥିତ ସଭ୍ୟମାନେ ଅଭିଭୂତ । ଗୋପବନ୍ଧୁ ଦାସ ରାଜାଙ୍କ କୃତିତ୍ୱ ବଖାଣିଲେ । ଲେଖିଲେ 'ସତ୍ୟବାଦୀ'ରେ – 'ପାରଳାର ନବୀନ ରାଜା ଶ୍ରୀମାନ୍ କୃଷ୍ଣଚନ୍ଦ୍ର ନାରାୟଣ ଦେବ ଏ ଅଧିବେଶନରେ କାର୍ଯ୍ୟ ନିର୍ବାହରେ ଯେପରି ସରଳତା, ସୌଜନ୍ୟ କାର୍ଯ୍ୟକୌଶଳ, ଧୈର୍ଯ୍ୟ ଓ ମୁକ୍ତହସ୍ତତା ଦେଖାଇଛନ୍ତି, ସେଥିରେ ଓଡ଼ିଆମାନଙ୍କ ଅଭ୍ୟୁଦୟ ନିମନ୍ତେ ଶୁଭଯୋଗ ଉପସ୍ଥିତ ହୋଇଅଛି ବୋଲି ସମସ୍ତଙ୍କର ବିଶ୍ୱାସ ଜନ୍ମାଇଛି । କିଶୋର କୃଷ୍ଣଚନ୍ଦ୍ର ଆପଣାର ଗଜପତି ବଂଶ

ଗରିମାର ପରିଚୟ ଦେଇଅଛନ୍ତି ।' ଏଥିରୁ ରାଜାଙ୍କ ବିଦ୍‌ବତ୍ତାର ପରିଚୟ ମିଳେ ।

୧୯୨୩ ମସିହା । ବ୍ରହ୍ମପୁରର ଶଶିଭୂଷଣ ରଥ । ମାନ୍ଦ୍ରାଜ ବିଧାନସଭାରେ ଏକ ଦୀକ୍ଷାନ୍ତ ଭାଷଣ ଦେଲେ । ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦୃଢ଼ ଦାବି କଲେ । ମାନ୍ଦ୍ରାଜ ସରକାର ଏହାର ତୀବ୍ର ବିରୋଧୀ । କୃଷ୍ଣଚନ୍ଦ୍ର ଗଜପତି ସରକାରଙ୍କ ବୈମାତୃକ ମନୋଭାବର ଦୃଢ଼ ପ୍ରତିବାଦ କଲେ । ଏଥିପ୍ରତି ଇଂରେଜ ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ । ୧୯୨୪ ମସିହା, ଗଠନ ହେଲା ସି.ଏଲ୍. ଫିଲିପ – ଡଫ୍ କମିଟି । କରଦ ରାଜ୍ୟର ପଲିଟିକାଲ ଏଜେଣ୍ଟ ସି.ଏଲ୍. ଫିଲିପ, ବିଶାଖାପାଟଣାର ଜିଲ୍ଲାପାଳ ଏ.ସି.ଡଫ୍ – ଏମାନେ କମିଟିରେ ରହିଲେ । ରାଜା କୃଷ୍ଣଚନ୍ଦ୍ର କମିଟି ନିକଟରେ ଓଡ଼ିଶାର ବହୁ ଐତିହାସିକ ତଥ୍ୟ ଉପସ୍ଥାପନ କଲେ । ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସୁଚିନ୍ତିତ ମତ ରଖିଲେ । ମାନ୍ଦ୍ରାଜ ସରକାରଙ୍କ ଘୋର ବିରୋଧ । କମିଟି କାର୍ଯ୍ୟକାରୀ ହୋଇପାରିଲାନି । କିନ୍ତୁ ଫିଲିପ୍ ଉଚ୍ଚ ପ୍ରଶଂସା କଲେ ରାଜାଙ୍କୁ । ଲେଖିଲେ –''ଗଞ୍ଜାମର ସିନିଅର ଜମିଦାର ପାରଳାଖେମୁଣ୍ଡି ରାଜା ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଆବଶ୍ୟକ ଦୃଢ଼ ମତପୋଷଣ କରିଛନ୍ତି ।'' କମିଟିର ରିପୋର୍ଟ ପାରଳା ରାଜାଙ୍କ ସ୍ୱଚ୍ଛତା ତଥା ନିଜସ୍ୱ ଇଚ୍ଛା ଉପରେ ସମ୍ପୂର୍ଣ୍ଣ ପର୍ଯ୍ୟବସିତ – ଏ କଥା ବି ଉଲ୍ଲେଖ କଲେ ।

୧୯୨୭ ମସିହା, ସର୍ବଭାରତୀୟ ସ୍ତରରେ ଶାସନ ସଂସ୍କାର । କମିଟି ଗଠିତ ହେଲା । ଏହା ସାଇମନ କମିଶନ । ଏଥିରେ ଜଣେ ହେଲେ ଭାରତୀୟ ସଦସ୍ୟ ନଥିଲେ । ଭାରତୀୟ ଜାତୀୟ କଂଗ୍ରେସ କମିଶନଙ୍କୁ ଘୋର ବିରୋଧ କଲା । କିନ୍ତୁ ଉତ୍କଳ ସମ୍ମିଳନୀ ଏହା ସପକ୍ଷରେ । ରାଜା କୃଷ୍ଣଚନ୍ଦ୍ର, ମଧୁସୂଦନ ଦାସ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ– ଏମାନେ କମିଶନଙ୍କୁ ସ୍ୱାଗତ କଲେ । ମାନ୍ଦ୍ରାଜରେ ସ୍ୱୟଂ ଗଜପତି କୃଷ୍ଣଚନ୍ଦ୍ର କମିଟି ଆଗରେ ସାକ୍ଷ୍ୟ ଦେଲେ । ସାଇମନ କମିଶନଙ୍କ ହୃଦ୍‌ବୋଧ ହେଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଏକ ଯୁକ୍ତିଯୁକ୍ତ ପ୍ରସଙ୍ଗ – ଏ କଥା କମିଶନ ସ୍ୱୀକାର କଲେ । ଲଣ୍ଡନରେ ଚାଲିଲା ଗୋଲଟେବୁଲ ବୈଠକ । ବୈଠକରେ ଯୋଗଦେବା ପାଇଁ ପାରଳା ରାଜା ମନୋନୀତ । କଟକ ସହରରେ ସଭା ବସିଲା । ଲଣ୍ଡନ ଯାତ୍ରା ପୂର୍ବରୁ ରାଜାଙ୍କ ସମ୍ବର୍ଦ୍ଧନାର ବ୍ୟବସ୍ଥା ହେଲା । ଆୟୋଜକ ବ୍ରଜସୁନ୍ଦର ଦାସ, ମଧୁସୂଦନ ଦାସ, ଭୁବନାନନ୍ଦ ଦାସ, ବିଶ୍ୱନାଥ କର, ଏମାନଙ୍କ ସହ ଅନ୍ୟାନ୍ୟ ନେତୃବୃନ୍ଦ ଯୋଗଦେଲେ । ମାତ୍ର ଓଡ଼ିଶାର କେତେକ କଂଗ୍ରେସ ସଦସ୍ୟ ସ୍ଲୋଗାନ୍ ଦେଲେ 'ପାରଳା ରାଜା ଫେରିଯାଅ' । ଦୃଢ଼ପ୍ରତିଜ୍ଞ ରାଜା ତିଳେମାତ୍ର ବିଚଳିତ ହେଲେନି । ଯୋଗଦେଲେ ଗୋଲଟେବୁଲ ବୈଠକରେ । ସେତେବେଳକୁ ବୈଠକରେ ପ୍ରସ୍ତାବ ତିଆରି ସରିଥିଲା । ରାଜା ଭେଟିଲେ ଉଇଲିୟମ୍ ଜୋଏଟଙ୍କୁ । ସେ ଗୋଲଟେବୁଲ୍ ବୈଠକ ଆୟୋଜନ କମିଟିର ଅଧକ୍ଷ । ଜୋଏଟ୍ ରାଜାଙ୍କ ଅନୁରୋଧ ରକ୍ଷାକଲେ । ରାଜା ଦେଲେ ନିର୍ଭୀକ ଭାଷଣ । ସେ କୋଟିଏ ଓଡ଼ିଆଙ୍କର ପ୍ରତିନିଧି, ସେଇମାନଙ୍କ ନ୍ୟାଯ୍ୟ ଦାବି ଆଜି ଉପସ୍ଥାପନ କରୁଛନ୍ତି । ସ୍ୱତନ୍ତ୍ର ଉତ୍କଳ ବିନା ଓଡ଼ିଆ ସ୍ୱାର୍ଥରକ୍ଷା ହେଇପାରିବନି, ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମିଶିଲେ ରାଜସ୍ୱ ବଢ଼ିବ, ଦୁଇ କୋଟିରେ ପହଞ୍ଚିବ– ଏ ସବୁ କଥା ସୂଚାଇଲେ । ଇଂରେଜ ସରକାର ପ୍ରଭାବିତ ହେଲେ । ରାଜାଙ୍କ ଦାବିକୁ ଯଥାର୍ଥ ମଣିଲେ । ରାଜା ଲଣ୍ଡନରୁ ଫେରିଲେ । କଟକରେ ଚାଲିଲା କୃଷ୍ଣଚନ୍ଦ୍ରଙ୍କ ସମ୍ବର୍ଦ୍ଧନା ସଭା । ସଭାରେ ବୀରକିଶୋର ରାୟ ତାଙ୍କୁ ଉଚ୍ଚ ପ୍ରଶଂସା କଲେ । କାଞ୍ଚି ଯୁଦ୍ଧରେ ସ୍ୱୟଂ ଜଗନ୍ନାଥ ରାଜା ପୁରୁଷୋତ୍ତମଙ୍କୁ ବିଜୟୀ କଲେ । ଠିକ୍ ସେମିତି ଗଙ୍ଗ ନରପତି ବଂଶଜ କୃଷ୍ଣଚନ୍ଦ୍ର ଓଡ଼ିଶାକୁ ବିଜୟୀ କଲେ । ତାଙ୍କ ପ୍ରଶଂସାର ଏହା ଥିଲା ମୁଖ୍ୟ ସ୍ୱର । ପ୍ରଦେଶଗୁଡ଼ିକର ସୀମା ନିର୍ଦ୍ଧାରଣ ପାଇଁ କମିଟି ଗଠନ କରାଗଲା । ଅଧକ୍ଷ ରହିଲେ ସାମୁଏଲ୍ ଓଡ଼େନେଲ । କମିଟିର ଅନ୍ୟ ଦୁଇ ସଦସ୍ୟ (୧) ଏଚ୍.ଏମ୍. ମେହେଟ୍ଟା, (୨) ଟି. ଆର୍. ଫୁକନ । ଏଇ କମିଟିରେ ରାଜା ରହିଲେ ସହଯୋଗୀ ସଦସ୍ୟ । ଓଡ଼େନେଲ୍ କମିଟି ଆଗରେ ରାଜା କୃଷ୍ଣଚନ୍ଦ୍ର ଓଡ଼ିଶା ସପକ୍ଷରେ ଢେର୍ ଯୁକ୍ତି ବାଢ଼ିଲେ ।

୧୯୩୩ ମସିହା, ମାର୍ଚ୍ଚ ୨୭ ତାରିଖରେ ପ୍ରକାଶ ପାଇଲା ଓଡ଼ିଶା ପ୍ରଦେଶ ଗଠନ ସମ୍ବନ୍ଧୀୟ ଶ୍ୱେତପତ୍ର । ଏଥିରେ ଉତ୍କଳ ସମ୍ମିଳନୀ ସନ୍ତୁଷ୍ଟ ନଥିଲା । ମଧୁସୂଦନଙ୍କଠାରୁ ପ୍ରେରଣା ପାଇଲେ କୃଷ୍ଣଚନ୍ଦ୍ର । ଦ୍ୱିତୀୟ ଥର ବିଲାତ ଗଲେ, ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସଙ୍କୁ ସାକ୍ଷାତ୍ କଲେ । ସେ ରାଜାଙ୍କୁ ସହାନୁଭୂତି ସହ ଶୁଣିଲେ । ସୁପାରିସ୍ କଲେ ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟି ଗଠନ ପାଇଁ । ଏହାର ଅଧ୍ୟକ୍ଷ ଲିନ୍‌ଲିଥଗୋ । ଏହି କମିଟିକୁ ତଥ୍ୟ ଯୋଗାଇବା ପାଇଁ ସବ୍ କମିଟି ହେଲା । ଏଥିରେ ରହିଲେ କୃଷ୍ଣଚନ୍ଦ୍ର ଗଜପତି, ଖଲିକୋଟର ରାଜା, ବିଶିଷ୍ଟ ଆଇନଜ୍ଞ ଲିଙ୍ଗରାଜ ପାଣିଗ୍ରାହୀ, ତୁଙ୍ଗ ନେତା ଭୁବନାନନ୍ଦ ଦାସ, ଶ୍ୟାମସୁନ୍ଦର ଗନ୍ତାଏତ । ସବ୍ କମିଟିର ନେତୃତ୍ୱ ନେଇଥିଲେ ପାରଳା ରାଜା । ପାରଳାଖେମୁଣ୍ଡିର ଏକ ତୃତୀୟାଂଶ ଅଞ୍ଚଳ । ସେଠାରେ ୫୦ ପ୍ରତିଶତରୁ ଅଧିକ ଓଡ଼ିଆ । ସେଇସବୁ ଅଞ୍ଚଳ ଓଡ଼ିଶାରେ ମିଶ୍ରଣ ପାଇଁ କମିଟି ରାୟ ଦେଲେ । ମାତ୍ର ଉକ୍ତ ପ୍ରସ୍ତାବ ଉତ୍କଳ ସମ୍ମିଳନୀ ଦ୍ୱାରା ଗ୍ରହଣଯୋଗ୍ୟ ହୋଇନଥିଲା ।

୧୯୩୪ ମସିହା, କୃଷ୍ଣଚନ୍ଦ୍ର ଦିଲ୍ଲୀ ଗଲେ । ଅନ୍ୟମାନଙ୍କ ସହ ସାକ୍ଷାତ୍ କଲେ ଲର୍ଡ଼ ୱେଲିଙ୍ଗ୍‌ଡ଼ନଙ୍କୁ । ବହୁତ ସମୟ ଚର୍ଚ୍ଚା ଚାଲିଲା । ପାରଳା ମହାରାଜାଙ୍କ ଜମିଦାରୀର କ୍ଷେତ୍ରଫଳ ୬୧୮ ବର୍ଗ ମାଇଲ, ଏଥିରୁ ୨୦୬ ବର୍ଗ ମାଇଲ ଓଡ଼ିଶାରେ ଅନ୍ତର୍ଭୁକ୍ତ ହେବା ସିଦ୍ଧାନ୍ତ ହେଲା । ଜଏଣ୍ଟ କମିଟି ଏ ନିଷ୍ପତ୍ତିକୁ ଗ୍ରହଣ କରିନେଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୀମା ଚୂଡ଼ାନ୍ତ ହେଲା । ଗଠିତ ହେଲା ନବ ଉତ୍କଳ (୧ ଅପ୍ରେଲ , ୧୯୩୬) । ମୁଖ୍ୟତଃ ଛଅଗୋଟି ଜିଲ୍ଲା – କୋରାପୁଟ, ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର ଓ ସମ୍ବଲପୁର – ଏସବୁ ଜିଲ୍ଲାକୁ ନେଇ ଓଡ଼ିଶା ପାଇଲା ନୂଆ ପରିଚୟ । ସେତେବେଳକୁ ଗୋପବନ୍ଧୁ (୧୯୨୮), ମଧୁସୂଦନ ଦାସ (୧୯୩୪) ଆରପାରିରେ । ରାଜା କୃଷ୍ଣଚନ୍ଦ୍ର ଜୀବଦ୍ଦଶାରେ ଦେଖିଲେ ନୂଆ ଓଡ଼ିଶାକୁ । ତାଙ୍କ ପ୍ରାଣତୃପ୍ତ ହେଲା । ସେ ରହିଥିଲେ ଆଜୀବନ ମହାରାଜା । ବାସ୍ତବିକ ସେ ଜଣେ ସ୍ୱାଭିମାନୀ ଓଡ଼ିଆ, ଯଶସ୍ୱୀ ପୁରୁଷ । ନବଉତ୍କଳ ନିର୍ମାଣର ଅନ୍ୟତମ କର୍ଣ୍ଣଧାର । ୧୯୭୪ ମସିହା, ମେ' ମାସ ୨୫ ତାରିଖ । ଉତ୍କଳ ଜନନୀ ହରାଇଲା ତା'ର ଅନ୍ୟତମ ସୁଯୋଗ୍ୟ ସନ୍ତାନ କୃଷ୍ଣଚନ୍ଦ୍ରଙ୍କୁ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କ୍ଷତ୍ରିୟର ବୀର୍ଯ୍ୟ, କୃଷକର ଧୈର୍ଯ୍ୟ, ବ୍ରାହ୍ମଣର ପବିତ୍ରତା, ବଣିକର ଶୌର୍ଯ୍ୟ ତାଙ୍କଠି ଠୁଳ ଥିଲା । ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ପାଳିତ ହେଉଥାଏ । ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଦିବଂଗତ ରାଜାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇଲେ– ''ଇତିହାସ ପ୍ରସିଦ୍ଧ ପବିତ୍ର ଗଙ୍ଗବଂଶ । ଏହି ବଂଶର ନରପତି ଅପୂର୍ବ ଯଶକୀର୍ତ୍ତି ଅର୍ଜନ କରିଛନ୍ତି । ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଅଦ୍ୟତମ ଯୁଗରେ ପାରଳାରେ ଜନ୍ମଗ୍ରହଣ କରି ସେହି ପ୍ରଦୀପ୍ତ ବଂଶର ଅପୂର୍ବ ପ୍ରତିଭା ବହନ କରିଥିଲେ''– ଏହାଥିଲା ତାଙ୍କ ବକ୍ତବ୍ୟର ମୁଖ୍ୟାଂଶ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ କୃଷ୍ଣଚନ୍ଦ୍ରଙ୍କ ଅବଦାନ ଅତୁଳନୀୟ । ଏ ଜାତିର ସେ ଚିର ନମସ୍ୟ ।

---

ସା/ପୋ: ପରୁଷୋତ୍ତମପୁର
ଜି : କେନ୍ଦ୍ରାପଡ଼ା



# କବି ଓ ପ୍ରକୃତି ପ୍ରେମ

ସୁଚିତ୍ରା ବେହେରା

କବି ମାତ୍ରକେ ଭାବୁକ, ସୌନ୍ଦର୍ଯ୍ୟ ପିପାସୁ ଓ ପ୍ରକୃତିପ୍ରେମୀ । ଏହି ଜଗତର ସ୍ରଷ୍ଟା ସ୍ୱୟଂ ଭଗବାନଙ୍କ ଭଳି କବିଟିଏ ହେଉଛି ସାହିତ୍ୟ ସୌଧର ସ୍ରଷ୍ଟା । ସୌନ୍ଦର୍ଯ୍ୟମୟୀ ପ୍ରକୃତିର ଉପାସକ ହୋଇ ନପାରିଲେ କବିଟିଏ କବିତାର କଳା କୋଣାର୍କ ନିର୍ମାଣ କରିପାରେ ନାହିଁ । ପ୍ରକୃତିର ମନୋରମ ଦୃଶ୍ୟରାଜି କବିର ମାନସପଟ୍ଟରେ ଏଭଳି ଗଭୀର ରେଖାପାତ କରେ ଯେ, ସେ କ୍ଷଣିକରେ ଆତ୍ମହରା ହୋଇପଡ଼େ । ତା'ର ସ୍ୱତଃସ୍ଫୂର୍ତ୍ତ ଭାବନାରୁ ସୃଷ୍ଟି ହୁଏ ଅନେକ କବିତା । ସୁନ୍ଦର, ସାବଲୀଳ ଭାଷାରେ ସେ ତୋଳି ଧରେ ପ୍ରକୃତିର ରମଣୀୟ ଚିତ୍ତକଳ୍ପକୁ ସେଇ କବିତାଗୁଡ଼ିକରେ । ଯେଉଁ କବିତାଗୁଡ଼ିକରେ ରାଗ, ଛାନ୍ଦ, ପ୍ରେମ, ଭାବ, ଆବେଗ ଭରି କବିକୁ ପରିଚିତ କରେ ସ୍ରଷ୍ଟା ଭାବରେ । ସେ କେତେବେଳେ ରୋମାଣ୍ଟିକ୍ କବି, କେତେବେଳେ ସ୍ୱଭାବ କବି, କେତେବେଳେ ପଲ୍ଲୀ ପ୍ରକୃତିର କବି ଓ କେତେବେଳେ ସବୁଜ କବି ରୂପେ ଆଖ୍ୟା ପାଇଥାଏ । ଏହିଭଳି ପ୍ରକୃତିର ଉପାସକ ହୋଇ ବିଶିଷ୍ଟ ପ୍ରତିଭାଶାଳୀ କବି ଭାବେ ପରିଚିତ ହୋଇଥିବା କବିମାନଙ୍କ ମଧ୍ୟରୁ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର ବଙ୍ଗୀୟ କବି ରବୀନ୍ଦ୍ରନାଥ ଅନ୍ୟତମ ।

ବଙ୍ଗୀୟ କବି ରବୀନ୍ଦ୍ରନାଥ ଜଣେ ପ୍ରକୃତିର ଗଭୀର ଉପାସକ ଥିଲେ । ସେ ପ୍ରକୃତି ପ୍ରେମରେ ବିଭୋର ହୋଇ ଜଣେ ରୋମାଣ୍ଟିକ୍ କବି ଭାବେ ପରିଚିତ ହୋଇଥିଲେ । ହୃଦୟ ଭରି ଭଲ ପାଉଥିଲେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟକୁ । ତେଜୋଦୀପ୍ତ ରବିକିରଣ ସକାଳର ଶାନ୍ତ ପରିବେଶରେ ଜଗତକୁ ଯେଉଁ କଅଁଳ ସ୍ପର୍ଶ ଦିଏ ସେଥିରେ ରବୀନ୍ଦ୍ରନାଥ ବିଭୋର ହୋଇପଡନ୍ତି । ଏହାବ୍ୟତୀତ ଅନ୍ଧକାରର କାଳିମା ଭିତରେ ଝଲସୁଥିବା ତାରାପୁଞ୍ଜ ଓଜ୍ୟୋସ୍ନାବିଧୌତ ରଜନୀ, ସବୁଜିମା ମଣ୍ଡିତ ପରିବେଷ୍ଟନୀ ମଧ୍ୟରେ ନିଜକୁ ଆବଦ୍ଧ କରି ଏକ ସୁନ୍ଦର କବିତା ରାଜ୍ୟରେ ବିଚରଣ କରୁଥିଲେ । ଜୀବନରେ ଅନେକ କବିତା ରଚନା କରି ବିଶ୍ୱକବିର ମାନ୍ୟତା ପାଇଥିଲେ । ତାଙ୍କର ଏହି ରୋମାଣ୍ଟିକ୍ ଭାବଧାରା ପରବର୍ତ୍ତୀ କାଳରେ ସବୁଜ ଯୁଗର କବିମାନଙ୍କୁ ଅନେକାଂଶରେ ଅନୁପ୍ରାଣିତ କରିଥିଲା ।

୧୮୪୮ ମସିହାରେ ଜନ୍ମ ଗ୍ରହଣ କରିଥିବା ଓଡ଼ିଆ ସାହିତ୍ୟର ଜଣେ ପ୍ରତିଭାଶାଳୀ କବି ଭାବେ ରାଧାନାଥ ରାୟ ସୁପରିଚିତ । ତାଙ୍କର କାବ୍ୟ ସାଧନାରେ ପ୍ରକୃତିର ଯେଉଁ ମନୋରମ ବିଳାସ ଲକ୍ଷଣୀୟ, ତାହା କେବଳ ଜଣେ ରୋମାଣ୍ଟିକ୍ କବି ଭାବରେ ନୁହେଁ ବରଂ ପ୍ରକୃତିର ଜଣେ ଅନ୍ତରଙ୍ଗ ବନ୍ଧୁ ଭାବେ ପରିଚୟ ପ୍ରଦାନ କରେ । ପ୍ରକୃତିର ଜୀବନ୍ତ ଚିତ୍ରକୁ କାବ୍ୟରେ ପ୍ରତିଫଳିତ କରି ସେ ପ୍ରକୃତିକୁ କରିଛନ୍ତି ରୋମାଣ୍ଟିକ୍‌ପ୍ରବଣ । ଏହାର ବଳିଷ୍ଠ ପ୍ରମାଣ ମିଳେ ତାଙ୍କର 'ଚିଲିକା' କାବ୍ୟରୁ ।

ଗଭୀର ପ୍ରକୃତି ପ୍ରୀତି ହିଁ ରାଧାନାଥଙ୍କୁ କରିଛି ରୋମାଣ୍ଟିକ୍ ପ୍ରବଣ ଓ କଳ୍ପନା ବିଳାସୀ । ଏହି କଳ୍ପ ଦୃଷ୍ଟିରେ ପ୍ରକୃତିର କମନୀୟ ଦୃଶ୍ୟକୁ କାବ୍ୟରେ ରୂପ ଦେବାରେ ରାଧାନାଥ ହେଉଛନ୍ତି ଅଦ୍ୱିତୀୟ ସ୍ରଷ୍ଟା । ତାଙ୍କର 'ପାର୍ବତୀ' ଓ 'ଚନ୍ଦ୍ରଭାଗା' ଆଦି  କାବ୍ୟରେ ମଧ୍ୟ ଏହି ପ୍ରକୃତି ପ୍ରୀତି ପ୍ରାଣବନ୍ତ ହୋଇଅଛି ।

ଗଭୀର ପ୍ରକୃତି ପ୍ରେମର ନିଚ୍ଛକ ପରିପ୍ରକାଶ କରିଥିବା ଆଉ ଜଣେ ମହାନ୍ ସ୍ରଷ୍ଟା ହେଉଛନ୍ତି ବ୍ରାହ୍ମବାଦୀ କବି ମଧୁସୂଦନ ରାଓ । ୧୮୫୩ ମସିହାରେ ପୁରୀଠାରେ ଏକ ଧାର୍ମିକ ପରିବାରରେ ଜନ୍ମଲାଭ କରି ଭକ୍ତ କବି ରୂପେ ପରିଚିତ । ତାଙ୍କର ପ୍ରକୃତି ପ୍ରେମ ଅତିନ୍ଦ୍ରିୟ ଭାବ ଚେତନା ଦେଇ ବିମୁଗ୍ଧ ରୂପେ ପ୍ରକାଶିତ । ତାଙ୍କର କବିତାରେ ପ୍ରକୃତି ଓ ପରମେଶ୍ୱର ହୋଇଛନ୍ତି ଏକ ଓ ଅଭିନ୍ନ । ପ୍ରକୃତି ଭିତରେ ସେ ଉପଲବ୍ଧି କରିଛନ୍ତି ଅନନ୍ତ ବ୍ରହ୍ମ । ପ୍ରକୃତି ବର୍ଣ୍ଣନା ମଧ୍ୟରେ ତାଙ୍କର ବ୍ରହ୍ମବାଦୀ ଚିନ୍ତାଧାରାର ପ୍ରତିଫଳନ ପ୍ରକୃତିକୁ ଶାଶ୍ୱତ ରୂପରେ ଆବିର୍ଭାବ କରିଛି । ପଲ୍ଲୀର ଶାନ୍ତ, କାନ୍ତ କୋମଳ ପ୍ରକୃତି କବିଙ୍କ ହୃଦୟରେ ସୃଷ୍ଟି କରିଛି ଅପୂର୍ବ ଆହ୍ଲାଦ । 'ଆକାଶ ପ୍ରତି', 'ନଦୀ ପ୍ରତି', 'ପଦ୍ମ', 'ଗ୍ରୀଷ୍ମ', 'ବର୍ଷା', 'ବସନ୍ତ', 'ଶରତ', 'ହେମନ୍ତ', 'ଶିଶିର' ଆଦି କବିତାଗୁଡ଼ିକ କବି ପ୍ରକୃତି ପ୍ରେମର ଜୀବନ୍ତ ପ୍ରକାଶ । ସକଳ ପ୍ରାକୃତିକ ସତ୍ତା ମଧ୍ୟରେ ସେ ଯେଉଁ ଧର୍ମୀୟ ଭାବନାକୁ ସନ୍ନିହିତ କରିଛନ୍ତି, ତାହା ବାସ୍ତବରେ ତାଙ୍କ ଭକ୍ତି ଭାବର ପରିଚୟ ପ୍ରଦାନ କରେ । ପ୍ରକୃତି ପ୍ରେମର ନିଦର୍ଶନ ତାଙ୍କର ''ହିମାଚଳେ ଉଦୟୋତ୍ସବ' କବିତାରୁ ସ୍ପଷ୍ଟ ଅନୁମେୟ ।

ପ୍ରକୃତି ପ୍ରେମରେ ଭାବ ବିହ୍ୱଳିତ ଜଣେ ଉଦୀୟମାନ ସ୍ରଷ୍ଟା ହେଉଛନ୍ତି ନନ୍ଦକିଶୋର ବଳ । ୧୮୭୫ ମସିହାରେ ଜନ୍ମଲାଭ କରିଥିବା ଏହି କବିଙ୍କର କାବ୍ୟ–ସ୍ୱାକ୍ଷର ଯେତିକି ବିସ୍ମୟକର ସେତିକି ମନ୍ମୟ ମଧ୍ୟ । ସେ ହେଉଛନ୍ତି ପଲ୍ଲୀ ଚେତନାର ନିସର୍ଗ କଳାକାର । ତେଣୁ ତାଙ୍କୁ ପଲ୍ଲୀକବି ଭାବେ ମାନ୍ୟତା ପ୍ରଦାନ କରାଯାଇଛି । ପଲ୍ଲୀ ଜୀବନର ସହଜ, ସରଳ ଚିତ୍ର ତାଙ୍କର କବିତାଗୁଡ଼ିକରେ ଯେପରି ପ୍ରତିଫଳିତ ହୋଇଛି, ତାହା ପ୍ରକୃତି ପ୍ରେମର ନିଦର୍ଶନ ଅଟେ । ତାଙ୍କର ଅଦିନ ମେଘ, ବର୍ଷା ମଙ୍ଗଳ, ନିର୍ଝରଣୀ, ଶର୍ମିଷ୍ଠା, ନବବର୍ଷ ଭାବନା ଆଦି କବିତାରେ ପ୍ରକୃତି ପ୍ରୀତି ବେଶ ହୃଦୟସ୍ପର୍ଶୀ ହୋଇପାରିଛି ।

ପ୍ରକୃତି ପ୍ରତି ଏକାନ୍ତ ଅନୁରକ୍ତ ଥିବା ଜଣେ ସ୍ୱାଭାବିକ ଓ ସରଳ, ଶାନ୍ତ କବି ଭାବେ ଗଙ୍ଗାଧର ମେହେରଙ୍କ ଏକ ସ୍ୱତନ୍ତ୍ର ସ୍ଥାନ ରହିଛି କବିତା ଜଗତରେ । ୧୮୬୨ ମସିହାରେ ସେ ଜନ୍ମଲାଭ କରିଥିଲେ । ସେ ଥିଲେ ପ୍ରକୃତି କବି । ମାଟି ଓ ମଣିଷର କବି । ତାଙ୍କର ପ୍ରକୃତି ପ୍ରେମରେ ଗଭୀରତା ଦର୍ଶାଏ 'ଉତ୍କଳ ଲକ୍ଷ୍ମୀ' କାବ୍ୟ । ବନ, ପର୍ବତ, ନଦ–ନଦୀ ଆଦି ପ୍ରାକୃତିକ ଦୃଶ୍ୟର ଜୀବନ୍ତ ଆଲେଖ୍ୟ ପ୍ରଦାନ କରି ସେ ହୋଇଛନ୍ତି ଉତ୍କଳ ମାଟିର ପ୍ରକୃତି କବି । ଏହାବ୍ୟତୀତ ତାଙ୍କ କଳାକୃତିର ବିଶେଷ ସ୍ୱାତନ୍ତ୍ର୍ୟତା ବହନ କରେ 'ତପସ୍ୱିନୀ' ମହାକାବ୍ୟ । ଏହି ମହାକାବ୍ୟରେ ପ୍ରକୃତିର ଚାରୁଚିତ୍ରଣ ମଧ୍ୟ କମ୍ ଜୀବନ୍ତ ନୁହେଁ ।

ପ୍ରକୃତି ପ୍ରୀତିରେ ଭାବବିହ୍ୱଳ ହୋଇ କାବ୍ୟ–କବିତାରେ ଜୀବନ୍ତ ରୂପ ପ୍ରଦାନ କରିଥିବା ଅନ୍ୟ କେତେକ ବରେଣ୍ୟ କବି ପ୍ରତିଭା ହେଉଛନ୍ତି ଗୋପବନ୍ଧୁ ଦାସ, ଫକୀର ମୋହନ, ଗୋଦାବରୀଶ ମିଶ୍ର, ପଦ୍ମଚରଣ ପଟ୍ଟନାୟକ, କୁନ୍ତଳା କୁମାରୀ ପ୍ରଭୃତି । ଏହିପରି କବିଦୃଷ୍ଟିର ଅନ୍ତରଙ୍ଗ ଅନୁଭବରେ ପ୍ରକୃତି ଓ ଜୀବନ ହୋଇଛି ଏକାକାର । ସମ୍ବେଦନଶୀଳ କବି ହୃଦୟର ପ୍ରକୃତି ପ୍ରେମ ସଂପ୍ରସାରିତ ହୋଇଛି ନୂତନ ବୈଭବରେ । ତେଣୁ କାଳ କାଳକୁ କବି ଓ ପ୍ରକୃତି ପରସ୍ପର ଅତି ନିବିଡ଼ ସମ୍ପର୍କରେ ଆବଦ୍ଧ । ପ୍ରକୃତି ହିଁ କବି ଜୀବନର ଏବଂ ସର୍ଜନାର ସର୍ବଶ୍ରେଷ୍ଠ ଆବଶ୍ୟକତା ।

ପ୍ଲଟ୍ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର–୧୮



# ଆଠଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନ

**ସୁରେଶ କୁମାର ପ୍ରଧାନ**

ଉତ୍କଳ ଭୂଖଣ୍ଡର ଆଠଗଡ଼ ଗଡ଼ଜାତର ଗୁରୁଡ଼ିଝାଟିଆ ଗ୍ରାମରେ ୧୮୯୯ ମସିହା ମାର୍ଚ୍ଚ ମାସ ୭ ତାରିଖରେ ପିତା ଢ଼ଆର୍ତ୍ତତ୍ରାଣ ଓ ମାତା ଡ଼ମୁଣୀ ଦେବୀଙ୍କ କୋଳମଣ୍ଡନ କରି ଜନ୍ମ ଗ୍ରହଣ କରିଥିଲେ ମୁକ୍ତିଯୋଦ୍ଧା ଗୋପାଳ ସାହାଣୀ । ଆଠଗଡ଼ର ଏକ ସଭ୍ୟ ଓ ସଚେତନ ଗ୍ରାମ ହିସାବରେ ସ୍ୱତନ୍ତ୍ର ମାନ୍ୟତା ଦାବୀ କରୁଥିବା ତତ୍କାଳେ ଏହିଭଳି ସଂଗ୍ରାମୀଙ୍କୁ ଜନ୍ମ ଦେଇଥିବା ନିଶ୍ଚିତ ଭାବରେ ଗୌରବର ବିଷୟ । ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟରୁ ବାଲ୍ୟ ଶିକ୍ଷା ଗ୍ରହଣ ପରେ ମାମୁଁଘର ଢେଙ୍କାନାଳ ଜିଲ୍ଲାର କାଶିଆଡ଼ିହି ଯିବାକୁ ହୋଇଥିଲା । ଶିକ୍ଷାପ୍ରତି ଅତ୍ୟନ୍ତ ଶ୍ରଦ୍ଧା ରଖିଥିବା ଗୋପାଳ ନିଜ ଅଜାଙ୍କଠାରୁ ଆୟୁର୍ବେଦିକ ଚିକିତ୍ସା ବିଦ୍ୟା ଶିକ୍ଷା କରିଥିଲେ । ପରେ ପ୍ରିନ୍ସ ଆୟୁର୍ବେଦିକ୍ କଲେଜ ବନାରସରୁ ଦୁଇଟି ଡ଼ିଗ୍ରୀ ଯଥାକ୍ରମେ ଆୟୁର୍ବେଦ ଶାସ୍ତ୍ରୀ, ସୂତିକା ଶାସ୍ତ୍ରୀ ଏବଂ କଟକ କବିରାଜି ଟ୍ରେନିଂ ସ୍କୁଲରୁ ବୈଦ୍ୟ ବିଶାରଦ ଉପାଧିରେ ଭୂଷିତ ହୋଇଥିଲେ । ରୋଗୀ ସେବାରେ ନିଜକୁ ନିୟୋଜିତ କରି ଜଣେ ଦକ୍ଷ କବିରାଜର ପରିଚୟ ସୃଷ୍ଟି କରିପାରିଥିଲେ । ଲୋକଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥିବା ସମୟରେ ଦେଶପ୍ରେମର ଭାବ ଉଦ୍ରେକ ହେବାରୁ ସେ ସମାଜସେବୀରୁ ଜଣେ ସ୍ୱାଧୀନତା ସଂଗ୍ରାମୀରୂପେ ତତ୍କାଳୀନ ପ୍ରଜାମଣ୍ଡଳ ଆନ୍ଦୋଳନରେ ଝାସ ଦେଇ ଆଠଗଡ଼ ମାଟି ମା'ର ସମ୍ମାନ ପାଇଁ ଆଗେଇ ଆସିଥିଲେ ।

ଅଷ୍ଟଦୁର୍ଗ ରୂପେ ଖ୍ୟାତ ଆଠଗଡ଼ ଭୂମିରେ ସେତେବେଳେ ଚାଲିଥାଏ ରାଜା ରାଜୁଡ଼ା ଶାସନ । ଏହି ରାଜୁଡ଼ା ଶାସନ ସାଧାରଣ ଜନତାଙ୍କ ପାଇଁ ଅସହ୍ୟ ହେବାରୁ ଆଠଗଡ଼ବାସୀ ତ୍ରାହି ତ୍ରାହି ଡ଼ାକ ଛାଡ଼ିଲେ । ଆଠଗଡ଼ବାସୀଙ୍କ ଏହି ଦୁଃଖ ଯନ୍ତ୍ରଣାର କାହାଣୀ କିଛି ଦରଦୀ ବ୍ୟକ୍ତିଙ୍କ ପ୍ରାଣକୁ ସ୍ପର୍ଶ କରିବାରୁ କ୍ରମେ ମୁରବୀସ୍ଥାନୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ଗୁପ୍ତ ସମ୍ପର୍କ ସ୍ଥାପିତ ହେଲା । ଏହି ମୁରବୀ ବ୍ୟକ୍ତିବୃନ୍ଦ ଆଠଗଡ଼ର ସ୍ୱାଧୀନତା ସଂଗ୍ରାମୀ ରୂପେ ଆବିର୍ଭାବ ହୋଇଥିବା ବେଳେ ଉକ୍ତ ଆନ୍ଦୋଳନ ପ୍ରଜାମଣ୍ଡଳ ଆନ୍ଦୋଳନ ନାମରେ ସମଗ୍ର ସ୍ୱାଧୀନତା ଆନ୍ଦୋଳନକୁ ପ୍ରଭାବିତ କରିଥିଲା । ଆଠଗଡ଼ର ଆଗଧାଡ଼ିରେ ରହିଥିବା ସଂଗ୍ରାମୀମାନଙ୍କ ସହିତ ଜଣେ ଏକନିଷ୍ଠ ସହଯୋଗୀ ଭାବେ ସଂଗ୍ରାମୀ ଗୋପାଳ ସାହାଣୀ ଆନ୍ଦୋଳନରେ ଭାଗନେଇ ଆନ୍ଦୋଳନକୁ ତୀବ୍ରତର କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କଲେ । ୧୯୩୬ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବ ହେବାରୁ ଓଡ଼ିଶାରେ ଜାତୀୟତାର ମହାପ୍ଲାବନ ପ୍ରବାହିତ ହେଲା । ଏହାର ପ୍ରଭାବ ଦେଶୀୟ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନ ତୀବ୍ରତର କରିଥିଲା । ଏହି ସମୟରେ ଜାତୀୟତାର ମହାଭାବରେ ଉଦ୍‌ବୁଦ୍ଧ ହୋଇ ଶ୍ରୀଯୁକ୍ତ ସାହାଣୀ ନିଜର ଘରଦ୍ୱାର ଛାଡ଼ି ଜଣେ ଆନ୍ଦୋଳନକାରୀ ଭାବେ ରାଜୁଡ଼ାଶାସନ ବିରୋଧରେ ସ୍ୱରଉତ୍ତୋଳନ କରିଥିଲେ । ୧୯୩୪ମସିହାରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନରେ ରେଳଯୋଗେ ତାଳଚେରରୁ ସାକ୍ଷୀଗୋପାଳ ଯାତ୍ରା କାଳରେ ଗୁରୁଡ଼ିଝାଟିଆ ରେଳଷ୍ଟେସନରେ ବାବୁ ଗୋପାଳ ବହୁ ସଂଗ୍ରାମୀଙ୍କୁ

ସାଥିରେ ନେଇ ଗାନ୍ଧିଜୀଙ୍କୁ ପୁଷ୍ପମାଲ୍ୟ ଅର୍ପଣକରି ସମ୍ବର୍ଦ୍ଧନା ଜଣାଇଥିଲେ ।

ଓଡ଼ିଶା ସ୍ୱାଧୀନତା ଆନ୍ଦୋଳନର ପୁରୋଭାଗରେ ରହିଥିବା ଅଗ୍ରଣୀ ନେତା ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ପବିତ୍ର ମୋହନ ପ୍ରଧାନ ପ୍ରମୁଖ ଗଡ଼ଜାତ ରାଜ୍ୟମାନ ଗସ୍ତକରି ପ୍ରଜାଆନ୍ଦୋଳନକୁ ଉତ୍ସାହିତ କରିବା ସହ ଆନ୍ଦୋଳନକାରୀଙ୍କ ମନୋବଳ ଟାଣ କରୁଥିଲେ । ସେହି ସମୟରେ ହିନ୍ଦୋଳର କବିରାଜ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ କଟକସ୍ଥିତ ବାସଭବନରେ ପ୍ରଜାମଣ୍ଡଳ ନେତାମାନଙ୍କ ବୈଠକ ଅନୁଷ୍ଠିତ ହୋଇଥିଲା । ତତ୍କାଳେ ଗୋପବନ୍ଧୁଙ୍କ 'ସମାଜ' ଅନୁଷ୍ଠାନରେ ରାଧାନାଥ ରଥ (ବାବୁଜୀ) କାର୍ଯ୍ୟରତ ଥିଲେ । ସେ ଆଠଗଡ଼ରେ ଏକ ପ୍ରଜାମଣ୍ଡଳ ଗଠନ କରିବାକୁ ନିଷ୍ପତ୍ତି ନେଇ ଆଠଗଡ଼ର ଅଚ୍ୟୁତାନନ୍ଦ ଦାଶ, ବ୍ରଜକିଶୋର ପଟ୍ଟନାୟକ, ଗୋବିନ୍ଦ ଚନ୍ଦ୍ର ମିଶ୍ର, ଦୁର୍ଯ୍ୟୋଧନ ଜେନା, ଗୋପାଳ ସାହାଣୀ ପ୍ରମୁଖଙ୍କୁ ନେଇ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ଘରେ ବସିଥିବା ସଭାରେ ଯୋଗ ଦେଇଥିଲେ । ୧୯୩୭ ମସିହାରେ ଆଠଗଡ଼ ପ୍ରଜାମଣ୍ଡଳ ଗଠିତ ହେଲା । ଆଠଗଡ଼ରେ ଆନ୍ଦୋଳନକୁ କ୍ରିୟାଶୀଳ କରିବା ପାଇଁ ଯେଉଁ କମିଟି ଗଠନ କରାଗଲା ସେଥିରେ ରାଧାନାଥ ରଥ ସଭାପତି, ଅଚ୍ୟୁତାନନ୍ଦ ଦାଶ ଉପ ସଭାପତି, କବିରାଜ ଗୋବିନ୍ଦ ଚନ୍ଦ୍ର ମିଶ୍ର ସମ୍ପାଦକ, କ୍ଷେତ୍ରବାସୀ ସୁବୁଦ୍ଧି ସହସମ୍ପାଦକ ଓ ବ୍ରଜକିଶୋର ପଟ୍ଟନାୟକଙ୍କୁ ଯୁଗ୍ମ ସମ୍ପାଦକ ଭାବରେ ମନୋନୀତ କରାଗଲା । ଗୋପାଳ ସାହାଣୀ, ଦୁର୍ଯ୍ୟୋଧନ ଜେନା, ଚକ୍ରଧର ପଟ୍ଟନାୟକ ପ୍ରମୁଖଙ୍କୁ ବରିଷ୍ଠ ସଭ୍ୟ ଭାବରେ ମନୋନୀତ କରାଗଲା ।

୧୯୩୮ ମସିହା ସେପ୍ଟେମ୍ବର ୧୧ତାରିଖରେ ସଂଗ୍ରାମୀ ରାଧାନାଥ ରଥଙ୍କ ସଭାପତିତ୍ୱରେ ଖୁଂଟୁଣୀଠାରେ ଏକ ବିରାଟ ଜନ ଆନ୍ଦୋଳନ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଆଠଗଡ଼ର କୋଣ ଅନୁକୋଣରୁ ହଜାର ହଜାର ସଂଗ୍ରାମୀ ଏକଜୁଟ ହୋଇଥିଲେ । ପ୍ରଜାମଣ୍ଡଳ ପ୍ରତି ଜନସାଧାରଣଙ୍କ ବିପୁଳ ସମର୍ଥନ ଦେଖି ରାଜା ସ୍ତମ୍ଭୀଭୂତ ହୋଇ ପଲିଟିକାଲ ଏଜେଂଟଙ୍କୁ ଖବର ଦେଇଥିଲେ । ପଲିଟିକାଲ ଏଜେଂଟ ତାଳଚେରରୁ ଫେରିବା ବେଳେ ରାଜାଆଠଗଡ଼ ଷ୍ଟେସନରେ ଅଟକି ରାଜାଙ୍କୁ ଖବର ଦେଲେ ଯେ ତୁରନ୍ତ ପ୍ରଜାମଣ୍ଡଳର ନେତାମାନଙ୍କୁ ବନ୍ଦୀକରି ଜେଲ ମଧ୍ୟରେ କଠୋର ଦଣ୍ଡ ଦିଅ । କାଳ ବିଳମ୍ବ ନକରି ରାଜା ପୁଲିସ ଲଗାଇ ତୁରନ୍ତ ସଂଗ୍ରାମୀମାନଙ୍କୁ ଗିରଫ କରିବାକୁ ଆରମ୍ଭ କଲେ । ପ୍ରଥମେ ଗୁରୁଡ଼ିଝାଟିଆରୁ ଗୋପାଳ ସାହାଣୀ ଓ ରାଧାଦାମୋଦରପୁରରୁ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କୁ ପୁଲିସ ଗିରଫ କଲା । ଜେଲ ମଧ୍ୟରେ ଏହି ପ୍ରଥମ ଦୁଇ ବନ୍ଦୀଙ୍କୁ ନିର୍ମମ ଭାବରେ ଅତ୍ୟାଚାର କରାଯାଇଥିଲା । ପୁଲିସର ବନ୍ଧୁକ କୁନ୍ଦା ମାଡ଼ରେ ଗୋପାଳଙ୍କ ମେରୁଦଣ୍ଡ ଜଖମ୍ ହୋଇଥିଲା ।

ସଂଗ୍ରାମୀ ଗୋପାଳ ସାହାଣୀ ସାଲିସକୁ କେବେ ପସନ୍ଦ କରୁନଥିଲେ । ସେ ବନ୍ଦୀ ଜୀବନ କାଟୁଥିବା ସମୟରେ ଆଠଗଡ଼ ରାଜାସାହେବ ତାଙ୍କୁ ରାଜଭକ୍ତ ଟିକେଟ ନେଇ ଖଲାସ ହେବାପାଇଁ ପରାମର୍ଶ ଦେଇଥିଲେ କିନ୍ତୁ ସ୍ୱାଭିମାନୀ ଗୋପାଳ ରାଜାଙ୍କ ନିର୍ଦ୍ଦେଶକୁ ପ୍ରତ୍ୟାଖ୍ୟାନ କରିଥିଲେ । ନିଜ ଆଦର୍ଶ ଓ ନୀତିକୁ ଜଳାଞ୍ଜଳି ଦେଇ ସ୍ୱାର୍ଥ ହାସଲ କରିବା ଥିଲା ଗୋପାଳଙ୍କ ନୀତି ବିରୁଦ୍ଧ । ସେ ଚାହିଁଥିଲେ ରାଜଭକ୍ତ ଟିକେଟ ହାସଲ କରି ଅନେକ ସୁଖ ସୁବିଧା ପାଇପାରିଥାନ୍ତେ କିନ୍ତୁ ତାହା ସେ କରିବାକୁ ଚାହିଁଲେ ନାହିଁ । ବରଂ ରାଜଭକ୍ତ ଟିକେଟ ନ ନେବାକୁ ସେ ବନ୍ଦୀମାନଙ୍କୁ ଉତ୍ସାହିତ କରିବାକୁ ଲେଖିଥିଲେ ।

କଂସପ୍ରାୟ ମାର ଶିଳାରେ କଚାଡ଼ି
ଯାଉପଛେ ପିଣ୍ଡୁ ପ୍ରାଣବାୟୁ ଉଡ଼ି ।
ନେବିନାହିଁ ରାଜଭକ୍ତ ଚିରୁକୁଟି
ପିଠିରୁ ଚମଡ଼ା ଯାଉପଛେ ଉଠି ।
କରୁଛି କରିବି ସମ୍ମୁଖ ସଂଗ୍ରାମ
ଅକାଳରେ ପଛେ ଭେଟିବି ମୁଁ ଯମ ।

ଏଥିରୁ ତାଙ୍କର ମହାନତା ଓ ସଂଗ୍ରାମୀ ପଣିଆ ବେଶ ଜଣାପଡ଼େ । ଏହାଛଡ଼ା ସେ ଥିଲେ ବନ୍ଧୁବତ୍ସଳ ଯାହାକି ଗୋବିନ୍ଦ ଗୋପାଳ ଉପାଖ୍ୟାନରୁ ଜଣାପଡ଼େ । ଦୁଇମିତ ବନ୍ଦୀ ଥିବାବେଳେ ଗୋପାଳଙ୍କ ଜେଲ ମିଆଦ

ଆଗ ସରିଯିବାରୁ ରାଜା ତାଙ୍କୁ ଖଲାସ କରିବାକୁ ଆଦେଶ ଦିଅନ୍ତେ ସେ ମିତକୁ ଛାଡ଼ିଯିବାପାଇଁ ଇଚ୍ଛା କଲେ ନାହିଁ । ଏପରିକି ନିଜର ଜେଲ ମିଆଦ ବୃଦ୍ଧି କରିବାକୁ ଅନୁରୋଧ କଲେ । ଦୁଇବନ୍ଧୁଙ୍କ ଅନାବିଳ ସମ୍ପର୍କ ଦେଖି ରାଜାସାହେବ ଗୋପାଳଙ୍କୁ ଅନୁମତି ଦେଲେ ପ୍ରତ୍ୟହ ଜେଲ ଭିତରେ ଗୋବିନ୍ଦଙ୍କୁ ଭେଟିବାକୁ ।

ଜଣେ ବିପ୍ଳବୀ କବି ହିସାବରେ ତତ୍କାଳୀନ ସଂଗ୍ରାମୀମାନଙ୍କୁ ଉତ୍ସାହିତ କରିବା ପାଇଁ ଗୋପାଳ ଅନେକ କବିତା ରଚନା କରିଥିଲେ ଯଥା –

ଆସରେ ସଭିଏଁ ସଂଗ୍ରାମୀ ବନ୍ଦୀ
ଦେବା କାରାଗାର ଫାଟକ ଭାଙ୍ଗି ...

ଏତଦ୍ ବ୍ୟତୀତ ସେତେବେଳେ ଜେଲ ଭିତରେ ବନ୍ଦୀମାନଙ୍କୁ ନିମ୍ନମାନର ଖାଦ୍ୟ ଦିଆଯାଉଥିବାରୁ ତାକୁ ସମାଲୋଚନା କରି ସେ ଲେଖିଥିଲେ–

ଗୋବିନ୍ଦ ଗୋପାଳ ଆମେ ଦି ମିତ
ଜିଅଲଖାନାରେ ରାନ୍ଧୁଛୁ ଭାତ
ପୋକରା ହରଡ଼ ଡ଼ାଲି
ବଘାରିବା ପାଇଁ ପିଆଜ ଟେ ନାହିଁ
ପକାଅରେ ଭାଇ ଖଲି ।

ସଂଗ୍ରାମକୁ ଆଗେଇ ନେବାରେ ତାଙ୍କର ହୃଦୟସ୍ପର୍ଶୀ କବିତା ମାର୍ଗଦର୍ଶନ କରିଥିଲା ।

ସଂଗ୍ରାମୀ ଗୋପାଳ ଥିଲେ ବହୁମୂଖୀ ପ୍ରତିଭାର ଅଧିକାରୀ । ସେ ନିଜ ହାତରେ ଆୟୁର୍ବେଦିକ ଇଞ୍ଜେକସନ୍ ତିଆରିକରି ରୋଗୀ ଚିକିତ୍ସା କରିପାରୁଥିଲେ । ଏପରିକି ସେ ବିଭିନ୍ନ ଧାତୁ, ରତ୍ନାଦି ଜାରଣ ମାରଣ ପୂର୍ବକ ସମସ୍ତ ଔଷଧକୁ ନିଜେ ପ୍ରସ୍ତୁତ କରୁଥିଲେ । ଦ୍ରୁତ ଲକ୍ଷଣରୁ ରୋଗ ଓ ରୋଗୀର ପରମାୟୁ ନିର୍ଣ୍ଣୟ କରିବା ଥିଲା ତାଙ୍କର ସ୍ୱତନ୍ତ୍ର ଦକ୍ଷତା । ଯେଉଁଥିପାଇଁ ତତ୍କାଳୀନ ରାଜା ଗୋପାଳଙ୍କୁ ରାଜବୈଦ୍ୟ ଉପାଧିରେ ଭୂଷିତ କରି ତାଙ୍କ ନିଜର ବ୍ୟକ୍ତିଗତ ଚିକିତ୍ସକ ଭାବରେ ନିଯୁକ୍ତି କରିଥିଲେ । ସେ ଓଡ଼ିଶାରୁ ପ୍ରିନ୍ସ ମେଡ଼ିସିନ ବୋର୍ଡ ବନାରସର ସଭ୍ୟ ହିସାବରେ ନିର୍ବାଚିତ ହେବାର ବିରଳ ସୌଭାଗ୍ୟର ଅଧିକାରୀ ହୋଇପାରିଥିଲେ । ବାସ୍ତବିକ, ଏହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ ।

ସେ ଏକାଧାରରେ ଥିଲେ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, କବିରାଜ, କବି, ନାଟ୍ୟକାର, ଜ୍ୟୋତିର୍ବିଦ୍ ଓ ବାସ୍ତୁବିତ୍ । ସେ ସଂସ୍କୃତ, ହିନ୍ଦୀ, ବଙ୍ଗଳା ଓ ଓଡ଼ିଆରେ ଦକ୍ଷତା ହାସଲ କରିଥିଲେ । ଜଣେ ମେଳାପୀ ପରୋପକାରୀ ବ୍ୟକ୍ତି ଭାବରେ ସେ ସମସ୍ତଙ୍କ ପ୍ରିୟଭାଜନ ହୋଇପାରିଥିଲେ । ଜୀବନରେ ବହୁ ଘାତ ପ୍ରତିଘାତ ମଧ୍ୟରେ ଜଣେ ସଂଗ୍ରାମୀ ହିସାବରେ ସମାଜ ସେବାରେ ନିଜକୁ ସମର୍ପିଦେଇ ୭୨ ବର୍ଷ ବୟସରେ ୧୯୬୯ ମସିହା ଜାନୁଆରୀ ୨୬ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କ ଭଳି ଜଣେ ନିଷ୍ଠାପର ଦେଶ ସେବକ, ମାନବବାଦୀ ଓ ବନ୍ଧୁବତ୍ସଳ ବ୍ୟକ୍ତି ଆଜିର ଦିନରେ ବିରଳ ।

ଖୁଂଟୁଣୀ, ଆଠଗଡ଼, କଟକ



# ଦାଦିବୁଢ଼ା ଉପନ୍ୟାସରେ ପରଜା ଆଦିବାସୀଙ୍କ ଲୋକ ବିଶ୍ୱାସ

ଜଳଧର ମାଝୀ

ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ 'ଦାଦିବୁଢ଼ା' ଉପନ୍ୟାସ ହେଉଛି ପରଜା ଆଦିବାସୀଙ୍କ ଲୋକବିଶ୍ୱାସ ଉପରେ ଆଧାରିତ ଏକ ବହୁ ଚର୍ଚ୍ଚିତ ଆଦିବାସୀ ଉପନ୍ୟାସ । କୋରାପୁଟରେ ଅବସ୍ଥାନ କାଳରେ ଗୋପୀନାଥ ମହାନ୍ତି ଆଦିବାସୀଙ୍କ ଜୀବନଧାରା ଓ ସଂସ୍କୃତି ସହିତ ଏକାକାର ହୋଇ ରଚନା କରିଥିଲେ ଏହି 'ଦାଦିବୁଢ଼ା' ଉପନ୍ୟାସ । ଏଥିରେ ଓଡ଼ିଶାର କୋରାପୁଟ ଅଂଚଳରେ ବସବାସ କରୁଥିବା ଆଦିବାସୀ ମଣିଷର ଜୀବନଯାପନ ପ୍ରଣାଳୀ, ସେମାନଙ୍କର ପାରମ୍ପରିକ ପ୍ରତିଷ୍ଠିତ ବିଶ୍ୱାସ, ଧର୍ମଧାରଣା, ବୃକ୍ଷପୂଜା ଓ ଆଦିବାସୀମାନଙ୍କର ସଂସ୍କୃତି ତଥା ସେମାନଙ୍କ ଚଳଣି, ଛୁଆଁ ଅଛୁଆଁ ଭେଦଭାବ ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି ।

'ଦାଦିବୁଢ଼ା' ଲୁଲୁ ପରଜା ଗୋଷ୍ଠୀର ବିଶ୍ୱାସର ପ୍ରତୀକ ଦେବତା । ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଚେତନାର ପରଜା ଜୀବନକୁ ପ୍ରଭାବିତ କରିଛି ଏବଂ ସେ ହିଁ ପରଜା ଜୀବନର ସୁଖ, ଦୁଃଖ, ଭାବ, ଅଭାବ, ଭୋଗ, ତ୍ୟାଗ ସହିତ ସଂଶ୍ଳିଷ୍ଟ । ଏହି ପରଜା ଆଦିବାସୀଙ୍କ ପ୍ରାଣର ଦେବତା ହେଉଛି ଦାଦିବୁଢ଼ା । ଯେକୌଣସି ଘଟଣ ଅଘଟଣ ଘଟିଲେ ସେସବୁ ଦାଦିବୁଢ଼ା ଦ୍ୱାରା ହୋଇଥାଏ । ଗ୍ରାମରେ ଯେକୌଣସି ଜ୍ୱର, ଝାଡ଼ା, ବାନ୍ତି, ମୃତ୍ୟୁ, ଡଙ୍ଗରରେ ନିଆଁ ଲାଗିଲେ ଏବଂ କୌଣସି ପୁଅ ଯଦି ଅନ୍ୟ ଝିଅ ସହିତ ଲୁଚି ପଳାୟନ କଲେ ମଧ୍ୟ ଏସବୁ ଦାଦିବୁଢ଼ାର ଖେଳ ବୋଲି ସେମାନେ ବିଶ୍ୱାସ କରିଥାନ୍ତି । ତଥାପି ସେମାନଙ୍କ ଗୋଷ୍ଠୀକୁ ଶୃଙ୍ଖଳିତ କରି ରଖିବାରେ ମଧ୍ୟ ଦାଦିବୁଢ଼ାର ଭୂମିକା କମ୍ ନୁହେଁ ।

'ଦାଦିବୁଢ଼ା' ହେଉଛି ପରଜାମାନଙ୍କ ଆଦିଦେବତା । ଗ୍ରାମର ଜଣେ ବ୍ୟକ୍ତିଙ୍କୁ ଦାଦିବୁଢ଼ା ପ୍ରଶନ୍ନ ହୋଇଥାଏ ଏବଂ କାଳିସୀ ମାଧ୍ୟମରେ ଗ୍ରାମର ଭଲମନ୍ଦ, ଘଟଣ ଅଘଟଣ, ସୁଖଦୁଃଖ କହିଥାଏ । କାଳିସୀକୁ ସମସ୍ତେ ବିଶ୍ୱାସ କରନ୍ତି । ସେହି ଅନୁସାରେ ଗ୍ରାମବାସୀ ଦାଦିବୁଢ଼ାକୁ ପୂଜା କରିଥାନ୍ତି ଏବଂ ପ୍ରଗାଢ଼ ବିଶ୍ୱାସ କରିଥାନ୍ତି । 'ଦାଦିବୁଢ଼ା'ର ଅର୍ଥ ହେଉଛି କୋରାପୁଟର ପରଜା ଆଦିବାସୀମାନେ ବାପର ଭାଇକୁ ବୁଝନ୍ତି ନାହିଁ । ବୁଝନ୍ତି ବାପର ବାପ ଓ ତା'ର ବାପ । ଯେପରି ଶ୍ୱଶୁର କହିଲେ ବୁଝନ୍ତି ଭାରିଯାର ଭାଇ ଆଉ ଦାଦି ସହିତ ବୁଢ଼ା ମିଶିଗଲେ ପରଜା ଓ କନ୍ଧ ଦୁଇ ଭାଷାଯାକ ମିଶିଯାଏ । କନ୍ଧ ଭାଷାରେ 'ବୁଢ଼ା' ଅର୍ଥ ବାପର ବାପ ।' (୧) ଦାଦିବୁଢ଼ା ହେଉଛି ପୂର୍ବପୁରୁଷର ଡୁମା ବା ଆତ୍ମା । ସେମାନଙ୍କର ବିଶ୍ୱାସ ଦାଦିବୁଢ଼ାକୁ ଯଦି ଭଲଭାବରେ ପୂଜା ନ କଲେ ସେ ଅମଙ୍ଗଳ କରିବ । ଅନେକ ବିପଦ ଗାଁକୁ ମାଡ଼ି ଆସିବ, ଚାଷକୁ ରୋଗ ପୋକ ହେବ, ଅନେକ ଝାଡ଼ା, ବାନ୍ତି, ଜ୍ୱର ହେବ ବୋଲି ଭାବିଥାନ୍ତି । ସେଥିପାଇଁ ଦାଦିବୁଢ଼ାକୁ ଗ୍ରାମବାସୀ ସମସ୍ତେ ଏକତ୍ରିତ ହୋଇ ସାମୂହିକ ଭାବରେ ପୂଜା କରିଥାନ୍ତି । ଦାଦିବୁଢ଼ା ଆସ୍ଥାନ ପାଖରେ ରୁଣ୍ଡ ହୋଇ ମଦ ପିଇ, ବାଜା ବଜାଇ, ନାଚଗୀତ ମାଧ୍ୟମରେ ଖୁସି କରାଇଥାନ୍ତି । ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ହାତକୁ ହାତ ଅଣ୍ଟାକୁ ଅଣ୍ଟା ଛନ୍ଦାଛନ୍ଦି ହୋଇ ଦାଦିବୁଢ଼ାର ଚାରି ପାଖେ ବାଜାର ତାଳେ ତାଳେ ନାଚ

କରିଥାନ୍ତି । ଦାଦିବୁଢ଼ା ପାଖରେ ପୂଜା ହୁଏ ଅପର୍ଯ୍ୟାପ୍ତ । ବେଳେବେଳେ ଦି' ପ୍ରହର ବେଳେ ମାଳେ ଲେଖାଏଁ ଫୁଲ ଧରି ଗାଁର ଝିଅମାନେ ଆସନ୍ତି ନିଜ ମନର ସାଙ୍ଗ ପାଇବା ପାଇଁ । ସେମାନେ ଦାଦିବୁଢ଼ା ପାଖରେ ମନାସି ଥାନ୍ତି । ଚାରିପାଖେ ହାତ ଧରାଧରି ହୋଇ ଭଉଁରୀ ବୁଲି ନାଚ ଗୀତ କରିଥାନ୍ତି ।

ଗ୍ରାମର ସମସ୍ତେ ନିଜ ନିଜର କାମନା ପୂରଣ କରିବା ପାଇଁ ଦେବତା ପାଖରେ ମାନସିକ କରିଥାନ୍ତି, ତାହା ଏହି ଉପନ୍ୟାସରେ ଔପନ୍ୟାସିକ ଉଲ୍ଲେଖ କରିଛନ୍ତି – 'ଦାଦିବୁଢ଼ା' ପାଖକୁ ମୁହଁକୁ ଲଗେଇ ଆଣି ଚୁପ୍‌ଚାପ୍ କାହା ନାଁ କହି ଫୁଲମାଳ ଲମ୍ବାଇ ଦିଅନ୍ତି । ହସି ହସି ଚୁମୁଟା ଚୁମୁଟି ଠେଲାଠେଲି ହୋଇ ଦଳ ଭାଙ୍ଗି ଦଉଡ଼ି ଦଉଡ଼ି ପଳାଇଯାନ୍ତି । ଦାଦିବୁଢ଼ା ପାଖେ ମାନସିକ କରି କେହି ହତାଶ ହୁଏ ନାହିଁ । ସମସ୍ତେ ଆଶା କରି ବସନ୍ତି, ଦିନେ ନା ଦିନେ ନିଶ୍ଚୟ ହେଲେ ଆଶା ମିଳିବ ଏବଂ ଦାଦିବୁଢ଼ା କେବେହେଲେ ଫାଙ୍କି ଦେବେ ନାହିଁ ବୋଲି ବିଶ୍ୱାସ କରିଥାନ୍ତି ।' (୨) ଯିଏ ଯାହା ଭାବିଥାଏ ତାହା ଦାଦିବୁଢ଼ା ପାଖରେ ମାନସିକ କରିଥାନ୍ତି । କିଏ ପୁତ୍ର ସନ୍ତାନ ପାଇଁ, ତ କିଏ ଜୀବନସାଥୀ ପାଇଁ ତ କିଏ କିଏ ଭଲ ଚାଷ ହେଉ ବୋଲି । ଯିଏ ଯାହା ଚାହିଁଥାଏ ତାହା ହିଁ ମନାସିଥାନ୍ତି । ଏହି ସରଳ ଆଦିବାସୀମାନେ ଦାଦିବୁଢ଼ାର ତୃପ୍ତି ପାଇଁ ମଦ, କୁକୁଡ଼ା, ପାରା, ଛେଳି ବଳିଦେଇ ପୂଜା କରିଥାନ୍ତି । ଦାଦିବୁଢ଼ା ଧରମ୍ ଆଉ ଧରତନିର ଅସଲ ଦେବତା । ତା'ଠାରୁ ବୋଲି ଆଉ କେହି ବଡ଼ ନାହିଁ । ଦାଦିବୁଢ଼ା ହିଁ ଏହି ଧର୍‌ତନିକୁ ସୃଷ୍ଟି କରିଛି । ସେ ହିଁ ପରଜା ଜୀବନକୁ ନିୟନ୍ତ୍ରଣ କରିଥାଏ । ଏଣୁ ସଂପୃକ୍ତ ଜନଜାତି ତା'ପ୍ରତି ଅଟଳ ଭକ୍ତି, ଆସକ୍ତି ଏବଂ ଅନୁରକ୍ତି ଦେଖାଇଥାନ୍ତି । ସେମାନଙ୍କର ଜୀବନର ସବୁକିଛି ହେଉଛି ଦାଦିବୁଢ଼ା । ପରଜା ସଂପ୍ରଦାୟରେ ଗ୍ରାମର ମୁଖ୍ୟ ବ୍ୟକ୍ତିମାନେ ହେଉଛନ୍ତି ନାୟକ, ଦିଶାରୀ, ପୁରୋହିତ, ଗୁରୁମାଈ । ନାୟକ ଗ୍ରାମର ସଭା ସମିତି କରିଥାନ୍ତି । ଗ୍ରାମର ଯେକୌଣସି ସମସ୍ୟା, ପର୍ବପର୍ବାଣି, ନ୍ୟାୟନିଷ୍ପତ୍ତି, ବିବାହ, ଏକୋଶିଆ, ମୃତ୍ୟୁ ଇତ୍ୟାଦିର ସମାଧାନ କରିଥାନ୍ତି । ଦିଶାରୀ ପାଞ୍ଜି ଦେଖେ ଏବଂ ଗୁରୁମାଈକୁ 'କାଳସୀ' ଚଢ଼ିଥାଏ । ଗୁରୁମାଈ ମୁହଁରେ କିଭଳି ଭାବରେ ପ୍ରକାଶ ପାଇଥାଏ ତାହା ଏଠାରେ ବର୍ଣ୍ଣନା କରାଯାଇଛି । ଗୁରୁମାଈ କାଳସୀ ମୁହଁରେ ମଧ୍ୟ ପ୍ରକାଶ ପାଏ ଯେ ମୁଁ ଦାଦିବୁଢ଼ା । ତୁମ ସମସ୍ତଙ୍କୁ ସର୍ଜନା କରିଛି । ଏହି ଉକ୍ତିକୁ ପରଜାମାନେ ମୁଣ୍ଡପାତି ଗ୍ରହଣ କରି ନିଅନ୍ତି ।

ଦାଦିବୁଢ଼ା ହେଉଛି ଆଦିବାସୀ, ଅଣଆଦିବାସୀ ସମସ୍ତଙ୍କ ବିଶ୍ୱାସର ପ୍ରତୀକ । ଆଦିବାସୀ, ଡମ୍ , ଖ୍ରୀଷ୍ଟିଆନ ସମସ୍ତଙ୍କ ଉପରେ ପ୍ରଭାବ ବିସ୍ତାର କରିଛି । ଗ୍ରାମୀଣ ସମାଜରେ ଚେତନା 'ଦାଦିବୁଢ଼ା' ହୋଇଛି । ଯିଏ ବିଶ୍ୱାସ କରିଛି ବିଶେଷତଃ ପ୍ରାଚୀନ, ଚାଞ୍ଚେରୀ ଡମ ପ୍ରମୁଖ ମଧ୍ୟ ନିଜ ନିଜର ସ୍ୱାର୍ଥ ପାଇଁ ମଦ ପିଇ ପରଜାଙ୍କ ସହିତ ନାଚି ଡେଇଁ ଭକ୍ତି ପ୍ରଦର୍ଶନ କରିଛନ୍ତି । ସନ୍ତୋଷ କୁମାରୀ କହିଛି, 'ବାହାରେ ମନା କଲେ ମଧ୍ୟ ଘରେ ଦଣ୍ଡବତ କରିଛି ।' ଯାହାକୁ କୁହାଯାଏ ଭୟ ଭକ୍ତି । ସନ୍ତୋଷ କୁମାରୀ ଜାତିରେ 'ଡମ୍' । ସେ ମଧ୍ୟ ଏହି ପରଜା ଆଦିବାସୀଙ୍କ ଦେବତାକୁ ଭଲ ପାଇଛି ମନେ ମନେ ଲୁଚି ଲୁଚି ଭକ୍ତି କରିଛି । ଆଦିବାସୀର ଦେବତା ଏବଂ ଅଣଆଦିବାସୀର ମଧ୍ୟ ଦେବତା । ସମସ୍ତେ ଭକ୍ତିରେ ଭଲ ପାଇଛନ୍ତି ଏବଂ ପୂଜା କରିଛନ୍ତି ।

ଏକଦା ରାମ ନାଇକ ଓ ପ୍ରାଚୀନ ଡମ୍‌ଙ୍କ ମଧ୍ୟରେ ଆଦିବାସୀଙ୍କ 'ଡୁମା' ଓ ଖ୍ରୀଷ୍ଟିଆନମାନଙ୍କ ଧର୍ମ ଧାରଣାକୁ ନେଇ ଯୁକ୍ତି ତର୍କ ହେଲା । ଖ୍ରୀଷ୍ଟିଆନ୍ ଡମ୍‌ମାନେ ବିଶ୍ୱାସ କରନ୍ତି ନାହିଁ । କାରଣ ଗୋପୀନାଥଙ୍କ ଭାଷାରେ ଆଧୁନିକ ସଭ୍ୟତାର ପ୍ରଭାବ କେତେକାଂଶରେ ଡମ୍ ଲୋକଙ୍କ ଉପରେ ପଡ଼ିଛି । ପ୍ରଚ୍ଛନ୍ନ ଭାବେ ଆସାମ ଚା' ବଗିଚାକୁ ପଳାୟନ ଘଟଣାରେ । ସଭ୍ୟତା ପ୍ରାଚୀନ ଆଦିବାସୀ ସଭ୍ୟତାକୁ ବିପର୍ଯ୍ୟସ୍ତ କରେ । ଏଲିଓ ପ୍ରାଚୀନ ଫାଦର, ବାଇବେଲ ଆଦି କଥା ଉଠାଇଲା, ଆଉ ରାମ ନାଇକ, ହରିଜାନି ପ୍ରମୁଖ ଆଦିମ ସଂସ୍କୃତି, ପ୍ରେତାତ୍ମା (ଡୁମା) ମହିମା ବର୍ଣ୍ଣନା କଲେ । ଡୁମାମାନେ ଜଙ୍ଗଲ ପୋଡ଼ନ୍ତି । ସୁଖଦୁଃଖର ସାଥୀ ହୁଅନ୍ତି । ତାଙ୍କର ସଂସ୍କୃତି ପ୍ରାଚୀନ । ସେମାନଙ୍କର ଡୁମାହିଁ ସବୁକିଛି ବୋଲି ପ୍ରତିବାଦ କରିଛି । ସେମାନେ ଗାଁକୁ ପଞ୍ଚଂଚି ପଂଚାୟତ ଡକାଇ, ଦିଶାରୀ, ଗୁରୁମାଈଙ୍କୁ ଆମନ୍ତ୍ରଣ

କଲେ । ସେମାନଙ୍କ ଅନୁରୋଧରେ ଦିଶାରି ପୂଜା ଅର୍ଚ୍ଚନା ପୂର୍ବକ ମନ୍ତ୍ର ପାଠରେ ଲାଗିଲା । ତା'ର ଇଙ୍ଗିତରେ ଗୁରୁମାଈ ନାଚିଲା । ଦେବତାର ଆବିର୍ଭାବ ହେଲା ଏବଂ ଖାଇବି ଖାଇବି ବୋଲି ଚିତ୍କାର କରିଛି । ତାକୁ ସନ୍ତୁଷ୍ଟ କରିବା ପାଇଁ ବୁଢ଼ା ବୁଢ଼ା ବି ନାଚିଲା । ଏପରି ଗୁରୁମାଈ ନାଚୁ ନାଚୁ ଥକ୍କାମାରି ଖଜୁରୀ ଗଛ ମୂଳରେ ଅଚେତ ହୋଇ ପଡ଼ିଲା । ଦିଶାରୀ କହିଲା 'ଦାଦିବୁଢ଼ା' ପୂର୍ବପୁରୁଷର ଡୁମା, ସେଠି ଅଟକି ରହିଲା । ଏଣୁ ଗଛକୁ ୨୧ଟି ସ୍ଥାନରେ ହାଣି ସାତଖଣ୍ଡିଆ କରି ନାଲି ନେଳି ରଙ୍ଗରେ କ୍ଷତସ୍ଥାନକୁ ଚିତ୍ରିତ କଲେ । ଥୁଣ୍ଟା ଖଜୁରୀ ଗଛର ମୁଣ୍ଡରେ ପଗଡ଼ି ଖଞ୍ଜି ଦୁଇଟି ଆଖି ତିଆରି କଲେ ଏବଂ ତାକୁ ଅଦୃଶ୍ୟ ଶକ୍ତି, ଭାଗ୍ୟନିୟନ୍ତା ଭାବେ ଗ୍ରହଣ କଲେ । ପୁଣି ଗୋପୀନାଥ ବାବୁଙ୍କ ଭାଷାରେ 'ଯାହାକୁ ବୁଝେଇ ସୁଝେଇ ହେବ ନାହିଁ ତାକୁ ଯୁକ୍ତିସିଦ୍ଧି କରିବାକୁ ମଣିଷ ଗଢୁଛି ଜାତି କୈନ୍ଦ୍ରିକ ଠାକୁର । ସେଇ ଦାଦିବୁଢ଼ା ତା 'ଦାଦିବୁଢ଼ା' ଖଜୁରୀ ଗଛ ଖୁଣ୍ଟଟି । ମଣିଷ ସଭ୍ୟତା ଯେତେବେଳେ ଅଛି, ସେବି ଅଛି, ସମସ୍ତେ ସବୁ କାମନା ସେଠି କରନ୍ତି । ସେ ହେଲା ଗାଁ ଜଗୁଆଳି, ମୁରବୀ । ନୀରବ ନିଶ୍ଚଳରେ ସମସ୍ତଙ୍କୁ ଚାହିଁଲା । ହସିଲା ଭଙ୍ଗୀରେ ଥାଏ । ଚାଲିଲା ଆବାଳବୃଦ୍ଧ ବନିତାଙ୍କର ତା' ପ୍ରତି ପ୍ରାର୍ଥନା । ବାଟଚଲା ଗଦବା, ଡମ୍‌ମାନେ ବି ଫୁଲ ଚନ୍ଦନ ଅର୍ପଣ କଲେ । ରାମ ନାଇକ, ହରି ଜାନି, ଠେଙ୍ଗା ଜାନି, ସନ୍ତୋଷ କୁମାରୀ(ଡମ୍ ଝିଅ) ସାଲିଆଫୁଲ, ସାରିଆଦାନ୍ ଆଦି ସମସ୍ତେ ପୂଜା କଲେ । ଫୁଲମାଳା ଚଢ଼ାଇଲେ । ମାନସିକ କଲେ । କାହାର ପୁଅ ନାହିଁ, କାହାର ଗାଈ ହଜିଲା, କାହାକୁ ବାଘ ଖାଇଲା, କିଏ ରୋଗରେ ପଡ଼ିଲା ତାକୁ ସମସ୍ତେ ଗୁହାରି କଲେ । କିପରି ପୁଅ ବାହା ହେବ, ଝିଅକୁ ଭଲ ବର ମିଳିବ, ବରକନ୍ୟା ମଧ୍ୟ ନିଜ ଇଚ୍ଛା ପୂରଣ ପାଇଁ ଦଣ୍ଡବତ ହେଲେ । ସମସ୍ତଙ୍କର ଭଲମନ୍ଦ କେନ୍ଦ୍ରବିନ୍ଦୁ ହେଲା ଦାଦିବୁଢ଼ା । ଦାରୁ ଦେବତା ଦାରୁରେ ଯେପରି ଦାଦିବୁଢ଼ା ଜଗନ୍ନାଥ ଠାକୁର ଆବିର୍ଭୂତ ଠିକ୍ ସେହିପରି 'ଦାଦିବୁଢ଼ା' ପ୍ରତ୍ୟକ୍ଷ ଆଦିମମାନଙ୍କର ମଙ୍ଗଳମୟ ପୁରୁଷ ରୂପେ ଦାରୁରେ ଅବସ୍ଥାପିତ ହେଲେ । ସେ ସାଧୁର ବି ଦେବତା ଆଉ ଚୋରର ବି ଦେବତା । ଡମ୍‌ମାନେ ବି ଗୁହାରି କରନ୍ତି ସେପରି ତାଙ୍କର ଅଭାବ ନରହେ । ଆମର କି ଦୋଷ । ଆଜି ଆମକୁ ଧନ ମିଳୁ ବୋଲି କହି ରାତିରେ ଚୋରି କରିବାକୁ, ସିନ୍ଧି ଫୋଡ଼ିବାକୁ ଯାତ୍ରା କରନ୍ତି । ଠେଙ୍ଗାଜାନି ସାରିଆଦାନ୍‌କୁ ଛାଡ଼ି ସନ୍ତୋଷ କୁମାରୀ ପ୍ରେମରେ ପଡ଼ି ତାକୁ କିପରି ନିଜର କରିବ ପ୍ରାର୍ଥନା କରିଛି । ସନ୍ତୋଷ କୁମାରୀ ମଧ୍ୟ ଠେଙ୍ଗାଜାନି ବ୍ୟତୀତ ତା'ର ଆଉ ଆଶା ଭରସା କେହି ନାହିଁ ବୋଲି ଗୁହାରି କରିଛି ଏବଂ ତା'ର ପ୍ରାର୍ଥନା ଦାଦିବୁଢ଼ା ଶୁଣିଲା ବୋଲି କୃତଜ୍ଞ ରହି ଠେଙ୍ଗାଜାନି ସହିତ ଆସାମ ପଳାୟନ କଲା । (୩)

ରାମ ନାଇକର ନିର୍ଦ୍ଦେଶରେ ସରଳ ଆଦିବାସୀମାନଙ୍କର ବିଶ୍ୱାସ ବଢ଼ିଛି ଦାଦିବୁଢ଼ା ପ୍ରତି । ରାମ ନାଇକର ନିର୍ଦ୍ଦେଶରେ ଅନେକ ବାଜା ବାଜିଛି, ନାଚଗୀତ ହୋଇଛି, କେତେଯେ ବଳି ପଡ଼ିଛି ଦାଦିବୁଢ଼ା ପାଖରେ । ସମସ୍ତେ ଦାଦିବୁଢ଼ା ପାଖରେ ନିଜ ନିଜର ବିଶ୍ୱାସକୁ ବାନ୍ଧି ରଖିଛନ୍ତି । ରାମ ନାଇକ ମଧ୍ୟ ଅନେକ ସ୍ୱପ୍ନ ଦେଖିଛି ତା'ରି ଟିକି ସଂସାରକୁ ନେଇ । ପୁଅ ଠେଙ୍ଗାଜାନି ଦିନେ ବଡ଼ ହୋଇ ଭବିଷ୍ୟତର ସାହାରା ହେବ ଏବଂ ବୁଢ଼ାବାପାର ସମସ୍ତ କାର୍ଯ୍ୟକୁ ଠେଙ୍ଗା ତୁଲାଇବ । ରାମ ନାଇକର ସ୍ୱପ୍ନ ଦିନେ ଚୁର୍‌ମାର୍ ହୋଇଗଲା । ଯେଉଁ ସ୍ୱପ୍ନ ଦେଖିଛି ତାହା ଦିନେ ଧ୍ୱଂସ ହୋଇଯାଇଛି । ଯେଉଁ ପୁଅକୁ ନେଇ ଦିନେ ଭବିଷ୍ୟତର ସ୍ୱପ୍ନ ଦେଖୁଥିଲା ତାହା ସ୍ୱପ୍ନରେ ହିଁ ରହିଗଲା । ପୁଅ ଠେଙ୍ଗାଜାନିକୁ ଗାଁର ଝିଅ ସାରିଆ ଦାନ୍ ସହିତ ଚଇତି ପରବ୍ ବେଳକୁ ବିବାହ କରାଇବ । ଆଦିବାସୀ ପରମ୍ପରାରେ ଅଛି ପୁଅଝିଅ ପରସ୍ପର ରାଜି ନ ହେଲେ ବିବାହ ହୁଏ ନାହିଁ । ରାମ ନାଇକ ପୁଅର ସାରିଆଦାନ୍ ପ୍ରତି ରାଜିଥିବା ଜାଣି ଚଇତି ପରବ ବେଳକୁ ପୁଅର ବାହାଘର ସଫଳତା ପାଇଁ ଦାଦିବୁଢ଼ା ପାଖରେ କେତେ କୁକୁଡ଼ା, ପାରା ବଳି ଦେଇଛି । ଦାଦିବୁଢ଼ାକୁ ବାରମ୍ବାର ମୁଣ୍ଡିଆ ମାରିଛି । ଦାଦିବୁଢ଼ାକୁ ମଦ ଅର୍ପଣ କରିଛି ପୁଅର ବାହାଘର ପାଇଁ । ଠେଙ୍ଗା ଜାନି ପାଇଁ ଭଲ ଝିଅଟିଏ ମିଳିବା ପାଇଁ ମଧ୍ୟ ରାମ ନାଇକ ଏବଂ ତା' ସ୍ତ୍ରୀ ଦାଦିବୁଢ଼ା ପାଖରେ କେତେଯେ ମୁଣ୍ଡିଆ ମାରିଛନ୍ତି ।

ଶେଷରେ ରାମ ନାଇକର ପୁଅ ଠେଙ୍ଗାଜାନି ଗ୍ରାମରେ ଥିବା ଡମ୍ ଅଲେଇ ବିରିଆର ଝିଅ ସନ୍ତୋଷ କୁମାରୀକୁ ଧରି ଆସାମ ପଳେଇ ଯାଇଛି । ନାଇକର ସବୁ ସ୍ୱପ୍ନ ଧୂଳିସାତ ହୋଇଯାଇଛି । ତା'ର ସୁନାର ସଂସାର ଧ୍ୱଂସ ହୋଇଯାଇଛି । ଗୋପୀନାଥ ମହାନ୍ତିଙ୍କ ଭାଷାରେ ଏହି ଉପନ୍ୟାସର ଚରିତ୍ର ରାମ ନାଇକ ନିଜ ଦୁଃଖକୁ ଦାଦିବୁଢ଼ା ପାଖରେ ପ୍ରକାଶ କରିଛି– 'ଦାଦିବୁଢ଼ା ତୋର ଏଇଆ ଥିଲା ଦାଦିବୁଢ଼ା କି ଦୋଷ କରିଥିଲି ମୁଁ ତୋର, ମୋର ସର୍ବନାଶ କଲୁ । ଯଦି କହୁନୁ ଠେଙ୍ଗାଟି ମୋର ଖରାପ ଡୁମା, ଗୋଟିଏ ଭଲ ଡୁମା ପଠେଇଲୁ ନାହିଁ କାହିଁକି ଦାଦିବୁଢ଼ା ? ପାଳିଲି, ବଢ଼େଇଲି ଏଡ଼େଟିରୁ ଏଡୁଟିଏ କଲି– ଶେଷରେ ମୋ'ରି ମୁହଁରେ ଗୋଇଟା ମରେଇ ନେଇ ଦୂରଦେଶକୁ ବିଦା କରିଦେଲୁରେ ଦାଦିବୁଢ଼ା । ମୋର ଖାଇବା ଭାତରେ ଧୂଳି ଦେଲୁ– ଭେଁ କିନା କାନ୍ଦିପକେଇ ରାମ ନାଇକ ଦାଦିବୁଢ଼ାର ଗୋଡ଼ତଳେ ପଡିଗଲା ।' (୪) ଏଥିରୁ ଆମେ ଜାଣିବାକୁ ପାଇବା ଯେ ଦାଦିବୁଢ଼ା ହେଉଛି ପରଜାମାନଙ୍କ ଦୁଃଖ ସୁଖ, ଭଲମନ୍ଦରେ ଭାଗିଦାର । ଯେକୌଣସି ଘଟଣା ଘଟିଲେ ଦାଦିବୁଢ଼ାକୁ ଦୋଷ ଦିଅନ୍ତି ।

ରାମ ନାଇକ ଜାତିରୁ ବାସନ୍ଦ ହୋଇଛି । ପୁଣି ଜାତିରେ ମିଶିବା ପାଇଁ ଦାଦିବୁଢ଼ା ପାଖରେ ପୂଜା କରିଛି । ପୁଅ ଚାଲିଗଲା ଦିନଠୁ ରାମ ନାଇକର ଆଶାଭରସା ସବୁ ତୁଟିଗଲା । ସେ ଅବୁଝା ହୋଇ ବାୟାପରି ଶୋକ କଲା । ଏହିସବୁ ଦେଖି ଗାଁ ଲୋକେ ମଧ୍ୟ ଆବାକାବା ହେଲେ । ସତକଥା, ତା'ର ପୁଅ ଗଲା । ତା'ପରେ ତା'ର ନାଇକ ପଣିଆ ମଧ୍ୟ ରହିବ ନାହିଁ । ଗାଁ ଲୋକେ ସବୁ ହସିବେ । ତା'ର ଜାତି ମଧ୍ୟ ଗଲା । କାରଣ ଠେଙ୍ଗା ଜାନି ଡମ୍ ଝିଅ ସନ୍ତୋଷ କୁମାରୀ ସହିତ ପଳେଇଛି । ତାକୁ ପ୍ରାୟଶ୍ଚିତ କରିବାକୁ ହେବ । ଏହିକଥା ଶୁଣି ନାଇକର ମୁଣ୍ଡରେ ବଜ୍ର ପଡ଼ିଲା ଭଳି ହେଲା । ଗ୍ରାମ ଲୋକେ ଚିନ୍ତା କଲେ ନାଇକ ଯଦି ବସି ରହିବ ଗାଁର ଭଲମନ୍ଦ ବୁଝିବ କିଏ? ଖଜଣା ଅସୁଲ୍ କରିବ କିଏ ? ନିଶାପ କରିବ କିଏ ? ଅଧିକାରୀମାନେ ଆସିଲେ ତାକୁ ଚର୍ଚ୍ଚା କରିବ କିଏ ? ଲୋକେ ହଇରାଣ ହେବେ, ଗାଁର ନାଶ ଯିବ । ଦିନୁ ଦିନ ଯାହା ହେଲା ଗାଁ ଲୋକେ ଏପରି ଭାବି ଠିକ୍ କଲେ ଏହାର ଗୋଟାଏ ପ୍ରତିକାର ଆବଶ୍ୟକ ।

ରାମ ନାଇକର ଘର ଉପରେ କେଉଁ ପ୍ରେତାତ୍ମାର ଦୃଷ୍ଟି ପଡ଼ିଛି । କେଉଁ ଅଜଣା ଡୁମା ସେ ଗାଁର ହିତ ପାଇଁ ନାଇକକୁ ମୁକ୍ତ କରିବାକୁ ପଡ଼ିବ । ସେ ଦୁଃଖର ଡୁମାକୁ ତଡ଼ିବାକୁ ହେବ । ତା'ର ପ୍ରତିକାର ଆବଶ୍ୟକ । ଗ୍ରାମଲୋକେ ଚିନ୍ତା କଲେ କହିଲେ ରାମ ନାଇକକୁ ଗୋଟିଏ ଖରାପ ଡୁମା କନ୍ଦାଉଛି । ସେଥିପାଇଁ ଦାଦିବୁଢ଼ାକୁ ପୂଜା କରିବାକୁ ହେବ । ଦାଦିବୁଢ଼ାକୁ ପୂଜା କଲେ ହିଁ ରାମ ନାଇକ ଖୁସିରେ ରହିବ । ଗାଁ ଲୋକେ ଦିଶାରୀକୁ ଧରିଲେ । 'ଦିଶାରୀ ପାଞ୍ଜି ଓଲଟେଇଲା । ଗୋଟାଏ ପରେ ଗୋଟାଏ ନାକପୁଡ଼ା ବୁଜି ଆରଟାରେ ସଁ ସଁ ନିଃଶ୍ୱାସ ମାରିଲା । ମଦ ପିଇଲା । ମୁଣ୍ଡ ଆଂଚୁଡ଼ି ହେଲା । ଆକାଶକୁ ଅନେଇଲା । ତଳେ ଗାର କାଟି ଭୁଟୁର ଭୁଟୁର ହେଲା । ଶେଷରେ ନିଷ୍ପତ୍ତି ଦେଲା ଯେ ଦାଦିବୁଢ଼ା ପାଖେ ବିଶିଷ୍ଟ ପୂଜାର ଆୟୋଜନ ହେବ । ଗୁରୁମାଈ ନାଚିବ । ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚ ହେବ । ଉତ୍ସବରେ ନାଇକ ନାଇକାଣୀ ଯୋଗଦେବେ । ତେବେ ଯାଇ ଦାଦିବୁଢ଼ାର ଦୟାରେ ସେମାନଙ୍କ ପ୍ରାଣ ଶୀତଳ ହେବ । ଯେଉଁ ଦୁଷ୍ଟ ଡୁମା ତାଙ୍କ ଘରେ ବସାକରି ସବୁବେଳେ ତାଙ୍କୁ କନ୍ଦେଇ ଚାଲିଛି । ସେ ପଳେଇଯିବ କୁଆଡ଼େ । ସମସ୍ତେ ପ୍ରସ୍ତୁତ ହେଲେ, ପୂର୍ଣ୍ଣିମା ରାତିର ବିଶିଷ୍ଟ ପୂଜା ପାଇଁ ।' (୫)

ଗୋଟିଏ ବଡ଼ ଜହ୍ନ ଗୋଲ ହୋଇ ରାତିରେ ଉଇଁଲା ପାହାଡ଼ର ଅଗ ଛୁଇଁ ଛୁଇଁକା ଖେଳିଗଲା ଗୋଟିଏ ଢେଉ ଢେଉକା ଆନନ୍ଦର କ୍ରମ । ଦାଦିବୁଢ଼ାକୁ ଘେରାଉ କରି ଗାଁର ସବୁ ଧାଙ୍ଗଡ଼ୀମାନେ ହାତରେ ହାତ ଗୁନ୍ଥି ଠିଆହେଲେ ଧାଙ୍ଗଡ଼ୀମାନେ ତେଜି ଉଠି ଏପାଖେ ସେପାଖେ ଦେହ ଘଷା ଘଷି କରି ବୁଲିବାକୁ ଲାଗିଲେ । ପ୍ରଚୁର ରନ୍ଧା ମଦ ପିଇ ସମସ୍ତେ ନାଚିଲେ । ଦିଶାରୀ ମନ୍ତ୍ର ପାଠ ଆରମ୍ଭ କଲା । ଗୁରୁମାଈକୁ କାଳିଶି ଲାଗି କହିଲା – 'ଠେଙ୍ଗାଜାନି ଖରାପ ଡୁମା ଥିଲା । ସନ୍ତୋଷ କୁମାରୀ ମଧ୍ୟ ଖରାପ ଡୁମା ଥିଲା, ସେମାନେ ଜନ୍ମ ହେବା ଆଗରୁ । ତୁମେ

ସମସ୍ତେ ଜନ୍ମ ହେବା ଆଗରୁ ମୁଁ ଦାଦିବୁଢ଼ା, ମୁଁ ସବୁ ଜାଣେ, ତୁମ ସମସ୍ତଙ୍କୁ ସର୍ଜିଛି ମୁଁ, ତୁମ ଭଲମନ୍ଦ ସବୁ ମୋ ହାତରେ । କେହି ମନଦୁଃଖ କରିବ ନାହିଁ ପିଲାମାନେ । ନାଚ କର, ଗୀତ ବୋଲ, ମଦ ପିଅ, ମତେ ଦିଅ, କୁକୁଡ଼ା ଦିଅ । ମୁଁ ତୁମକୁ ଅଭୟ ଦେଉଛି । ତୁମର କିଛି ଅନିଷ୍ଟ ହେବ ନାହିଁ ।' (୬) ଏହାପରେ ସମସ୍ତେ ଗାଁର ଧାଙ୍ଗଡ଼ା ଧାଙ୍ଗଡ଼ୀ ହାତ ଧରାଧରି ହୋଇ ଡମ୍ ବାଜାର ତାଳେ ତାଳେ ସମସ୍ତେ ନାଚଗୀତରେ ଏକାକାର ହୋଇଗଲେ ।

ଦାଦିବୁଢ଼ାକୁ ସମସ୍ତେ ପୂଜା କଲେ, ମଦପିଇଲେ, ଢୁଙ୍ଗଢୁଙ୍ଗା ବାଜା ବାଜିଉଠିଲା । ସମସ୍ତେ ବାଜାର ଶବ୍ଦରେ ହଜିଗଲେ । ଦାଦିବୁଢ଼ାକୁ କେତେ କୁକୁଡ଼ା, ପାରା, ଛେଳି ବଳି ଚଢ଼ିଲା । ଦାଦିବୁଢ଼ାକୁ ମଦ ଅର୍ପଣ କଲେ । ରାମ ନାଇକ ଶେଷରେ ଦିଶାରୀ ଓ ଗୁରୁମାଈର ଶଠତା ଭିତରେ ପଡ଼ି ଗାଁରେ ଭୋଜି ଦେଲେ । ଦାଦିବୁଢ଼ା ପାଖରେ ତା'ର ବିଶ୍ୱାସ ଫେରି ଆସୁଥିଲା ବେଳେ ଗୋମଡ଼କ ପଡ଼ିଛି ଆଉ ଗାଁର ତେଇଶି ଲୋକଙ୍କୁ ବାଘ ଖାଇ ଦେଇଛି । ଦିଶାରୀ ନିଜେ ତା' ପୂର୍ବରୁ ରୋଗରେ ପଡ଼ି ଦାଦିବୁଢ଼ା ପାଖରେ ପ୍ରାଣ ଛାଡ଼ିଛି । ଲୋକେ ପୂର୍ବଜନ୍ମରୁ ପ୍ରତୀକ୍ଷା କଲାବେଳେ ରୂପଜାନି ନୂଆ ଦିଶାରୀର କାମ କରିଛି । 'ବାଘ ତୁମା ମାଡିଛି ବୋଲି ଶାମ ଗୁରୁମାଈ କାଳିଶି ରୂପେ କହିଲା । ତା' କଣ୍ଠରେ ଦାଦିବୁଢ଼ା ବିରାଜମାନ ହୋଇ କହିଲା ବୋଲି ଗ୍ରାମବାସୀ ଯୁଗ ଯୁଗର ଭିଟାମାଟି ଛାଡ଼ି ଅନ୍ୟତ୍ର ଛାଡ଼ି ଗଲେ । ପରଜା ଲୋକ ଭାରି ଦୟାଳୁ । ଆଉ ଏମିତି ମଣିଷ ସେମାନେ ଯେ ଯାହା ବୁଝିବେ ସେୟା କରିବେ । ସେମାନଙ୍କର ମନ ଭିତରେ କି ଆଦିମ ବିଶ୍ୱାସ, ସେମାନଙ୍କ ମନରେ ଦାଦିବୁଢ଼ା ଚୋର ପଶିଲା । ଆମେ ଧର୍ମାନ୍ତର ଡମ୍ ଖ୍ରୀଷ୍ଟିଆନ୍ ତଥା ଏହାକୁ ସଇତାନ୍ ପୂଜା ବୋଲି ମନେକଲେ । ଅଶିକ୍ଷିତ ମଣିଷ ତାକୁ ଆଦିମ ଦେବତାର ପ୍ରତ୍ୟକ୍ଷ ଦେବତା ବୋଲି ଗ୍ରହଣ କରିନେଲେ । ସେହି କନ୍ଧ ମୂଳଧାରଣା ଆଦିମାନଙ୍କ ଭିତରେ ରହିଛି । ସେମାନଙ୍କ ଗୁଣିଗାରେଡ଼ି, ଡାହାଣୀ, ତୁମା ଆଦି ପରମ୍ପରାରୁ ମୁକ୍ତ ନୁହଁନ୍ତି ।

ମଣିଷ ଭୟରେ ଦେବତା ସୃଷ୍ଟି କରେ, ଆଉ ଦେବତାର ଆଶାରେ ତରିଯିବ ବୋଲି ବିଚାର କରେ । ସାଧାରଣ ଆଦିବାସୀ ମଣିଷ, ପ୍ରକୃତି ଉପରେ ଯେତେ ଭରସା କରେ, ସେହି ପ୍ରକୃତିର ଅନ୍ତରାଳରେ ଥିବା ଅଦୃଶ୍ୟ ଶକ୍ତିକୁ ସେତେ ଡରେ । ତୁମାକୁ ଭୟ କରେ ଏବଂ ପୁନର୍ଜନ୍ମ ଲାଭ କରିବ ବୋଲି ବିଶ୍ୱାସ କରେ । ଏଣୁ ଦାଦିବୁଢ଼ାକୁ ନେଇ ପରଜା ଜୀବନର ଉତ୍‌ଥାନ୍ ପତନ ସଂଘଟିତ ହୋଇ ଚାଲିଛି । ଦେବତାକୁ ତାଙ୍କର ପ୍ରାଣେ ଭୟ । କାରଣ ସେମାନେ ଶାନ୍ତି ପ୍ରିୟ ଜାତି । ଗୋପୀନାଥ ମହାନ୍ତିଙ୍କ ଭାଷାରେ 'ମଣିଷର ଭୟ ଓ ବିସ୍ମୟ ହେତୁ ଦେବତାର ସୃଷ୍ଟି । ବାଘ ବୋବାଇଛି ମନରେ ଭୟ ସଂଚାର ହୋଇଛି, ବଣରେ ନିଆଁ ଲାଗିଛି । ଏହିଠାରୁ ଗୋଟିଏ ପ୍ରତୀକ ଭାବରେ ସୃଷ୍ଟି ହୋଇଛି ଦେବତା ।' (୭)

ପରଜା ସଂପ୍ରଦାୟର ଲୋକେ ବିଭିନ୍ନ ଗଛ, ପଥର ଆଦିକୁ ଦେବତା ରୂପରେ ପୂଜାପାଠ କରିଥାନ୍ତି । ଗାଁ ମୁଣ୍ଡରେ ଥିବା ଗୋଜିଆ ପଥରକୁ ସେମାନେ ଦେବତା ବୋଲି ବିଶ୍ୱାସ କରି ତାକୁ ଫୁଲ, ଚନ୍ଦନ, ସିନ୍ଦୂର ଦେଇ ମୁଣ୍ଡିଆ ମାରିଥାନ୍ତି ଏବଂ ଗାଁ ମୁଣ୍ଡରେ ଥିବା ଥୁଣ୍ଟା ବରଗଛ, ଖଜୁରୀ ଗଛ ଓ ସାହାଡ଼ା ଗଛ, ମହୁଲ ଗଛ ଏବଂ ଉଇହୁଙ୍କା ପ୍ରଭୃତିଙ୍କୁ । ଦେବତା ରୂପେ ପୂଜା କରନ୍ତି । ସେମାନେ ଅତି ଭକ୍ତି ଶ୍ରଦ୍ଧାର ସହିତ ସେମାନଙ୍କୁ ପ୍ରତ୍ୟେକ ପର୍ବପର୍ବାଣିରେ ପୂଜା କରିଥାନ୍ତି । ଦେବତାଙ୍କୁ ଖୁସି କରାଇବା ପାଇଁ ଅନେକ କୁକୁଡ଼ା, ପାରା, ଛେଳି ଇତ୍ୟାଦି ବଳି ଦେଇଥାନ୍ତି । ଉଇ ହୁଙ୍କା ମାଟିକୁ ସେମାନେ ଔଷଧ ରୂପେ ବ୍ୟବହାର କରିଥାନ୍ତି । ମୁଣ୍ଡବ୍ୟଥା, ଜ୍ୱର, ପିଲାଛୁଆ ଜନ୍ମ ହେବା ପାଇଁ ଏସବୁ କାମରେ ସେମାନେ ଔଷଧ ଭାବରେ ବିଶ୍ୱାସ କରି ପାନ କରିଥାନ୍ତି ।

ଦାଦିବୁଢ଼ା ଏକ ବିଶ୍ୱାସର ପ୍ରତୀକ । ପରଜାର ଚେତନା, ଆଦର୍ଶ ଧର୍ମ ବିଶ୍ୱାସ, ସୁଖଦୁଃଖ, ଭୟ, ବିସ୍ମୟ, ଆଶା ନିରାଶାକୁ ଆଚ୍ଛନ୍ନ କରିଛି । ପରଜାର ସମଗ୍ର ମାନସିକ, ନୈତିକ ତଥା ଆଧାତ୍ମିକ ସ୍ଥିତିର ନିୟାମକ ସେ । ଗୋଟିଏ କଥାରେ ଏହି ମାନବିକତା ସଂପ୍ରଦାୟର ସୃଷ୍ଟି ତଥା ସଂସ୍କୃତିର ମୂଳ ଉତ୍ସ ସେ । ବିଗ୍ରହ ସେ । ପରିଣତି ମଧ୍ୟ ସେ । ତେଣୁ ସମଗ୍ର 'ଦାଦିବୁଢ଼ା' ଉପନ୍ୟାସର

ପରିକଳ୍ପନା ଏବଂ ପରିପ୍ରସାର କ୍ଷେତ୍ରରେ ଏକମାତ୍ର କେନ୍ଦ୍ରବିନ୍ଦୁ ସେ । ଏଣୁ ଦାଦିବୁଢ଼ାଙ୍କୁ ଏହି ଉପନ୍ୟାସର ନାୟକ କହିଲେ ଯଥାର୍ଥ ହେବ । ସଂପ୍ରସାରଣରେ ଆସିଛନ୍ତି ରାମ ନାଇକ, ଜାନି, ଦିଶାରୀ, ବାରିକ, ଗୁରୁମାଇ, ଠେଙ୍ଗା ଜାନି, ଡମ୍, ଖ୍ରୀଷ୍ଟିଆନ, ସାରିଆଦାନ, ସାରିଆଫୁଲ, ସନ୍ତୋଷ କୁମାରୀ, ଆଦି ସବୁ ସାନବଡ଼ ଚରିତ୍ର । କିନ୍ତୁ ସମସ୍ତେ ପାର୍ଶ୍ୱ ଚରିତ୍ର । ତାଙ୍କରି ଭିତରେ ତାଙ୍କ ଅସ୍ତିତ୍ୱର ବିଶେଷତ୍ୱକୁ ପ୍ରମାଣିତ କରିବାକୁ ପଦେ ପଦେ ଆସିଛି । 'ଦାଦିବୁଢ଼ା' ସବୁଠାରେ ରହିଛି ସେ ମୂକସାକ୍ଷୀ ଭାବେ । ସେ ହିଁ ସମସ୍ତଙ୍କୁ ଏକ ଚୁମ୍ବକ ଭଳି ଗୋଟିଏ ଦିଗକୁ ଟାଣି ନେଇଛି । ତେଣୁ ବହୁତ୍ୱ ମଧ୍ୟରେ ଐକ୍ୟର ବିନ୍ଦୁ ଦାଦିବୁଢ଼ାଙ୍କୁ ହିଁ, ପ୍ରତୀକଧର୍ମୀ ଶ୍ରେଷ୍ଠ ଚରିତ୍ରର ଗୌରବ ଦିଆଯାଏ ।

ବର୍ତ୍ତମାନ ଯୁଗରେ ମଧ୍ୟ ପରଜା ଆଦିବାସୀମାନେ ନିଜର ସଂସ୍କୃତି, ପରମ୍ପରା, ପର୍ବପର୍ବାଣି, ଧର୍ମ, ଦେବତା ପ୍ରତି ବିଶ୍ୱାସ, ଐତିହ୍ୟକୁ ବଜାୟ ରଖିଛନ୍ତି । ଆଜି ମଧ୍ୟ ଦାଦିବୁଢ଼ା ପ୍ରତି ସେମାନଙ୍କର ପ୍ରଗାଢ଼ ବିଶ୍ୱାସ ରହିଅଛି । ବିଭିନ୍ନ ଶୁଭ କାର୍ଯ୍ୟରେ ବା ବାହାର ରାଜ୍ୟକୁ ଗମନ କଲେ ଦାଦିବୁଢ଼ାଙ୍କ ଆଶୀର୍ବାଦ ନେଇକି ଯାଇଥାନ୍ତି । ବିଭିନ୍ନ ପର୍ବପର୍ବାଣିରେ ଦାଦିବୁଢ଼ା ପାଖରେ ନାଚ , ଗୀତ, କୁକୁଡ଼ା, ପାରା, ଛେଳି ଇତ୍ୟାଦି ବଳି ଦେବାର ପ୍ରଥା ଚାଲିରହିଛି । ଗୋପୀନାଥ ମହାନ୍ତି ଶିଳ୍ପୀ ସୁଲଭ ଦୃଷ୍ଟିଭଙ୍ଗୀ ନେଇ ଲୋକ ସମାଜର ଭିତର ମଣିଷଟିକୁ ସେ ପ୍ରଥମେ ଖୋଜିବା ଆରମ୍ଭ କରିଥିଲେ । ଓଡିଶା ମାଟିର ଆତ୍ମା ସହିତ ଓତପ୍ରୋତ ଭାବେ ମିଶିଯାଇ ଏହାର ଆତ୍ମା ସହିତ ଏକାତ୍ମ୍ୟ ହୋଇପଡ଼ିଥିଲେ । ଏହିସବୁ କାରଣରୁ ସେ ଓଡ଼ିଶାର ବାଣୀଭଣ୍ଡାରକୁ ଯେଉଁ ମହାର୍ଘ୍ୟ ପ୍ରଦାନ କରିଥିଲେ, ତାହା ହେଲା ଆମ ଉପନ୍ୟାସ ସାହିତ୍ୟର ବିକାଶ ପଥରେ ଏକ ଅମଳିନ ମାଇଲ୍‌ଖୁଣ୍ଟ ।

**ସହାୟକ ଗ୍ରନ୍ଥସୂଚୀ**


୧. ଗୋପୀନାଥ ମହାନ୍ତି, ଦାଦିବୁଢ଼ା, ପ୍ରକାଶକ : ବିଦ୍ୟାପୁରୀ, କଟକ, ଷଷ୍ଠ ମୁଦ୍ରଣ ମାର୍ଚ୍ଚ ୨୦୧୦, ପୃ–୮

୨. ପୃ–୧୫–୧୬

୩. ମିର୍ଦ୍ଧା, ହାଡ଼ିବନ୍ଧୁ , ଆଦିବାସୀ ଜୀବନଚର୍ଯ୍ୟା, ପ୍ରକାଶକ: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ, ଭୁବନେଶ୍ୱର, ସଂସ୍କରଣ– ୨୦୧୧, ପୃ–୧୦୨–୧୦୩

୪. ମହାନ୍ତି, ଗୋପୀନାଥ, ଦାଦିବୁଢ଼ା , ପୃ– ୬୯

୫. ମହାନ୍ତି, ଗୋପୀନାଥ, ଦାଦିବୁଢ଼ା, ପୃ– ୬୨

୬. ମହାନ୍ତି, ଗୋପୀନାଥ, ଦାଦିବୁଢ଼ା, ପୃ–୬୬

୭. ହାଡ଼ିବନ୍ଧୁ ମିର୍ଦ୍ଧା, ଆଦିବାସୀ ଜୀବନଚର୍ଯ୍ୟା, ପୃ–୧୦୩

୮. ପାତ୍ର, ଦେବାଶିଷ, ଦକ୍ଷିଣାଂଚଳିୟ ଓଡ଼ିଆ ଜନଜାତି ସଂସ୍କୃତି ଓ ସାହିତ୍ୟ, ପ୍ରକାଶକ: ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ସଂସ୍କରଣ–୨୦୧୫

୯. ଦାସ, ସୁଲୋଚନା, ଓଡ଼ିଆ ଉପନ୍ୟାସରେ ଆଦିବାସୀ ଜୀବନଚର୍ଯ୍ୟା, ପ୍ରକାଶକ: ବିଦ୍ୟାପୁରୀ, ବାଲୁବଜାର, କଟକ, ସଂସ୍କରଣ–୨୦୧୫

୧୦. ମିଶ୍ର, ରାଜକିଶୋର, ଗୋପୀନାଥଙ୍କ ଉପନ୍ୟାସରେ ମରମ କଥା, ପ୍ରକାଶକ: ବିଦ୍ୟାପୁରୀ, ବାଲୁବଜାର, କଟକ, ସଂସ୍କରଣ–୨୦୧୭

୧୧. ପ୍ରଧାନ, ମନୋରଞ୍ଜନ, ଗୋପୀନାଥ ଚୟନିକା, ପ୍ରକାଶକ: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ, ସଂସ୍କରଣ–୨୦୧୮



ଗବେଷକ ( ଓଡ଼ିଆ ବିଭାଗ)
କିଟ୍, କିସ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର




# ଓଡ଼ିଆ ଉପନ୍ୟାସରେ ଜଗନ୍ନାଥ ଚେତନାର ପ୍ରତିଫଳନ

ଡକ୍ଟର ସ୍ୱପ୍ନାରାଣୀ ସିଂ

ଓଡିଆ ଜାତି ଓ ସମଗ୍ର ଓଡିଶାର ପ୍ରାଣସ୍ପନ୍ଦନ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଓଡିଆ ସାହିତ୍ୟର ଗୁଣସୂତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡିଆ ସାହିତ୍ୟ ଯେବେଠାରୁ ଆଖି ଖୋଲିଛି, ସେବେଠୁଁ ସେ ଦେଖିଛି ଜଗନ୍ନାଥଙ୍କୁ । ଜଗନ୍ନାଥଙ୍କୁ ବାଦ୍‌ଦେଲେ ଯେପରି ଏହି ଜାତିଟି ଅନାଥ ହୋଇଯିବ । ସେହିପରି ଏହି ଜାତିର ସାହିତ୍ୟ ମଧ୍ୟ ହୋଇଯିବ ବିକଳାଙ୍ଗ । ତେଣୁ ଓଡିଆ ସାହିତ୍ୟକୁ ଜନ୍ମଦେଇଥିବା ବା ଓଡିଆ ସାହିତ୍ୟର ମୂଳଦୁଆ ପକାଇଥିବା 'ସାରଳା ଦାସ' ଦେବୀ ଉପାସକ ହେଲେ ମଧ୍ୟ ନିଜ ଶ୍ରେଷ୍ଠକୃତି 'ମହାଭାରତ'ରେ ଜଗନ୍ନାଥଙ୍କୁ ବନ୍ଦନା କରିବାକୁ ଭୁଲିନାହାନ୍ତି ।

'ବନ୍ଦଇ ଶ୍ରୀଜଗନ୍ନାଥ ବଇକୁଣ୍ଠବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି ।'

(ସୂର୍ଯ୍ୟନାରାୟଣ ଦାସ – ଓଡିଆ ସାହିତ୍ୟର ଇତିହାସ–୧ଭାଗ–ପୃ–୨୬୭)

ଉତ୍କଳୀୟ ବୈଷ୍ଣବ ତଥା ପିଣ୍ଡ ବ୍ରହ୍ମାଣ୍ଡବାଦରେ ବିଶ୍ୱାସୀ ପଞ୍ଚସଖା ହୁଅନ୍ତୁ କି କାଳ୍ପନିକ ଯୁଗର କବିଗଣ ହୁଅନ୍ତୁ, ପୁଣି ସେ ମାଦଳାପାଞ୍ଜି ହେଉ ('ଓଡିଶା ରାଜାର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ? ମୁଗଲ ଗୋଳ ହୋଇଲାକୁ ସୋମଦ୍ର ମାଡି ଅଇଲାକୁ,') କି ରୁଦ୍ରସୁଧାନିଧି, ପୁଣି ରୀତିଯୁଗର କାବ୍ୟକର୍ତ୍ତାମାନେ ହୁଅନ୍ତୁ କି ଆଧୁନିକ ଯୁଗର ସାହିତ୍ୟକାର ହୁଅନ୍ତୁ ଓଡିଆ ସାହିତ୍ୟର କେନ୍ଦ୍ରବିନ୍ଦୁରେ ରହିଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ । ତେଣୁ ଓଡିଆ ସାହିତ୍ୟର ପ୍ରତ୍ୟେକଟି ବିଭବ ତାହା କବିତା ହେଉ କି ଗଳ୍ପ, ପ୍ରବନ୍ଧ ହେଉ କି ଉପନ୍ୟାସ ସବୁକିଛି ଜଗନ୍ନାଥମୟ ।

ଏହି ଦୃଷ୍ଟିକୋଣରୁ ଓଡିଆ ଉପନ୍ୟାସ ସାହିତ୍ୟକୁ ବିବେଚନା କଲେ ଜଣାଯିବ ଯେ, ବହୁ ଉପନ୍ୟାସ ଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ ହୋଇଛି । ଯଦିଓ କାବ୍ୟକବିତା ତୁଳନାରେ ଏହା ସ୍ୱଳ୍ପ ତଥାପି ଏହାର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡିଆ ସାହିତ୍ୟରେ ରଚିତ କେତେକ ଉପନ୍ୟାସ ହେଉଛି– ଗୋପୀନାଥ ମହାନ୍ତିଙ୍କ 'ଲୟବିଲୟ'(୧୯୬୧), ଚନ୍ଦ୍ରଶେଖର ରଥଙ୍କ 'ଯନ୍ତ୍ରାରୂଢ'(୧୯୬୭), ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ'(୧୯୬୮) ଓ 'ନୀଳାଦ୍ରି ବିଜୟ' (୧୯୮୦), ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଶକୁନ୍ତଳା' (୧୯୮୦), ବ୍ରଜମୋହନ ମହାନ୍ତିଙ୍କ 'ଲଳିତା ଲବଙ୍ଗଲତା'(୧୯୮୨), ବିକ୍ରମ ଦାସଙ୍କ 'ମଣିମାଡିହ'(୧୯୮୧), 'ଅଲିଭା ଇତିହାସ'(୧୯୮୨) ଓ 'ନିର୍ବାସିତ ଗଜପତି', ବଳରାମ ପଟ୍ଟନାୟକଙ୍କ 'ଅନାଦି ଅନନ୍ତ' (୧୯୮୭), 'ପାର୍ଶ୍ୱଦେବତା' (୧୯୯୦), 'ଚରୈବେତି' (୧୯୯୩) ଓ 'ଅନେକ ରୂପରୂପାୟ'(୧୯୯୫), ବିଜୟିନୀ ଦାସଙ୍କ 'ଦେବଦାସୀ'(୧୯୮୯) ଏବଂ ଶାନ୍ତି ମହାପାତ୍ରଙ୍କର 'ସ୍ୱାଧୀନତାର ଶେଷ ସୂର୍ଯ୍ୟ'(୧୯୯୪) ।

୧୯୬୧ ମସିହାରେ ରଚିତ ଗୋପୀନାଥ ମହାନ୍ତିଙ୍କ 'ଲୟବିଲୟ' ଉପନ୍ୟାସଟି ହେଉଛି ଚେତନାପ୍ରବାହ ଧାରା ଉପରେ ପର୍ଯ୍ୟବସିତ ଏକ ସଫଳ ସୃଷ୍ଟି । ମାତ୍ର ଚାରିଦିନର

ପୃଷ୍ଠଭୂମିରେ ଦଣ୍ଡାୟମାନ ଏହି ଉପନ୍ୟାସରେ ମଣିଷର ଅବଚେତନ ମନଟି ଯେପରି ପ୍ରତିଫଳିତ ହୋଇଛି, ତାହା ବାସ୍ତବିକ ବେଶ୍ ଉଚ୍ଚକୋଟୀର । ଆଜିର ସମାଜରେ ମଣିଷ ବଞ୍ଚିବା ପାଇଁ ତଥା ନିଜର ସାଧାରଣ ଆବଶ୍ୟକତା ପୂରଣ କରିବା ପାଇଁ ଅହରହ ସଂଗ୍ରାମ କରିଚାଲିଛି । କଳକାରଖାନାରେ କଳର ମଣିଷ ସାଜି ବାସ୍ତବରେ ସେ ନିର୍ଜୀବ ବସ୍ତୁ ପରି ହୋଇଯାଇଛି । ଏମିତି ବିପର୍ଯ୍ୟୟରେ ଧନ୍ଦି ହେଉଥିବା କଳର ମଣିଷ 'ତରୁଣ ରାୟ'କୁ ନେଇ ଆଲୋଚ୍ୟ ଉପନ୍ୟାସଟି ଗତିଶୀଳ । କଳକାରଖାନାର ବିଷାକ୍ତ ଧୂଆଁରେ ଧନ୍ଦି ହେଉଥିବା ତରୁଣ ରାୟର ଅବଚେତନ ମନଟି ଶେଷରେ ଏହି ସବୁରୁ ମୁକ୍ତି ପାଇବା ପାଇଁ ତାକୁ ଟାଣିନେଇଛି ମହାପ୍ରଭୁ ଜଗନ୍ନାଥଙ୍କ ପାଖକୁ । ନିଜ ପରିବାର ସହିତ ଟ୍ରେନ୍‌ରେ ପୁରୀ ଆସୁଥିବା ସମୟରେ ଦୂରରୁ ଶ୍ରୀଜଗନ୍ନାଥ ମନ୍ଦିରକୁ ଦେଖି ଭାବାନ୍ତର ସୃଷ୍ଟିହୋଇଛି ତା' ମନରେ– 'ସତେ ଅବା ସେ ମନ୍ଦିର ନୁହେଁ, ସେ ଗୋଟିଏ ଆତ୍ମାର ରୂପାନ୍ତ ଶ୍ରୀଜଗନ୍ନାଥ ଏବଂ ମହୋଦଧିର ବିଶାଳତା ଭିତରେ ସେ ନିଜ ଜୀବନର ସଂକୀର୍ଣ୍ଣତାକୁ ବିଲୀନ କରିଦେଇଛନ୍ତି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ କଳାକଳା ଆଖି ଦୁଇଟିର ମାୟା ସମଗ୍ର ଓଡିଆ ଜାତିକୁ ଯେପରି ବାନ୍ଧି ରଖିଛି, ସେଥିରୁ ବାହାରିବା କୌଣସି ଓଡିଆଙ୍କ ପାଖରେ ବାସ୍ତବିକ ଅସମ୍ଭବ । ଜଗନ୍ନାଥଙ୍କୁ ଦେଖିଦେବା ପରେ ସେ ସବୁକିଛି ଭୁଲିଯାଏ ଓ ସ୍ୱତଃସ୍ଫୂର୍ତ୍ତଭାବେ ତା' କଣ୍ଠରୁ ବାହାରିଆସେ– 'ଓହୋ, ଓହୋ ! ଜଗନ୍ନାଥ! ନିସ୍ତରିଲି ପ୍ରଭୁ! ହେ ବଳିଆରଭୁଜ! ହେ ଚକାନୟନ! ହେ ପତିତପାବନ ହରି! ଏ ରୂପ ଦେଖି ଜୀବ ଯାଉ ହେ ପ୍ରଭୁ ।' ସଂସାରରୁ ମୁକ୍ତି ତଥା ଆତ୍ମାର ତୃପ୍ତି ପାଇବା ପାଇଁ ଏ ଓଡିଆ ଯେତେ 'ମଥୁରା', 'କାଶୀ' ଓ 'ବୃନ୍ଦାବନ' ବୁଲିଲେ ସୁଦ୍ଧା ଶଙ୍ଖକ୍ଷେତ୍ରର ବଡଦାଣ୍ଡରେ ଏବଂ ମହୋଦଧି ମଧ୍ୟରେ ନିଜକୁ ହଜାଇଦେଇ ତା' ଭିତରେ ଖୋଜନ୍ତି ନିଜ ଜୀବନର ସାର୍ଥକତା । ଏହିଭଳି ଏକ ଓଡିଆ ସନାତନ ଦାସ ହେଉଛନ୍ତି ଚନ୍ଦ୍ରଶେଖର ରଥଙ୍କର 'ଯନ୍ତ୍ରାରୂଢ'ର ନାୟକ । ସେ ନିଜ ସହ ଯୁଦ୍ଧ କରିକରି ନିଜ ସତ୍ତାକୁ ହଜାଇ ଦେଇଛନ୍ତି ସେହି ଜଗନ୍ନାଥଙ୍କର ଦୁଇଟି କଳାକଳା ଆଖି ମଧ୍ୟରେ । ବାସ୍ତବିକ ଚନ୍ଦ୍ରଶେଖରଙ୍କର ଏହି ନାୟକ ହେଉଛି ସମଗ୍ର ଓଡିଆ ଜାତିର ଏକ ପ୍ରତୀକ ।

'ନୀଳଶୈଳ' ଉପନ୍ୟାସ (୧୯୬୮) ପାଇଁ ସୁରେନ୍ଦ୍ର ମହାନ୍ତି ପାଠକମାନଙ୍କ ଆଗ୍ରହକ୍ରମେ ଏହି ଉପନ୍ୟାସ ସୃଷ୍ଟିର ବାରବର୍ଷ ପରେ ସୃଷ୍ଟି କରିଥିବା 'ନୀଳାଦ୍ରି ବିଜୟ'(୧୯୮୦) ଉଭୟ ହେଉଛି ସ୍ମରଣୀୟ ଓଡିଆ ଜାତିର ପ୍ରାଣସ୍ପନ୍ଦନ । ଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ ଦୁଇଟି ଉଲ୍ଲେଖଯୋଗ୍ୟ ସୃଷ୍ଟି । ପୁରାଣସୁଲଭ ଅଲୌକିକତା ଏହି ଗ୍ରନ୍ଥଦ୍ୱୟରେ ଦେଖିବାକୁ ମିଳେ ନାହିଁ । ଏଥିରେ ଦେଖିବାକୁ ମିଳେ ବାସ୍ତବ ଜୀବନର ଚିତ୍ର । ଏହି ଉପନ୍ୟାସଦ୍ୱୟର ନାୟକ ହେଉଛନ୍ତି ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ । ରାଜା ରାମଚନ୍ଦ୍ର ଦେବଙ୍କ ଅମଳର ଓଡିଶାର ଐତିହାସିକ ଘଟଣା ଏବଂ ତକି ଖାଁ ସହିତ ଦ୍ୱନ୍ଦ୍ୱ ଆଦିକୁ ଆଧାରକରି ଏହି ଉପନ୍ୟାସ ରଚିତ ହୋଇଥିଲେ ହେଁ ଏଥିରେ ମୁଖ୍ୟତଃ ଦେଖିବାକୁ ମିଳେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ପ୍ରେମ । ପ୍ରକୃତରେ କହିବାକୁ ଗଲେ ଏକ ଐତିହାସିକ ଉପନ୍ୟାସ ଲେଖୁଲେଖୁ ଔପନ୍ୟାସିକ କରିଯାଇଛନ୍ତି ଏକ ମହାକାବ୍ୟିକ କାଳୋତ୍ତୀର୍ଣ୍ଣ ସ୍ୱାକ୍ଷର ।

୧୯୮୦ ମସିହାରେ ରଚିତ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର 'ଶକୁନ୍ତଳା' ଉପନ୍ୟାସଟି ହେଉଛି ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ଏକ ମିଥ୍ ଚରିତ୍ରକୁ କେନ୍ଦ୍ରକରି ଗଢିଉଠିଥିବା ଏହି ଉପନ୍ୟାସଟି ରାଜନୈତିକ ତତ୍ତ୍ୱ, ଜାତୀୟ ଜୀବନର ହା-ହୁତାଶ, ବିମର୍ଷ ଓ ବିପର୍ଯ୍ୟୟର ଏକ ଜୀବନ୍ତ ଚିତ୍ର । ତତ୍‌ସହିତ ଲକ୍ଷ୍ୟଭ୍ରଷ୍ଟ ରାଜନୀତି ଓ ସାମାଜିକ ଆନ୍ଦୋଳନର ପୃଷ୍ଠଭୂମିରେ ଭାରତୀୟ ସନାତନତ୍ୱର ଅଖଣ୍ଡତା ପ୍ରତିଷ୍ଠାର ଉଦ୍ୟମ । ଆଲୋଚ୍ୟ ଉପନ୍ୟାସରେ 'କଣ୍ଣୁଆ' ଗ୍ରାମର ପୃଷ୍ଠଭୂମିରେ ସମାଜବାଦ, ସାମ୍ୟବାଦ, ଭୂଦାନପ୍ରଚାର, ନକ୍ସଲପନ୍ଥୀ କାର୍ଯ୍ୟକଳାପ ଇତ୍ୟାଦିର ପରୀକ୍ଷା କରାଯାଇଛି ଏକ ନୂତନ ସମାଜ ପ୍ରତିଷ୍ଠା ପାଇଁ । ନକ୍ସଲମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତିକୁ ମନ୍ଦିରରୁ ନେଇ ଫୋପାଡି ଦେଇଛନ୍ତି ବିଲରେ । ହେଲେ ଏହି ସମାଜରେ ଜଗନ୍ନାଥ ଚେତନା ବା ଭଗବତ୍ ଚେତନା ଏତେ ଦୃଢ ଯେ ନକ୍ସଲମାନଙ୍କର ଏହି ପରୀକ୍ଷା ହୋଇଛି

ବିଫଳ । ଶେଷରେ ସେମାନେ ଜନସମର୍ଥନ ପାଇବା ପାଇଁ ପୁଣିଥରେ ଦେବପ୍ରତିମାଙ୍କୁ ମନ୍ଦିରକୁ ଫେରାଇ ଆଣିଛନ୍ତି ।

ଓଡିଶାର ସଂସ୍କୃତି, ପରମ୍ପରା ଓ କିମ୍ବଦନ୍ତୀକୁ ଆଧାରକରି ରଚିତ ବ୍ରଜମୋହନ ମହାନ୍ତିଙ୍କ 'ଲଳିତା ଲବଙ୍ଗଲତା' ହେଉଛି 'ଗୀତଗୋବିନ୍ଦ'ର ରଚୟିତା ଜୟଦେବଙ୍କର ଜୀବନୀ ଆଧାରିତ ଏକ ସାର୍ଥକ ଉପନ୍ୟାସ । ଏହାକୁ ଔପନ୍ୟାସିକ ପ୍ରଥମ ଜୀବନୀମୂଳକ ଉପନ୍ୟାସ ବୋଲି ଆଖ୍ୟା ଦେଇଛନ୍ତି । ଆଲୋଚ୍ୟ ଉପନ୍ୟାସରେ ଜୟଦେବଙ୍କର ଜନ୍ମ, ତାଙ୍କ ପିତାମାତାଙ୍କର ମୃତ୍ୟୁ, ପଦ୍ମାବତୀଙ୍କ ସହ ବିବାହ ଆଦି ପ୍ରସଙ୍ଗ ଆଲୋଚିତ ହୋଇଥିଲେ ହେଁ ଏଥିରେ ମୁଖ୍ୟତଃ ଗୁରୁତ୍ୱ ଲାଭକରିଛି ଭଗବାନଙ୍କ ଭକ୍ତର ପ୍ରତି ପ୍ରେମ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଫଳରେ ଜୟଦେବ ନିର୍ମଳ ପ୍ରେମରସକୁ ଆଧାରକରି ଶୃଙ୍ଗାର ରସଶ୍ରେଷ୍ଠ 'ଗୀତଗୋବିନ୍ଦ' ରଚନା କରିବା, ଶିଶୁ ରୂପରେ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ପଦ୍ମାବତୀଙ୍କ କଣ୍ଠରୁ 'ଗୀତଗୋବିନ୍ଦ' ଶୁଣିବାକୁ ଆସିବା, ଜୟଦେବଙ୍କ ପ୍ରତି ହେଉଥିବା ବିଭିନ୍ନ ଷଡଯନ୍ତ୍ରରୁ ତାଙ୍କୁ ରକ୍ଷାକରିବା ଆଦି ବିଭିନ୍ନ ଅଲୌକିକ ଘଟଣାର ପୃଷ୍ଠଭୂମିରେ ରଚିତ ଏହି ଉପନ୍ୟାସଟି ବାସ୍ତବିକ ଜଗନ୍ନାଥ ଚେତନାସମ୍ବଳିତ ଏକ ଶ୍ରେଷ୍ଠ ଉପନ୍ୟାସ ।

ଔପନ୍ୟାସିକ ବିକ୍ରମ ଦାସଙ୍କର 'ମଣିମାଡିହ' (୧୯୮୧), 'ଅଲିଭା ଇତିହାସ'(୧୯୮୨) ଏବଂ 'ନିର୍ବାସିତ ଗଜପତି' ଉପନ୍ୟାସଗୁଡିକ ଏହି ସମସ୍ୟା ଉପରେ ଆଧାରିତ । ଏହି ପ୍ରତ୍ୟେକଟି ଉପନ୍ୟାସରେ ଅତ୍ୟାଚାରୀ ଇଂରେଜ ଶାସକଙ୍କ ଦ୍ୱାରା ଜଗନ୍ନାଥ ସଂସ୍କୃତିକୁ ବିଲୋପ କରିବା ପାଇଁ ଚକ୍ରାନ୍ତ ଦେଖିବାକୁ ମିଳେ । ଏହାଛଡା ରାଜତନ୍ତ୍ରର ଲୋପ ଆଳରେ ଓଡିଶାର ଲୋକମାନେ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଭାବରେ ଗ୍ରହଣ କରିଥିବା ଗଜପତିମାନଙ୍କ ଉପରେ ଇଂରେଜମାନେ ଅତ୍ୟାଚାର ଆରମ୍ଭ କରିଦେଇଛନ୍ତି । ଏହି ଉପନ୍ୟାସଗୁଡିକରେ ଜଗନ୍ନାଥଙ୍କ ସଂପର୍କିତ କୌଣସି ଅଲୌକିକ ଘଟଣା ପରିଲକ୍ଷିତ ହୋଇନଥିଲେ ହେଁ ନିଜର ସଂସ୍କୃତିକୁ ରକ୍ଷା କରିବା ପାଇଁ ଓଡିଆ ପ୍ରାଣର ବ୍ୟାକୁଳତା ତଥା ନିଜର ରାଜାଙ୍କୁ ଠାକୁରରାଜା କହି ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ସହ ତୁଳନା କରୁଥିବା ପ୍ରଜାମାନଙ୍କର ରାଜାଙ୍କର ଦୁଃଖରେ ଭାଙ୍ଗିପଡିବା ବିଶେଷଭାବେ ପାଠକର ହୃଦୟ ଆକର୍ଷିତ କରିଥାଏ । ଦୃଷ୍ଟାନ୍ତସ୍ୱରୂପ ଏକ ପ୍ରଜା କଣ୍ଠରୁ ରାଜାଙ୍କ ପ୍ରତି ବାହାରିଥିବା ଉକ୍ତିକୁ ଗ୍ରହଣ କରାଯାଇପାରେ– 'ଆପଣ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ବୋଲି ଆପଣଙ୍କୁ ରଥ ଉପରେ ଦେଖିବାକ୍ଷଣି ଲକ୍ଷଲକ୍ଷ ଭକ୍ତଙ୍କ ଆଖିରୁ ଲୁହ ଗଡି ପଡୁଥିଲା । ଏବେ ଆପଣଙ୍କ ଆଖିରେ ଲୁହ, ସେ ପୁଣି ଦୁର୍ଦ୍ଦଶା ଯୋଗୁଁ । ଆପଣଙ୍କୁ ଦୋଷୀକରି ବିଦେଶୀ ବିଧର୍ମୀ ସରକାର ବନ୍ଦୀ କରିପାରିଲା । ଏହା ନିଶ୍ଚୟ ଏକ ବିରାଟ ଷଡଯନ୍ତ୍ର । କିନ୍ତୁ ବଡ ଆଶ୍ଚର୍ଯ୍ୟର କଥା, ସେଥିରେ କେହି ପାଟି ଫିଟାଇଲେ ନାହିଁ କି କାର୍ଯ୍ୟର ପ୍ରତିବାଦ କଲେ ନାହିଁ । ଆପଣଙ୍କୁ ବନ୍ଦୀ ଭାବରେ କଳାପାଣି ଯିବାକୁ ଛାଡିଦେଲେ । ହାୟ ହତଭାଗ୍ୟ ଦେଶ । ଏ ଦେଶର ସବୁ ଲୋକଙ୍କୁ ଇଂରେଜ ମେରୁଦଣ୍ଡଶୂନ୍ୟ କରିଦେଲେ ।'( ନିର୍ବାସିତ ଗଜପତି–ପୃ–୫୯) ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପୁରୀର ସଭ୍ୟତା ଓ ସଂସ୍କୃତିର ପୃଷ୍ଠଭୂମି ଉପରେ ଗଢିଉଠିଛି ବଳରାମ ପଟ୍ଟନାୟକଙ୍କର 'ଅନାଦି ଅନନ୍ତ' (୧୯୮୭), 'ପାର୍ଶ୍ୱଦେବତା' (୧୯୯୦), 'ଚରୈବେତି' (୧୯୯୩) ଏବଂ 'ଅନେକ ରୂପ ରୂପାୟ' (୧୯୯୫) ଆଦି ଉପନ୍ୟାସ । ସଂପୃକ୍ତ ଉପନ୍ୟାସଗୁଡିକୁ ଆଞ୍ଚଳିକ ଉପନ୍ୟାସ ମଧ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଏଥିରେ ପୁରୀର କଥିତଭାଷା, ଲୋକୋକ୍ତି, ଲୋକଗୀତି, ପ୍ରବାଦ ଓ ପ୍ରବଚନ ମଧ୍ୟ ଦେଖିବାକୁ ମିଳେ । ଏହି ଚାରୋଟି ଉପନ୍ୟାସରେ ଭିନ୍ନଭିନ୍ନ ଚରିତ୍ର , ଘଟଣା ଆଦି ପରିଲକ୍ଷିତ ହୋଇଥିଲେ ହେଁ ଏହି ଉପନ୍ୟାସଗୁଡିକର କେନ୍ଦ୍ରବିନ୍ଦୁ ଗୋଟିଏ ବୋଲି ମନେହୁଏ । ସତେଯେପରି ଜଗନ୍ନାଥ ସଂସ୍କୃତି ରୂପକ ବୀଜରୁ ସୃଷ୍ଟି ଏହି ଚାରୋଟି ଏକ ମହାଦ୍ରୁମ । ଜଗନ୍ନାଥ ଚେତନା ଓଡିଆମାନଙ୍କୁ ଏପରି ବାନ୍ଧିରଖିଛି ଯେ, ସେମାନେ ଯୁଆଡେ ବି ଯାଆନ୍ତୁ ନା କାହିଁକି ଜଗନ୍ନାଥଙ୍କୁ କେବେହେଲେ ଛାଡିପାରନ୍ତି ନାହିଁ । ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦ ତଳେ ଅନ୍ତିମ ସମୟ କଟାଇବାକୁ ସେମାନେ

ଫେରିଆସନ୍ତି ତାଙ୍କ ପାଖକୁ । ଏହା ଉପନ୍ୟାସଗୁଡ଼ିକର କେତେକ ଚରିତ୍ରଙ୍କ କ୍ଷେତ୍ରରେ ଦେଖିବାକୁ ମିଳେ । ମୋଟ୍ ଉପରେ ଜଗନ୍ନାଥ ସଂସ୍କୃତିକୁ ନେଇ ଗଢ଼ିଉଠିଥିବା ପୁରୀର ସଂସ୍କୃତିର ସାମଗ୍ରିକରୂପ ଏହି ଚାରୋଟି ଉପନ୍ୟାସରେ ଦେଖିବାକୁ ମିଳେ । ସେ ଖୁରି ନାୟକ ମାଧ୍ୟମରେ ପାଞ୍ଜିପାଠ କଥା ହେଉ କିମ୍ବା ଚନ୍ଦନ ଯାତ୍ରା, ଗଣେଶ ପୂଜାବେଳେ ଯାତ୍ରାଭିନୟ, ଗୋଟିପୁଅ ନାଚ, ପାଲା, ଦାସକାଠିଆ, ନାଗାମେଢ଼, ଚଇତି ଘୋଡ଼ାନାଚ, ଦେବଦାସୀ ନୃତ୍ୟ, ନବକଳେବର ବିଧାନ ଆଦି ମାଧ୍ୟମରେ ପୁରୀ ସହ ସାମଗ୍ରିକ ଓଡ଼ିଶାର ଲୋକସଂସ୍କୃତିର ଚିତ୍ରଣ ଦେଖିବାକୁ ମିଳେ । ପୁଣି ବିଭିନ୍ନ କିମ୍ବଦନ୍ତୀ ଯଥା– ଶ୍ରୀଚୈତନ୍ୟଙ୍କ ପାଦଚିହ୍ନ, ସାତଲହଡ଼ି ମଠ, ଜଗନ୍ନାଥ ଦାସଙ୍କ ମାହାତ୍ମ୍ୟ (୭ ଦିନ ପୁରୁଷ ଓ ୩ ଦିନ ନାରୀ ହେବା), ଅଚ୍ୟୁତାନନ୍ଦଙ୍କ ବଟବୃକ୍ଷ, ବଳରାମ ଦାସଙ୍କ ବାଲିରଥ ନିର୍ମାଣ, ସାଲବେଗଙ୍କର ଅଲୌକିକ ମହିମା, ଇନ୍ଦ୍ରଦ୍ୟୁମ୍ନଙ୍କ କୂର୍ମରୂପ ଆଦିର ମଧ୍ୟ ଚିତ୍ରଣ ଦେଖିବାକୁ ମିଳେ । ଏହା ଆମ ପଞ୍ଚସଖା ସାହିତ୍ୟର ମୁଖ୍ୟ ସ୍ୱରୂପ । ଏହିଭଳିଭାବେ ଏହି ଚିରୋଟି ଉପନ୍ୟାସ ଜଗନ୍ନାଥ ସଂସ୍କୃତିର ବିଶିଷ୍ଟ ଚିତ୍ରଣ । ପୁରୀର ସ୍ଥାନୀୟତା ଏସବୁ ଉପନ୍ୟାସରେ ରୂପାୟିତ ହୋଇଥିଲେ ମଧ ସାର୍ବଜନୀନ ଆବେଦନ ଏସବୁ ରଚନାର ବଳିଷ୍ଠ ବିଭବ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିଜ ସ୍ୱାମୀଭାବେ ଗ୍ରହଣକରି ସମଗ୍ର ଜୀବନ କାମ, କ୍ରୋଧ, ଲୋଭ ଓ ମୋହରୁ ଦୂରେଇ ରହୁଥିବା ଦେବଦାସୀମାନଙ୍କର ଜୀବନକୁ ନେଇ ରଚିତ ହୋଇଛି ବିଜୟିନୀ ଦାସଙ୍କର 'ଦେବଦାସୀ' ଉପନ୍ୟାସ । ଦେବଦାସୀ ପରମ୍ପରା ଓ ସେମାନଙ୍କର ଜୀବନର ବିପର୍ଯ୍ୟୟକୁ କେନ୍ଦ୍ରକରି ଏହି ଉପନ୍ୟାସଟି ରଚିତ ହୋଇଥିଲେ ହେଁ ଏଥିରେ ମୁଖ୍ୟତଃ ଗୁରୁତ୍ୱ ଲାଭ କରିଛି ଜଗନ୍ନାଥ ସଂସ୍କୃତି ଓ ପରମ୍ପରା । କାରଣ ଜଗନ୍ନାଥ ସଂସ୍କୃତି ଓ ପରମ୍ପରାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଛି ଦେବଦାସୀ ସଂସ୍କୃତି । ଓଡ଼ିଶା ଇତିହାସରେ ମାଦଳାପାଞ୍ଜିଠାରୁ ନେଇ ଅନ୍ୟାନ୍ୟ ବହୁ ସଂଗ୍ରହଣରେ ମଧ୍ୟ ଏହି ଦେବଦାସୀ ପରମ୍ପରାର ଉଲ୍ଲେଖ ରହିଛି । ମାତ୍ର ଏହି ପରମ୍ପରାଟି କାଳକ୍ରମେ ବିପର୍ଯ୍ୟୟ ଆଡ଼କୁ ଗତିକରିବା ତଥା ଦେବଦାସୀ ହେଉଥିବା ନାରୀମାନଙ୍କ ପ୍ରତି ସମାଜର ନାସିକା କୁଞ୍ଚନ ପ୍ରତି ଔପନ୍ୟାସିକା ଉକ୍ତ ଉପନ୍ୟାସରେ ପାଠକର ଦୃଷ୍ଟି ଆକର୍ଷିତ କରିଛନ୍ତି । ଉପନ୍ୟାସର କେତେକ ଚରିତ୍ର ଯଥା– ଇନ୍ଦୁ ମାହାରୀ, ମୁକ୍ତା ମାହାରୀ ଓ ମାୟା ମାଧ୍ୟମରେ ଲେଖିକା ଦେବଦାସୀମାନଙ୍କର ଜୀବନର ବିପର୍ଯ୍ୟୟକୁ ଦର୍ଶାଇବା ସହ ଏହି ଘୃଣିତ ପରମ୍ପରା ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ କରିଛନ୍ତି ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନାୟକ କରି ରଚିତ ଶାନ୍ତି ମହାପାତ୍ରଙ୍କର 'ସ୍ୱାଧୀନତାର ଶେଷସୂର୍ଯ୍ୟ' ଏକ ଉଚ୍ଚକୋଟୀର ସୃଷ୍ଟି । ଏଥିରେ ମୁଖ୍ୟତଃ ଜଗନ୍ନାଥଙ୍କର ସେବକଭାବେ ରାଜା ମୁକୁନ୍ଦଦେବ ଓଡ଼ିଶାର ସଂସ୍କୃତି ଓ ସ୍ୱାଧୀନତା ପାଇଁ ଜୀବନ ଉତ୍ସର୍ଗ କରିବା ପ୍ରସଙ୍ଗ ଗୁରୁତ୍ୱ ଲାଭକରିଛି । ଉକ୍ତ ଉପନ୍ୟାସର ବିଷୟବସ୍ତୁ ସାଧାରଣତଃ ଇତିହାସ, କିମ୍ବଦନ୍ତୀ ଓ ମାଦଳାପାଞ୍ଜି ଆଧାରିତ । ୧୫୬୮ ମସିହାରେ ବଙ୍ଗ ସୁଲତାନ ସୁଲେମାନ ଓ ତାଙ୍କ ପୁତ୍ରଙ୍କ ସହିତ କଳାପାହାଡ଼ ହିନ୍ଦୁ ସଂସ୍କୃତି ପ୍ରତି ବୀତସ୍ପୃହ ହୋଇ ଜଗନ୍ନାଥ ସଂସ୍କୃତିର ମୂଳୋତ୍ପାଟନ ପାଇଁ ମୟୂରଭଞ୍ଜ ଦେଇ ଓଡ଼ିଶା ଆକ୍ରମଣ କରିବା ମୁକୁନ୍ଦଦେବଙ୍କ ସେନାପତିଙ୍କ ବିଶ୍ୱାସଘାତକତା, ସାରଙ୍ଗଗଡ ରାଜାଙ୍କ ଦ୍ୱାରା ମୁକୁନ୍ଦଦେବ ନିହତ ହେବା, ଓଡ଼ିଶା ମୁସଲମାନମାନଙ୍କ ଦ୍ୱାରା ଅଧିକୃତ ହେବା, କଳାପାହାଡ଼ ଦ୍ୱାରା ଓଡ଼ିଶାର ବିଭିନ୍ନ ମନ୍ଦିର ଧ୍ୱଂସ ହେବା, ଜଗନ୍ନାଥ ମନ୍ଦିରକୁ ଧ୍ୱଂସ କରିବାକୁ ଆସିବାବେଳେ ମୁକୁନ୍ଦଦେବଙ୍କ ରାଣୀ ତା'ର ବାଟ ଓଗାଳିବା– 'ସୁବର୍ଣ୍ଣ ଥାଳିରେ ହେଡା (ଗୋ ମାଂସ) ପରଶିଲେ ମୁକୁନ୍ଦଦେବଙ୍କ ରାଣୀ ।' କଳାପାହାଡ଼ର ଭୟରେ ଜଗନ୍ନାଥଙ୍କୁ ଗୋପ୍ୟ କରାଇବା, ମାତ୍ର କଳାପାହାଡ଼ ଜଗନ୍ନାଥଙ୍କର ସନ୍ଧାନ ପାଇ ତାଙ୍କୁ ଧ୍ୱଂସ କରିବା ପରେ ବ୍ରହ୍ମକୁ ନ ପୋଡ଼ିପାରି ଫିଙ୍ଗିଦେବା, ବିଶର ମହାନ୍ତିଙ୍କ ଦ୍ୱାରା ବ୍ରହ୍ମ ଉଦ୍ଧାର ଇତ୍ୟାଦି ଘଟଣାକୁ ଆଧାରକରି ରଚିତ ଏହି ଉପନ୍ୟାସ ବାସ୍ତବିକ ଏକ ଉଚ୍ଚକୋଟୀର ସୃଷ୍ଟି ।

ଏହିପରିଭାବେ ଓଡ଼ିଶାର ସଭ୍ୟତା ଓ ସଂସ୍କୃତିର ମେରୁଦଣ୍ଡ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନେଇ ଆହୁରି ଅନେକ

ଉପନ୍ୟାସ ଓଡିଆ ସାହିତ୍ୟରେ ରଚିତ ହୋଇଛି ଓ ଓଡିଆ ଉପନ୍ୟାସ ସାହିତ୍ୟକୁ ପ୍ରଦାନ କରିଛି ମହାର୍ଘ୍ୟ ଓ ମହମ ପରିଚିତି । ଯଦିଓ ପ୍ରାଚୀନ ସାହିତ୍ୟ ତୁଳନାରେ ଆଧୁନିକ ସାହିତ୍ୟ ପ୍ରତ୍ୟକ୍ଷ ଭାବରେ ଜଗନ୍ନାଥ ଚେତନା ଦ୍ୱାରା ସେତେ ମାତ୍ରାରେ କବଳିତ ନୁହେଁ ମାତ୍ର ପରୋକ୍ଷ ଭାବରେ ଓଡିଆ ସାହିତ୍ୟର ପ୍ରତ୍ୟେକଟି ସୃଷ୍ଟିକୁ ଏହା ପ୍ରଭାବିତ କରିଛି । ଏହା ସତ୍ୟ ଯେ ଓଡିଶାବାସୀ, ଓଡିଆ ସାହିତ୍ୟ, ସଭ୍ୟତା, ସଂସ୍କୃତି ଓ ପରମ୍ପରା ଜଗନ୍ନାଥଙ୍କ ବିନା ଅସଂପୂର୍ଣ୍ଣ । ଓଡ଼ିଆ ଅସ୍ମିତା, ସାଂସ୍କୃତିକ ସ୍ୱାଭିମାନ, ଧାର୍ମିକ ଭିତ୍ତିଭୂମି, ସାମାଜିକ–ସମ୍ବନ୍ଧର ଆଧାରଶିଳା ଭାବରେ ଯୁଗବଧି ସ୍ୱୀକୃତ ଶ୍ରୀଜଗନ୍ନାଥ ଚେତନା ସମ୍ବଳିତ ବିବିଧ କଥାକଳ୍ପରେ ଏସବୁ ଉପନ୍ୟାସ ସମୃଦ୍ଧ ।

ଆସିଷ୍ଟାଣ୍ଟ ପ୍ରଫେସର
ଓଡିଆ ଭାଷା ଓ ସାହିତ୍ୟ ବିଭାଗ
ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟ
ଅମୃତ ବିହାର, ସମ୍ବଲପୁର–୭୬୮୦୦୧

# ଯବାନର ଆହ୍ୱାନ

**ରାମଚନ୍ଦ୍ର ଭୂତିଆ**

ନାହିଁ ମୋର ଭୟ ତୁଟାଇଛି ମୋହ
ସୀମାନ୍ତରେ ଦିଏ ମୁଁ ପହରା
ହାଡ଼ ଭଙ୍ଗା ଶୀତ ମୁଣ୍ଡ ଫଟା ଖରା
ସହିଥାଏ ଅସରନ୍ତି ଶ୍ରାବଣର ଧାରା ।
ନାହିଁ ମୋର ଜାତି ଧର୍ମ – ସମ୍ପ୍ରଦାୟ
ଭାରତୀୟ ମୁଁ, ବୀର ଯବାନ
ହିନ୍ଦୁ ମୁଁ ଯେ ନୁହଁ ନୁହଁ ମୁସଲିମ
ନା ମୁଁ ଶିଖ୍ ନା ମୁଁ ଜୈନ ।
ଛାଡିଛି ମୁଁ ଘର ଜନନୀର କୋଳ
ଗାଁ ଭୂଇଁ ଆଉ ମୋ ପରିବାର
ଦେଶର ସୁରକ୍ଷା କରିବାର ଦୀକ୍ଷା
ଭୁଲାଇ ଦେଇଛି ଭୟ କାତର ।
ଶୁଷ୍କ ମରୁଭୂମି ଉତ୍ତୁଙ୍ଗ ଶିଖର
ପୁଣି କେବେ ବିକ୍ଷୁବ୍ଧ ସାଗର ବୁକେ
ଦିଏ ମୁଁ ପହରା ମାରେ ପଇଁତରା
ସର୍ବଦା ଜାଗ୍ରତ ମୁଁ, କର୍ତ୍ତବ୍ୟ ପଥେ ।



ଭୁଲି ଭୋକ ଶୋଷ କର୍ତ୍ତବ୍ୟ ପଥରେ
ହୋଇଥାଏ ମୁହିଁ ସଂଗ୍ରାମେ ରତ
କରେନାହିଁ କ୍ଷୁଣ୍ଣ ରାଷ୍ଟ୍ରର ସମ୍ମାନ
କରିପାରେ ସିନା ମୁଁ ପ୍ରାଣପାତ ।
ଧରିଅଛି ଅସ୍ତ୍ର କମାଣ ବନ୍ଧୁକ
ରାଷ୍ଟ୍ର ଅଖଣ୍ଡତା ପାଇଁ ତତ୍ପର
ଦେଇପାରେ ବଳି ନିଜର ଜୀବନ
ରଖିବାକୁ ଟେକ ମାତୃଭୂମିର ।
କରେ ମୁଁ ଆହ୍ୱାନ ମୋ ଦେଶବାସୀଙ୍କୁ
ଆସ ଆମ୍ଭେ ସର୍ବେ ନେବା ଶପଥ
ଜାତି ଧର୍ମ ଭୁଲି ଏକ ସାଥେ ମିଳି
ନିର୍ମାଣ କରିବା ନବ ଭାରତ ।

ଡି–୬୪୭/ସେକ୍ଟର–୮
ରାଉରକେଲା–୭୬୯୦୦୯





# ବିପ୍ଳବୀ ବିର୍ସା ମୁଣ୍ଡା

**ଜୟଶଙ୍କର ନାୟକ**

ଆଜି ଅଗଷ୍ଟ ପନ୍ଦର । ଆମ ଦେଶର ସ୍ୱାଧୀନତା ଦିବସ । ଏହି ସ୍ୱାଧୀନତା ଦିବସ ଆମ ପାଇଁ ଏକ ଦାନ ସ୍ୱରୂପ ନଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡିଥିଲା । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ । ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ମିଳିଥାଏ । ବିଶେଷ କରି ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ୍ ନେହେରୁ, ସର୍ଦ୍ଦାର ପଟେଲ୍, ମୌଲାନା ଆଜାଦ୍, ସରୋଜିନୀ ନାଇଡୁ, ଗୋପବନ୍ଧୁ ଦାସ, ସୁଭାଷ ଚନ୍ଦ୍ର ବୋଷ ଓ ସ୍ୱାଧୀନତା ଆନ୍ଦୋଳନର ବହୁ ନେତା, ଯେଉଁମାନଙ୍କ ତ୍ୟାଗ ତଥା ଆତ୍ମୋତ୍ସର୍ଗ ବିନା ଭାରତବର୍ଷ ସ୍ୱାଧୀନତାର ଆଲୋକ ଦେଖିବା ସମ୍ଭବପର ହୋଇ ପାରିନଥାନ୍ତା । ସେମାନଙ୍କ ନିକଟରେ ଆମ ଦେଶ ଚିର କୃତଜ୍ଞ । ଆଜି ତାଙ୍କରି ଯୋଗୁଁ ଭାରତବାସୀ ଅନ୍ୟ ବିଦେଶୀ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଫର୍ ଫର୍ ହୋଇ ଉଡ଼ାଇ ପାରିଛନ୍ତି । ଏହା ବହୁଦିନ ଧରି ବ୍ରିଟିଶ୍ ଶାସନାଧୀନ ହୋଇ ରହିବା ପରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇ ପାରିଛି ।

ବିଦେଶୀ ଶାସନର ଦାରୁଣ ନିର୍ଯ୍ୟାତନା ଏ ଦେଶର ଅଧିବାସୀଙ୍କର ଅନ୍ତରରେ ପ୍ରଜ୍ୱଳିତ କଲା ସ୍ୱାଭିମାନ ଭାବ । ଏ ଦେଶର ପ୍ରତ୍ୟେକ ଅଧିବାସୀଙ୍କ ଅନ୍ତରରେ ସୃଷ୍ଟି କଲା ଦେଶ ମାତୃକାର ମୁକ୍ତି ପାଇଁ ଦୁର୍ବାର ଲାଳସା । ଜୀବନ ବିନିମୟରେ ଦେଶ ମାତୃକାର ମୁକ୍ତି ପାଇଁ ସେମାନେ ହେଲେ ଦୃଢ଼ ପରିକର । ଜୀବନ ବିନିମୟରେ ଦେଶର ମୁକ୍ତି ପାଇଁ ଏ ଦେଶର ଜନତା ହେଲେ ଐକ୍ୟବଦ୍ଧ । ଇଂରେଜ ଶାସକର ଗୁଳିଗୋଳା ବନ୍ଧୁକ ମୁକ୍ତିଗାମୀ ଜନତାଙ୍କୁ ଲକ୍ଷ୍ୟଚ୍ୟୁତ କରିପାରିଲା ନାହିଁ । ସ୍କୁଲ, କଲେଜ ପରିତ୍ୟାଗ କରି ଛାତ୍ର ସମାଜ ଏହି ଆନ୍ଦୋଳନରେ ଯୋଗ ଦେଲେ । ପୁର ପଲ୍ଲୀର କୃଷକ ସମାଜ ମଧ ଗଭୀର ମନୋବଳ ନେଇ ମୁକ୍ତି ଯୁଦ୍ଧରେ ଶହୀଦ ହେବାକୁ ବାହାରି ଆସିଲେ । ଖୁଦୀରାମ, ଲକ୍ଷ୍ମଣ ନାୟକ, ଭଗତ ସିଂହ, ଉଦାମ ସିଂ ହସି ହସି ଝୁଲି ପଡ଼ିଛନ୍ତି ବ୍ରିଟିଶ୍ ଶାସନର ଫାଶି ଖୁଣ୍ଟରେ । 'ଝଣ୍ଡା ଉଚ୍ଚା ରହେ ହମାରା' ଧ୍ୱନି ଦେଉ ଦେଉ ୭୫ ବର୍ଷର ବୃଦ୍ଧା ମାତଙ୍ଗିନୀ ହାଜର ଲୋଟି ପଡ଼ିଛନ୍ତି ମାତୃଭୂମିର କୋଳରେ । ବାର ବର୍ଷର ବାଳକ ବାଜି ରାଉତ ତଥା ୧୦ ବର୍ଷର ଝିଅ କଲ୍ୟାଣୀ ଛାତି ପାତି ଦେଇଛନ୍ତି ବ୍ରିଟିଶ୍ ଶକ୍ତିର ଗୁଳିରେ । ଅନୈକ୍ୟ ମଧ୍ୟରେ ଐକ୍ୟ, ବୈସାଦୃଶ୍ୟ ମଧ୍ୟରେ ସାଦୃଶ୍ୟ ଏବଂ ବୈଷମ୍ୟ ଭିତରେ ସାମ୍ୟ ସୃଷ୍ଟି କରିବା ହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର ଅଟେ । ବ୍ରିଟିଶ ଶାସନର ଅଧୀନରେ ରହି ଗୋଲାମୀ କରି ଜୀବନ ଅତିବାହିତ କରିବାକୁ ସେମାନେ କୁଣ୍ଠାବୋଧ ପ୍ରକାଶ କଲେ । ମହାମାନବ ମହାତ୍ମା ଗାନ୍ଧୀ ଭାରତୀୟ ମୁକ୍ତି ଆନ୍ଦୋଳନର ହେଲେ ଭଗୀରଥ । ସେ ହେଲେ ଭାରତର ଅତ୍ୟାଚାର ବିଦଳିତ ଅଗଣିତ ଜନତାର ମୁକୁଟ ବିହୀନ ସମ୍ରାଟ । ପରାଧୀନ ଭାରତବର୍ଷକୁ ବ୍ରିଟିଶ୍ ଶାସନର ରଥଚକ ତଳୁ ଉଦ୍ଧାର କରିବାକୁ ସେ ହେଲେ ବଦ୍ଧପରିକର । ଏହି ଆନ୍ଦୋଳନକୁ ରୂପରେଖ ଦେଲେ ମହାମାନବ ମହାତ୍ମା ଗାନ୍ଧୀ ।

ପାଦ୍ରୀ, ଜମିଦାରୀ ପ୍ରଥା ତଥା ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ ସଙ୍ଗଠିତ କରି ଭାରତ ତଥା ଓଡ଼ିଶା, ଝାଡ଼ଖଣ୍ଡ, ବିହାରର ଇତିହାସକୁ ମହିମାନ୍ୱିତ ଓ ଗୌରବାନ୍ୱିତ କରିଥିବା ଅସାଧାରଣ ପ୍ରତିଭା ସମ୍ପନ୍ନ ଓ ମହନୀୟ କୃତିତ୍ୱ ବରେଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଶହୀଦ ବୀର୍ସା ମୁଣ୍ଡା ଥିଲେ ଅନ୍ୟତମ । ସେ ଥିଲେ ଜଣେ ଯୋଗଜନ୍ମା ପୁରୁଷ । ସେ ଆହୁରି ମଧ୍ୟ ଥିଲେ ମୁଣ୍ଡା ସ୍ୱାଭିମାନର ପ୍ରଥମ ଜାଗ୍ରତ ପ୍ରହରୀ । ସେ ଆଦିବାସୀ ଯୁବକଙ୍କୁ ଏକଜୁଟ କରି ବ୍ରିଟିଶ ସରକାରଙ୍କ ବିରୋଧରେ ବିଦ୍ରୋହ ସଂଗଠିତ କରିପାରିଥିଲେ । ଏହି ବିଦ୍ରୋହର ପୁରୋଧା ଥିଲେ ବିପ୍ଳବୀ ବିର୍ସା ମୁଣ୍ଡା । ଦୋରା ବିଶୋଇ, ଚକ୍ର ବିଶୋଇ, ବିପ୍ଳବୀ ଧରଣୀଧର ନାୟକ, ବିପ୍ଳବୀରୁ ସହିଦ ରନ୍ନା ନାୟକ, ବିପ୍ଳବୀରୁ ହଜାରୀବାଗ ଜେଲ – ମାଡ୍ରି କାଲୋ, ନିର୍ମଳ ମୁଣ୍ଡା ପ୍ରମୁଖ ସୁଖ୍ୟାତ ଆଦିବାସୀ ମୁକ୍ତିଯୋଦ୍ଧାଙ୍କର ସେ ଜଣେ ସମକକ୍ଷ ବିପ୍ଳବୀ । ତାଙ୍କର ବିପ୍ଳବଟି ସାଧାରଣରେ ବିର୍ସା ମୁଣ୍ଡା ବିଦ୍ରୋହ ନାମରେ ପରିଚିତ ।

ଏହି ମହାନ ଯୋଦ୍ଧା ଭାରତରେ ଆଦିବାସୀ ବିଦ୍ରୋହର ଏକ ଚିରସ୍ମରଣୀୟ ରକ୍ତରଞ୍ଜିତ ସଂଗ୍ରାମର ସୂତ୍ରପାତ କରାଇଥିଲେ । ୧୮୭୫ ମସିହା ନଭେମ୍ବର ୧୫ ତାରିଖରେ ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲାରେ ଜନ୍ମଗ୍ରହଣ କରିଥିବା ଏହି ଶିଶୁଟି ଶୈଶବରୁ ଅନ୍ୟମାନଙ୍କଠାରୁ ଭିନ୍ନ ଥିଲେ । ଓଳିଆରୁ ଗଜା ହେଲାଭଳି ଜନ୍ମରୁ ତାଙ୍କ ମୁକ୍ତ ଚିନ୍ତାଧାରା ଓ ଅନ୍ୟାୟ ବିରୋଧରେ ଦୃଢ଼ ସ୍ୱରଉତ୍ତୋଳନ କରିବାର ପ୍ରବୃତ୍ତି ଓ ସାହସିକତା ଗୁଣ ଦେଖି ସରଳ ଆଦିବାସୀମାନେ ତାଙ୍କୁ ସମ୍ମାନ କରୁଥିଲେ ।

ସେହି ସମୟରେ ଦରିଦ୍ର ଆଦିବାସୀମାନଙ୍କୁ ସାହାଯ୍ୟ କରିବାର ମିଥ୍ୟା ପ୍ରଲୋଭନ ଦେଖାଇ ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ଶୋଷଣ କରୁଥିଲେ । ମିଶନ ସ୍କୁଲର ଖ୍ରିଷ୍ଟିୟାନ ଶିକ୍ଷକମାନେ ଆଦିବାସୀ ଓ ହିନ୍ଦୁଧର୍ମକୁ ହୀନ ଚକ୍ଷୁରେ ଦେଖୁଥିଲେ ଓ ଏହାକୁ ନିନ୍ଦା କରୁଥିଲେ । ଏହା ବିର୍ସାମୁଣ୍ଡାକୁ ଉତ୍ୟକ୍ତ କରାଉଥିଲା । ସେ ଶିକ୍ଷକଙ୍କ ବିପକ୍ଷରେ ସ୍ୱର ଉତ୍ତୋଳନ କରି ସେଠାରୁ ଚାବୁକ ମାଡ଼ ଖାଇ ବହିଷ୍କୃତ ହୋଇ ପାଠରେ ଡ଼ୋରି ବାନ୍ଧିଥିଲେ । ହେଲେ ଏହି ଘଟଣା ତାଙ୍କ ମନ ଉପରେ ଗଭୀର ଭାବରେ ରେଖାପାତ କରିଥିଲା । ତାଙ୍କ ଭିତରେ ଥିବା ସୁପ୍ତ ବୈପ୍ଳବିକ ଭାବନାକୁ ଜାଗ୍ରତ କରାଇଥିଲା ।

ଏହି ସମୟରେ 'ସର୍ଦ୍ଦାର ଆନ୍ଦୋଳନ' ହୋଇଥିଲା । ବିର୍ସାମୁଣ୍ଡା ଆଦିବାସୀମାନଙ୍କର ତ୍ରାଣକର୍ତ୍ତା ରୂପେ ଉଭା ହେଲେ । ଝାଡ଼ଖଣ୍ଡ, ବିହାରରେ ଜମିଦାରୀ ପ୍ରଥା ବିରୋଧରେ ସେ ସ୍ୱର ଉତ୍ତୋଳନ କଲେ । ଯେତେବେଳେ ତାଙ୍କ ଅଞ୍ଚଳରେ ହଇଜା ଓ ବସନ୍ତରେ ଲୋକ ପୋକ ମାଛି ଭଳି ମରିବାକୁ ଆରମ୍ଭ କଲେ, ବିର୍ସାମୁଣ୍ଡା ସଂକ୍ରମଣର ଭୟକୁ ଖାତିର ନକରି ରୋଗୀମାନଙ୍କୁ ଔଷଧ ଦେଇ ଭଲ କରାଇଲେ, ଏହାଦ୍ୱାରା ତାଙ୍କର ଆହୁରି ଲୋକପ୍ରିୟତା ବଢ଼ିବାକୁ ଲାଗିଲା । ତାଙ୍କର ଗୋଟିଏ ଡ଼ାକରାରେ ଆଦିବାସୀମାନେ ବିଦ୍ରୋହ କରିବା ପାଇଁ ଏକତ୍ରିତ ହେଲେ । ମୁଣ୍ଡା ଭାଷାରେ ସେ ଲୋକମାନଙ୍କୁ ଉଦ୍‌ବୋଧନ ଦେଇ କହୁଥିଲେ 'ଆଗୁଆ ରାଜଦାନ ମହାରାଣୀ ରାଜା ଟୁଡୁ ଦାନ' ଅର୍ଥାତ୍ ମହାରାଣୀ ଭିକ୍ଟୋରିଆଙ୍କ ଶାସନକୁ ବିଲୋପ କରି ଆମେ ଆମ ନିଜର ସ୍ୱାଧୀନ ରାଜ୍ୟ ଗଠନ କରିବା । ସେହି ସମୟରେ ତାଙ୍କର ସ୍ୱାଧୀନ ମୁଣ୍ଡା ରାଜ୍ୟର ପରିକଳ୍ପନା କରିବା ଥିଲା ଆଶ୍ଚର୍ଯ୍ୟଜନକ ଓ ଅବିଶ୍ୱସନୀୟ । ସେ ଲୋକମାନଙ୍କୁ କର, ଖଜଣା ନଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ଇଂରେଜମାନେ ସେମାନଙ୍କର ଦାନ, ଧର୍ମ, ସମ୍ମାନ ସବୁକୁ ନଷ୍ଟ କରୁଛନ୍ତି ବୋଲି ସେ ଅନୁଭବ କରୁଥିଲେ ।

ବିର୍ସାଙ୍କ ନେତୃତ୍ୱରେ ତାଙ୍କର କିଛି ସହଯୋଗୀ ଚାଇଁବସାଠାରେ କମିଶନରଙ୍କୁ ଏକ ଦାବୀପତ୍ର ଦେଇ ସେଥିରେ ସେମାନଙ୍କର ଜଙ୍ଗଲ ଓ ଜମି ଫେରାଇ ଦେବା ପାଇଁ ପ୍ରାର୍ଥନା କରିଥିଲେ । କିନ୍ତୁ ବ୍ରିଟିଶ୍ ସରକାର ଏଥିରେ ଉତ୍ୟକ୍ତ ହୋଇ କିଛି ବିଦ୍ରୋହୀଙ୍କୁ କାରାଗାରରେ ବନ୍ଦୀ କଲେ । ଚାଇଁବସା ପୋଲିସ ବିର୍ସାଙ୍କ ସମେତ ତାଙ୍କର ଅନ୍ୟ ୧୬ ଜଣ ସହଯୋଗୀଙ୍କୁ ଗିରଫ କରି 'ରାଜଦ୍ରୋହ' ଅଭିଯୋଗରେ ଦୁଇବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ

କରାଯାଇ ହଜାରିବାଗ ଜେଲରେ ବନ୍ଦୀ କରି ରଖାଗଲା । ବିର୍ସାଙ୍କର ଏହି ଜେଲ ରହଣି ତାଙ୍କୁ ଅଧିକ ବିଦ୍ରୋହୀ ଓ ପ୍ରତିଶୋଧ ପରାୟଣ କରିଦେଲା । ସେହି ସମୟରେ ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱର ସୁବର୍ଣ୍ଣଜୟନ୍ତୀ ପାଳନ ଅବସରରେ ସବୁ ବନ୍ଦୀଙ୍କୁ ମୁକ୍ତ କରାଗଲା । ଚାଇଁବସା ଆନ୍ଦୋଳନରେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ବ୍ୟର୍ଥ ହୋଇଥିବାର ଲକ୍ଷ୍ୟ କରି ବିର୍ସାମୁଣ୍ଡାଙ୍କ ନେତୃତ୍ୱରେ ଆଦିବାସୀମାନେ ସଶସ୍ତ୍ର ସଂଗ୍ରାମ ଆରମ୍ଭ କରିଦେଲେ । ବିର୍ସାଙ୍କ ନେତୃତ୍ୱରେ ହୋଇଥିବା ଏହି ମୁଣ୍ଡା ବିଦ୍ରୋହକୁ ମୁଣ୍ଡା ଭାଷାରେ 'ଉଇଗଲାନ୍' କୁହାଗଲା । ସେମାନଙ୍କର କ୍ରୋଧ ଚରମ ସୀମାରେ ପହଞ୍ଚିଲା, ସେମାନେ ସରକାରୀ କ୍ୱାର୍ଟର, କୋଠାବାଡ଼ିକୁ ପୋଡ଼ି ପକାଇଲେ ଓ ଇଂରେଜମାନଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ସିଂହଭୂମି ଜିଲ୍ଲାର ପୋରହାଟରୁ ଏହି ରକ୍ତାକ୍ତ ସଂଗ୍ରାମର ଆରମ୍ଭ ହେଲା । ବିର୍ସାଙ୍କ ଆକ୍ରମଣରେ ଇଂରେଜ ସରକାର ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ବିର୍ସାଙ୍କୁ ଧରାଇ ଦେଲେ ପାଞ୍ଚଶହ ଟଙ୍କା ପୁରସ୍କାର ବାବଦରେ ଦେବେ ବୋଲି ଇଂରେଜ ଡ଼େପୁଟି କମିଶନର ଘୋଷଣା କଲେ । ଇଂରେଜ ସୈନିକ ଓ ବିର୍ସାଙ୍କ ଦଳ ମଧ୍ୟରେ 'ଡ଼ୋମ୍ବାରୀ' ପାହାଡ଼ରେ ଘମାଘୋଟ ଲଢ଼େଇ ହେଲା । ଏଥିରେ ବିର୍ସାଙ୍କର ଘନିଷ୍ଠ ସହଯୋଗୀ ନରସିଂହ ମୁଣ୍ଡାଙ୍କ ସମେତ ଅନେକ ଆଦିବାସୀ ମୃତ୍ୟୁବରଣ କଲେ ଓ ବିର୍ସା କୌଶଳକ୍ରମେ ଚକ୍ରଧରପୁର ଜଙ୍ଗଲକୁ ପଳାୟନ କଲେ । ଏଥିରେ ପ୍ରତିଶୋଧ ପରାୟଣ ହୋଇ ଇଂରେଜମାନେ ବାରମ୍ବାର ଆଦିବାସୀ ବହୁଳ ଗ୍ରାମମାନଙ୍କରେ ଅତ୍ୟାଚାର ଓ ଲୁଟ୍‌ତରାଜ ଆରମ୍ଭ କଲେ, ତାଙ୍କର ଉଦ୍ଦେଶ୍ୟ ଥିଲା ଲୋକେ କଷ୍ଟ ପାଇଲେ ଭୟରେ ବିର୍ସାଙ୍କ ଠିକଣା କହିଦେବେ । ସେହି ସମୟରେ ବିର୍ସାଙ୍କର ଦୁଇ ଘନିଷ୍ଠ ସହଯୋଗୀ ଇଂରେଜମାନଙ୍କ ପାଖରେ ଆତ୍ମ ସମର୍ପଣ କଲେ ଓ ସେହିଦିନଠାରୁ ବିର୍ସାଙ୍କର ଦୃଢ଼ ମନୋବଳ ଭାଙ୍ଗିଗଲା । ସେଥିପାଇଁ ବିର୍ସାମୁଣ୍ଡା ସମ୍ମୁଖ ଯୁଦ୍ଧ ନକରି ପରାଜିତ ସୈନ୍ୟମାନଙ୍କୁ ନେଇ ନିଜର ସଂଗଠନକୁ ଦୃଢ଼ କରିବା ପାଇଁ ପୁନରାୟ ଗରିଲା ଯୁଦ୍ଧ କରିବା ପାଇଁ ମନସ୍ଥ କରିଥିଲେ, କିନ୍ତୁ ତାହା କିଛି ଫଳ ଦେଲା ନାହିଁ ।

ସରକାରଙ୍କ ଦ୍ୱାରା ଘୋଷିତ ପାଞ୍ଚଶହ ଟଙ୍କାର ଲୋଭରେ ତାଙ୍କର ସମ୍ପ୍ରଦାୟର ଦୁଇଜଣ ବିଶ୍ୱାସଘାତକ ବ୍ୟକ୍ତି ତାଙ୍କୁ ପୋଲିସ ହାତରେ ଧରାଇ ଦେଲେ ଏବଂ ଏହିଭଳି ଭାବରେ 'ମୁଣ୍ଡା ବିଦ୍ରୋହ'ର ଅନ୍ତ ଘଟିଲା । ଏହା ପରେ ବିର୍ସାଙ୍କୁ ବନ୍ଦୀ କରି 'ହଜାରିବାଗ ଜେଲକୁ' ପଠାଇ ଦିଆଗଲା । ତା ପରେ ସେଠାରୁ 'ରାଞ୍ଚି ଜେଲକୁ' ପଠାଇ ଦିଆଗଲା । ସେଠାରେ ବିର୍ସା ମୁଣ୍ଡାଙ୍କୁ ଅକଥନୀୟ ନିର୍ଯ୍ୟାତନା ଦିଆଯାଉଥିଲା । ସେଥିରେ ମଧ୍ୟ ଇଂରେଜ ଶାସକମାନଙ୍କର ମନଶାନ୍ତି ହେଲା ନାହିଁ । ପରିଶେଷରେ ସେମାନେ ବିର୍ସାଙ୍କୁ ଖାଦ୍ୟରେ ବିଷ ଦେଇ ମାରିଦେଲେ ଏବଂ ଚାରିଆଡ଼େ ପ୍ରଚାର ଓ ପ୍ରସାର କଲେ ତାଙ୍କର କଲେରା ରୋଗରେ ମୃତ୍ୟୁ ହୋଇଗଲା । ଏହି ମହାନ ଆଦିବାସୀ ବିପ୍ଳବୀ ବିର୍ସା ମୁଣ୍ଡାଙ୍କର ୧୯୦୦ ମସିହା ଜୁନ୍ ମାସ ୯ ତାରିଖରେ ସବୁଦିନ ପାଇଁ ନବଜାଗରଣରେ ଉଦିତ ସୂର୍ଯ୍ୟଙ୍କର ଅସ୍ତ ହୋଇଗଲେ । ମାତ୍ର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଭାରତ ଇତିହାସ ପୃଷ୍ଠାରେ ସବୁଦିନ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ଓ ପ୍ରତିଷ୍ଠା ସୃଷ୍ଟି କରିପାରିଥିଲେ ବିର୍ସା । ବିର୍ସାମୁଣ୍ଡାଙ୍କ ପ୍ରତିଛବି ସଂସଦ ଭବନରେ ସ୍ଥାନ ପାଇଛି । ଆଜିବି ଓଡ଼ିଶା, ଛତିଶଗଡ଼, ଝାଡ଼ଖଣ୍ଡ, ବିହାର ଓ ପଶ୍ଚିମବଙ୍ଗର ଆଦିବାସୀମାନେ ତାଙ୍କୁ ଦେବତା ଭଳି ପୂଜା କରୁଛନ୍ତି । ବିର୍ସାଙ୍କ ବିଦ୍ରୋହର ପ୍ରଭାବ ଫଳପ୍ରସୂ ହୋଇପାରିଛି । ଆଦିବାସୀମାନେ ତାଙ୍କ ପୂର୍ବ ପୁରୁଷଙ୍କ ଜମିର ସ୍ୱାଧିକାରୀ ରୂପେ ସରକାରୀ ଭାବେ ସ୍ୱୀକୃତି ଲାଭ କରିଛନ୍ତି । ସେଥିପାଇଁ ତାଙ୍କୁ 'ମାଟିର ପିତା' ବୋଲି ସମ୍ମାନ ମିଳିଛି । ବିର୍ସା ସଦା ସର୍ବଦା କହି ବୁଲୁଥିଲେ ମନୁଷ୍ୟ ମରିଯାଇପାରେ, କିନ୍ତୁ ତା'ର ବୀରତ୍ୱ ଚିର ଅମର ହୋଇ ରହେ । ସେଥିପାଇଁ ତାଙ୍କର ଆଦର୍ଶ, ବୀରତ୍ୱ, ଆତ୍ମତ୍ୟାଗ, ଦେଶପ୍ରେମ ଓ ଆଦିବାସୀ ସମ୍ପ୍ରଦାୟ ପାଇଁ ଦେଇ ଯାଇଥିବା ବଳିଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ ।

ଗ୍ରାମ / ପୋ.ଅ.: ଖିଚିଂ
ଭାୟା : ଶୁକୁଳି, ଜିଲ୍ଲା : ମୟୂରଭଞ୍ଜ
ପିନ୍ : ୭୫୭୦୩୯

# ଗଜପତିର ସଉରା କଥିତ ଭାଷା: ଏକ ବିଚାର ବିଶ୍ଳେଷଣ

ସୁଦର୍ଶନ ରଇତ

ଭାରତର ଅନୁସୂଚିତ ଜନଜାତି ମାନଚିତ୍ରରେ ଓଡ଼ିଶାର ସ୍ଥାନ ସ୍ୱତନ୍ତ୍ର । ଓଡ଼ିଶାରେ ମୋଟ ୬୨ ପ୍ରକାର ଆଦିବାସୀ ବସବାସ କରିବାର ଜଣାଯାଏ । ସେମାନଙ୍କ ମଧ୍ୟରୁ ସଉରା ଜାତି ଅନ୍ୟତମ । ଏହି ସଉରା ଜାତି ରାଜ୍ୟର ଦକ୍ଷିଣାଞ୍ଚଳ ପୁଣି ଦକ୍ଷିଣ ପୂର୍ବର ଦୁର୍ଗମ ପାହାଡ଼ିଆ ଅଞ୍ଚଳରେ ଅଧିକ ସଂଖ୍ୟାରେ ବସବାସ କରନ୍ତି । ଓଡ଼ିଶା ରାଜ୍ୟ ବ୍ୟତୀତ ଆନ୍ଧ୍ରପ୍ରଦେଶର ପୂର୍ବାଞ୍ଚଳ ଅର୍ଥାତ୍ ଶ୍ରୀକାକୁଲମ୍ ଜିଲ୍ଲା, ବିଜୟ ନଗରମ୍ ଜିଲ୍ଲା ଓ ଗୁଣ୍ଟୁର ଜିଲ୍ଲାରେ ବାସ କରିବାର ଦେଖାଯାଏ । ଏହାଛଡ଼ା ଆସାମ ପ୍ରଦେଶରେ ମଧ୍ୟ କେତେକ ଅଞ୍ଚଳରେ ବସବାସ କରିବାର ଜଣାଯାଏ । ବିଭିନ୍ନ ଐତିହାସିକ ଏବଂ ସାମାଜିକ କାରଣରୁ ସେମାନେ ଦୁର୍ଗମ ଗିରିକନ୍ଦରରେ ପୁଣି ଢାଲୁ ଜାଗାମାନଙ୍କରେ ବସବାସ କରିଅଛନ୍ତି । ଆଧୁନିକ ସଭ୍ୟତାର ପରିଧି ବାହାରେ ପ୍ରକୃତି କୋଳରେ ସମସ୍ତ ପରିସ୍ଥିତିର ମୁକାବିଲା କରି ଅହରହ ଜୀବନ ସହ ସଂଗ୍ରାମ କରୁଥିବା ଏହି ଅମୃତର ସନ୍ତାନମାନେ ଜୀବନର ନିଷ୍ଠୁର ବାସ୍ତବତାକୁ ଅତି ସହଜ ଓ ନିର୍ବିକାର ଭାବରେ ଗ୍ରହଣ କରିନେଇ ତାଙ୍କର ନିରାଡ଼ମ୍ବର ଜୀବନ ଓ ସମସ୍ତ ଦୁଃଖ, କଷ୍ଟ, ଅଭାବ ଓ ଅନଟନ ଭିତରେ ବି ସୁଖୀ । ଏମାନେ ଜୀବନର ପ୍ରତ୍ୟେକ ଅବସରକୁ ତିଳ ତିଳ କରି ରସମୟ ଓ ଆନନ୍ଦମୟ କରିଥାନ୍ତି ।

ଓଡ଼ିଶାର ଆଦିବାସୀମାନଙ୍କ ଭାଷା ଦୃଷ୍ଟିରୁ ମୁଖ୍ୟତଃ ୩ ଗୋଟି ବିଭାଗରେ ବିଭକ୍ତ । ଯଥା– ୧. ମୁଣ୍ଡା ଭାଷା, ୨. ଦ୍ରାବିଡ଼ ଭାଷା, ୩. ଭାରତୀୟ ଆର୍ଯ୍ୟ ଭାଷା । ମୁଣ୍ଡାଭାଷାରେ କଥା କହୁଥିବା ସଂପ୍ରଦାୟ ହେଉଛନ୍ତି– ସଉରା, ସାନ୍ତାଳୀ, ହୋ, ମୁଣ୍ଡା, ଡିଡାୟୀ, ଗଦବା, ଖରିଆ ଇତ୍ୟାଦି । ଦ୍ରାବିଡ଼ ଭାଷା– କୁଇ, କୁଭି, କଣ୍ଡା, କୋୟା, ପରଜା ଇତ୍ୟାଦି । ଆର୍ଯ୍ୟଭାଷା ଗୋଷ୍ଠୀ– ବାଥୁଡ଼ି, ଭୂୟାଁ, କରମାଳୀ, ସାଦ୍ରୀ, ଭୂମିଆ, ଦେଶିଆ, ହାଲବି ଇତ୍ୟାଦି ।

ଗଜପତି ସଉରା ଭାଷାଗୋଷ୍ଠୀ (ପାରଳାଖେମୁଣ୍ଡି, ସେରଙ୍ଗ, ପୁଟ୍ଟାସିଂ–ଲାଞ୍ଜିଆ, ଇମାନୀ) (କାଶିନଗର–ସାରଡା, ମନେସର), (ରାୟଗଡ଼ା, ରାମଗିରି–କୁରାଇ) (ନୂଆଗଡ଼–ଯାଡୁ, କୁଦୁମ୍ବା) (ରା. ଉଦୟଗିରି–ରାଇକା) (ଗୋଷାଣି–କାମ୍ପୁ) (ଜିରାଙ୍ଗ–ଆର୍ସିଡ଼୍) (ଖଜୁରୀପଦା–ଟାଙ୍କଲା) (ଚନ୍ଦ୍ରଗିରି, ମୋହନା, ଅଡ଼ବା– କାନ୍‌ସିଡ଼୍ ସଉରା) ପ୍ରଭୃତି ସ୍ଥାନରେ ବସବାସ କରନ୍ତି । ସଉରା ଓ ଶବର ଗୋଟିଏ କିନ୍ତୁ ନାମ ଅନେକ । ସଉରା ସଂପ୍ରଦାୟ 'ସରା' ଭାଷା କହନ୍ତି । 'ସରା' ଶବ୍ଦଟି ସମ୍ଭବତଃ ତା'ର ପ୍ରବୃତ୍ତିକୁ ଆଧାର କରି ନାମିତ ହୋଇଥାଇପାରେ ବୋଲି ଅନେକ ପୁରୁଧା ସଉରା ପଣ୍ଡିତ ବୁଦ୍ଧିଜୀବୀମାନେ ମତପୋଷଣ କରିଥାନ୍ତି । 'ସ' ମାନେ ଲୋଚିବା/ ଲୁଚାଇବା, 'ରା' ଗଛ 'ଆରା'ରୁ 'ରା'କୁ ପ୍ରାଧାନ୍ୟ ଦିଆଯାଇଛି । ଏହି ଗୋଷ୍ଠୀ ବିଶେଷ ଆବହମାନ କାଳରୁ ନିଜକୁ ଘଞ୍ଚ ଅରଣ୍ୟର ଗଛ କୋରଡ଼ରେ ଆଶ୍ରୟ ନେଇ ରହୁଥିଲା । ପ୍ରଥମେ ଗଛ କୋରଡ଼ ହିଁ ତା' ପାଇଁ ଉପଯୁକ୍ତ ସ୍ଥାନ ଥିଲା ନିଜକୁ ସୁରକ୍ଷା ଦେବା ପାଇଁ । କାରଣ ରାଜାମାନଙ୍କ ଶାସନ ବ୍ୟବସ୍ଥା ସେମାନେ ଭୟ କରୁଥିଲେ । ଯେଉଁ ଜାତି ଦିନେ ନିଜକୁ ଗଛ କୋରଡ଼ରେ / ଜଙ୍ଗଲରେ ଲୁଚୁଥିଲା / ଲୁଚାଇଥିଲା, ସେହି ଆଦିମ ଜାତିର ନାମ ହେଲା 'ସରା' । ଆଜି ଏହି 'ସରା' ଜାତି / ଗୋଷ୍ଠୀ

ସଉରା ଭାବରେ ଉଚ୍ଚାରଣ କରି ସମାଜରେ ପରିଚୟ କରାଇ ଦେଉଛି । 'ସରା'ରୁ ସଉରା କିଭଳି ହେଲା ଏହା ଏକ ପ୍ରଶ୍ନବାଚୀ । ୧୯୦୨ ମସିହାରେ କାନାଡ଼ା ଦେଶର ପ୍ରଥମ ମିଶନାରୀ ସାହେବ Dr. J.A. Glendning ଜଳପଥ ଦ୍ୱାରା ଦୀର୍ଘଦିନ ଧରି ଅତିକ୍ରମ ପରେ ଏହି ଦୁର୍ଗମ ଗିରି କନ୍ଦରର ବନବାସୀଙ୍କ ନିକଟରେ ପଦାର୍ପଣ କରିଥିଲେ । ପ୍ରଥମେ ପାରଳାଖେମୁଣ୍ଡିଠାରେ ବସତି ସ୍ଥାପନ କରିଥିଲେ । ସେହି ସମୟରେ କୌଣସି ଗ୍ରାମକୁ ରାସ୍ତାଘାଟର ସୁବିଧା ନଥିଲା ଏବଂ ଯାନବାହନର ମଧ୍ୟ ସୁବିଧା ନଥିଲା । ତେଣୁ ସେ ପାରଳାଖେମୁଣ୍ଡିରୁ ଘୋଡ଼ାରେ ବସି ବିଭିନ୍ନ ଅଞ୍ଚଳକୁ ଭ୍ରମଣ କରୁଥିଲେ । ମୁଖ୍ୟତଃ ସେରଙ୍ଗ, ଗୁମ୍ମା, ନୂଆଗଡ଼, ଖଜୁରୀପଦା, ଆର୍. ଉଦୟଗିରି ଅଞ୍ଚଳକୁ ଘୋଡ଼ାରେ ବସି ବୁଲି ବୁଲି ସଉରା ଲୋକଙ୍କ ପାଖରେ ପହଞ୍ଚିଲେ । ସେମାନଙ୍କ ସହିତ କଥାବାର୍ତ୍ତା କରି ବନ୍ଧୁତା ସ୍ଥାପନ କରିଥିଲେ । ପ୍ରଥମ କରି ରାଣୀପେଣ୍ଠ ଗ୍ରାମସ୍ଥିତ 'ପାପାୟା' ଓ 'ଗୁମାନ୍ନା' ନାମକ ଦୁଇ କାମ୍ପ ସଉରା ଗ୍ଲେଣ୍ଡ୍‌ନିଙ୍କ ସଂସ୍ପର୍ଶରେ ଆସିଥିଲେ । ସେମାନଙ୍କଠାରୁ ସଉରା ଭାଷା ଶିଖିଥିଲେ, ପୁଣି ଗ୍ଲେଣ୍ଡ୍‌ନିଙ୍କଠାରୁ ମିଶନାରୀ ଭାଷାକୁ ଆୟତ୍ତ କରି ପାରିଥିଲେ । ସେହି ସମୟଠାରୁ ସେ ସେରଙ୍ଗସ୍ଥିତ (ଡ୍ରଂସେଂମାର୍) ମୟୂରଖଳା ନାମକ ସ୍ଥାନରେ ବସତି ନିର୍ମାଣ କରି ରହିଥିଲେ । ବର୍ତ୍ତମାନ ତାହା Glendning Bunglow ନାମରେ ପରିଚିତ । ସେଠାରେ ରହି Glendning ସଉରା ଭାଷା ଧ୍ୱନି Roman Alphabet (A, E, I, O,U)କୁ ସଉରା ଭାଷାରେ ଶିକ୍ଷା ଦେଇଥିଲେ । Dr. Glendning 'ସରା' ଉଚ୍ଚାରଣକୁ 'ସଉରା' ଭାବରେ ଉଚ୍ଚାରଣ କଲେ । ଆଜି ମଧ୍ୟ 'ସରା'କୁ 'ସଉରା' ଭାବରେ ପରିଚିତ କରାଯାଏ ।

କଥିତ ଭାଷାକୁ ଆଲୋଚନା କଲାବେଳେ ତାହାକୁ ଲିପି ସାହାଯ୍ୟରେ ରୂପଦେବା ଆବଶ୍ୟକ ହୁଏ । ପ୍ରତ୍ୟେକ ଧ୍ୱନିକୁ ରୂପଦେବା ପାଇଁ ଓ ସ୍ୱତନ୍ତ୍ର ସଂକେତ ବା ଲିପି ବ୍ୟବହାର କରାଯାଏ । କିନ୍ତୁ ଏହି ଜିଲ୍ଲାର ସଉରା କଥିତ ଭାଷା ସ୍ୱତନ୍ତ୍ର ଲିପି ନାହିଁ । ତେଣୁ ମୁଁ ଏହାକୁ International Phonetic Sound (IPS) ରୋମାନ୍ ଲିପି ଦ୍ୱାରା ଉଲ୍ଲେଖ କରିଛି । ନିକଟସ୍ଥ ରାୟଗଡ଼ ଜିଲ୍ଲାର ମାଡ଼ିର ସଉରା ଭାଷା ଗୁରୁ ମୁଙ୍ଗେଇ ଗମାଙ୍ଗ ଯେଉଁ ଲିପି ସୃଷ୍ଟି କଲେ 'ସୋରାଙ୍ ସୋମ୍‌ପେଙ' ବା ସଉରା ଅକ୍ଷରମାଳା ୨୪ ଗୋଟି ଏବଂ ୯ଟି ସଂଖ୍ୟା ରହିଛି । ୨୪ ଗୋଟି ଦେବତାଙ୍କ ନାମାନୁସାରେ ବର୍ତ୍ତମାନ ମଧ୍ୟ ମରିଛଗୁଡ଼ା ଗ୍ରାମରେ 'ମାତର୍‌ବନ୍‌ମ୍' ପାହାଡ଼ ନିକଟରେ ପୂଜା ପାଉଛି । ସୋରାଙ୍ ସୋମ୍‌ପେଙରେ ସ୍ୱରବର୍ଣ୍ଣ ୬ଟି ଏବଂ ବ୍ୟଞ୍ଜନବର୍ଣ୍ଣ ୧୮ଗୋଟି ରହିଛି । ସ୍ୱରବର୍ଣ୍ଣ Ai-ଐ ଏବଂ ବ୍ୟଞ୍ଜନ ବର୍ଣ୍ଣ C–ଛ, Nya–ଞ ଏହି ତିନୋଟି ବର୍ଣ୍ଣ ଅଧିକ ଦେଖିବାକୁ ମିଳେ । କିନ୍ତୁ ଗଜପତି ସଉରା କଥିତ ଭାଷା ଏହିପରି ବର୍ଣ୍ଣ ବା ଅକ୍ଷର ଧ୍ୱନି ସଂପର୍କରେ ମିଳେନାହିଁ ।

ସଉରା କଥିତ ଭାଷା ସମ୍ବନ୍ଧରେ ନିମ୍ନରେ କିୟତ୍‌ମାତ୍ର ଆଲୋଚନା କରାଯାଇଛି ।

**ସଉରା ଭାଷାର ଧ୍ୱନି ପ୍ରକ୍ରିୟା ବିଚାର**

ସଉରା ଭାଷାର ନିମ୍ନଲିଖିତ ସ୍ୱରଧ୍ୱନି (Vowel) ଏବଂ ବ୍ୟଞ୍ଜନ ଧ୍ୱନି (Consonant)ପରିଲକ୍ଷିତ ହୁଏ ।

**ସ୍ୱରଧ୍ୱନି (Vowel)**

ସଉରା ଭାଷାରେ ମାତ୍ର ପାଞ୍ଚଗୋଟି ସ୍ୱରଧ୍ୱନି ଦେଖାଯାଏ । ସେଗୁଡ଼ିକ ଧ୍ୱନି ଶବ୍ଦର ଆଦ୍ୟ, ମଧ୍ୟ ଏବଂ ଅନ୍ତରେ ବ୍ୟବହୃତ ହେବା ପରିଲକ୍ଷିତ ହୁଏ ।

o–ଅ, a–ଆ, e–ଏ, i–ଇ, u–ଉ

**ବ୍ୟଞ୍ଜନ ଧ୍ୱନି** (Consonant)

ମାତ୍ର ୧୬ ଗୋଟି ବ୍ୟଞ୍ଜନ ଧ୍ୱନି ଏହି ଭାଷାରେ ଦୃଷ୍ଟିଗୋଚର ହୁଏ ।

b–ବ୍, d–ଡ୍, g–ଗ୍, j–ଜ୍, k–କ୍, l–ଲ୍, m–ମ୍, n–ନ୍, p–ପ୍, r–ର୍, s–ସ୍, t–ତ୍, y–ୟ୍, ŋ–ଙ/ଙ୍ଗ, h–ଙ୍ଘ, w –ୱ

### ଅଧିପରିଚିନ୍ନ ସ୍ୱନିମ

ଦୀର୍ଘତା /–/ ଚିହ୍ନିତ (ଉପରେ) ବଳଘାତ– /,/, ସଂହିତ /–/ ଚିହ୍ନ (ମଝିରେ)

### ସ୍ୱରଧ୍ୱନିମାନଙ୍କ ବର୍ଗୀକରଣ:

/o/–ଅ – ଏହା ଏକ ପଶ୍ଚାତ୍ ବିବୃତ ସ୍ୱର ଶବ୍ଦର ଆଦ୍ୟ ମଧ୍ୟ ଅନ୍ତ୍ୟର ଏହା ଅବସ୍ଥିତ ।
ordai (ଅଡ଼ାଇ)– କୋଳଥ, saro'o(ସାର୍‌ଅ)– ଧାନ, o'on (ଅଅନ୍)– ପୁଅ

/a/–ଆ – ଏହା ଏକ ଅଗ୍ରବିବୃତ ସ୍ୱର
argalda (ଆର୍‌ଗଲ୍‌ଡା)– ତୃଷା, anib (ଆନିବ୍)– ଗଛ, arika (ଆରିକା)– ନାହିଁ

/i/–ଇ – ଏହା ଏକ ଦୀର୍ଘ ଅଗ୍ରବିକୃତ ସ୍ୱରଧ୍ୱନିପଦ (word)ର ଆଦ୍ୟ ମଧ୍ୟ ଓ ଅନ୍ତ୍ୟରେ ଏହାର ସ୍ଥିତି ଦେଖାଯାଏ । ଯଥା–
idol (ଇଡଲ)– ଲେଖା, dia (ଡିଆ)– ଅଣ୍ଡା, I, i-i (ଇ–ଇ)– ଉକୁଣି ।

/e/– ଏ – ଏହା ଏକ ଅବୃତ୍ତାକାର ସ୍ୱର । ଏହାର ସ୍ଥିତି ଶବ୍ଦର ଆଦ୍ୟ ମଧ୍ୟ ଏବଂ ଅନ୍ତ୍ୟରେ ଦେଖାଯାଏ ।
endruku (ଏଣ୍ଡ୍ରୋକୁ)– ଅଂଶିଦାର, aneŋ (ଆନେଙ୍)– ଅନ୍ତ୍ୟ, eŋale (ଏଙ୍ଗାଲେ)–କେମିତି

/u/– ଉ – ଏହା ଏକ ଅଗ୍ର ବିବୃତସ୍ୱର ପଦର ଆଦ୍ୟ ମଧ୍ୟ ଅନ୍ତ୍ୟରେ ଏହାର ସ୍ଥିତି । ଯଥା–
umeŋ (ଉମେଙ୍ଗ୍)– ଚଞ୍ଚଳ, orub (ଅରୁବ୍)–ସନ୍ଧ୍ୟା, u'-u (ଉ'–ଉ) –ତୁଟି ।

### ବ୍ୟଞ୍ଜନ ଧ୍ୱନିମାନଙ୍କର ବର୍ଗୀକରଣ

ସଉରା ଭାଷାରେ ମାତ୍ର ୧୬ଟି ବ୍ୟଞ୍ଜନ ଧ୍ୱନି ଦେଖାଯାଏ । ସେଥିମଧ୍ୟରୁ କେତେ ଧ୍ୱନି ଶବ୍ଦର ଆଦ୍ୟ ମଧ୍ୟ ଅନ୍ତ୍ୟରେ ଦେଖାଗଲାବେଳେ ଅନ୍ୟ କେତେକ ଧ୍ୱନି କେବଳ ଶବ୍ଦର ଆଦ୍ୟ ଏବଂ ମଧ୍ୟ ସ୍ଥିତିରେ ପରିଲକ୍ଷିତ ହୋଇଥାଆନ୍ତି । ଅନ୍ୟ କେତେକ କେବଳ ଶବ୍ଦ ମଧ୍ୟରୁ ହିଁ ବ୍ୟବହୃତ ହୋଇଥାନ୍ତି । ପୁନଶ୍ଚ ଅନ୍ୟ କେତେକ ଧ୍ୱନି ଶବ୍ଦର ମଧ୍ୟ ଏବଂ ଅନ୍ତ୍ୟରେ ଦେଖାଯାଇଥାନ୍ତି । ନିମ୍ନରେ ସେଗୁଡ଼ିକର ବିଶ୍ଳେଷଣ ଶବ୍ଦଗୁଡ଼ିକର ଦୃଷ୍ଟାନ୍ତ ମାଧ୍ୟମରେ ଦର୍ଶାଇ ଦିଆଯାଇଛି ।

/b/ – ବ – ଓଷ୍ଠ୍ୟ ଅଘୋଷ ସ୍ପର୍ଶ ଧ୍ୱନି
bob(ବଅବ୍)– ମୁଣ୍ଡ, basar (ବାସାର୍)– ଗୋଧି, buab (ବୁଆବ୍)– ବିଲୁଆ

/d/ – ଡ – ସଘୋଷ ମୂର୍ଦ୍ଧନ୍ୟ ସ୍ପର୍ଶ ଧ୍ୱନି
da'a (ଡାଆ)– ପାଣି, tandrol (ତାଣ୍ଡ୍ରଲ୍)– ଅଳଙ୍କାର

/g/ – ଗ – ଏହା ଏକ କଣ୍ଠ୍ୟ ଘୋଷ ସ୍ପର୍ଶ ଧ୍ୱନି
ganugay (ଗାନୁଗାୟ)– ଖମ୍ବଆଳୁ, ganur(ଗାନୁର୍)– ବର୍ଷା

/j/ – ଜ – ଏହା ଏକ ପଶ୍ଚଦନ୍ତ୍ୟ ସଘୋଷ ସ୍ପର୍ଶ ସଂଘର୍ଷୀ ଧ୍ୱନି ଅଟେ । ପଦର ଆଦ୍ୟ ଏବଂ ମଧ୍ୟରେ ଏହାର ଅବସ୍ଥିତି ।
jolda(ଜଲ୍‌ଡା)– ମିଥ୍ୟା, jujung (ଜୁଜୁଙ୍ଗ୍)– ଅଜା

/k/ – କ – ଏହା ଏକ କଣ୍ଠ୍ୟ ଅଘୋଷ ସ୍ପର୍ଶ ଧ୍ୱନି
karama(କାରାମା)– କର୍ମ, dukri (ଡୁକ୍ରି)– ସ୍ତ୍ରୀ

/l/ – ଲ – ଏହା ଏକ ପାର୍ଶ୍ୱିକ ଧ୍ୱନି
labom (ଲାବମ୍)– ଲାଭ, jamal (ଜାମଲ)– ବିଜ

/m/ – ମ – ଓଷ୍ଠ୍ୟ ସଘୋଷ ନାସିକ୍ୟ ଧ୍ୱନି
moyuŋ (ମୟୁଙ୍ଗ୍)– ସୂର୍ଯ୍ୟପରାଗ, mamar (ମାମାର୍)– ବିଛା
ଆଦ୍ୟ ମଧ୍ୟ ଅନ୍ତ୍ୟରେ ଏହି ଧ୍ୱନିର ସ୍ଥିତି ଦେଖାଯାଏ ।

/n/ – ନ – ଏହା କଣ୍ଠ୍ୟ ନାସିକ୍ୟ ବ୍ୟଞ୍ଜନ ଧ୍ୱନି ।
nosto (ନସତ୍)– ନଷ୍ଟ, anib (ଆନିବ୍)– ଗଛ, ja'adon (ଜାଆଡନ୍)– ସାପ
ଆଦ୍ୟ, ମଧ୍ୟ ଅନ୍ତ୍ୟରେ ଏହାର ସ୍ଥିତି ।

/p/ – ପ – ଅଘୋଷ ଓଷ୍ଠ୍ୟ ସ୍ପର୍ଶଧ୍ୱନି । ପଦର ଆଦ୍ୟ ମଧ୍ୟ ଅନ୍ତ୍ୟରେ ଏହାର ସ୍ଥିତି ।
pander (ପାଣ୍ଡେର୍)– ଠେକୁଆ, kapara (କାପାରା)– ହଂସ, bandrap (ବାଣ୍ଡ୍ରାପ୍)–କ୍ରୋଧ

/r/ – ର – ଏହା କମ୍ପନ ଲୋଡ଼ିତ ଧ୍ୱନି ।
ranuku (ରାନୁକୁ)– ସମାଜ, (ମର୍ମରି)– କୁହୁଡ଼ି, mamar (ମାମାର୍)–କଳିକତରା

/s/ – ସ – ଅଘୋଷ ସଂଘର୍ଷୀ ଧ୍ୱନି ।
sanayem (ସାନାୟିମ୍)– ସାହାଯ୍ୟ, sandi (ସାଣ୍ଡି)– ଖଟ, assi (ଆସି)– ହାତ

/t/ – ତ – ଏହା ଏକ ଅଘୋଷ ଦନ୍ତ୍ୟ ସ୍ପର୍ଶ ଧ୍ୱନି । ଏହି ଧ୍ୱନି ପଦର ଆଦ୍ୟ, ମଧ୍ୟ ଅନ୍ତ୍ୟରେ ଏହାର ସ୍ଥିତି । ଯଥା–
tana'ar (ତାନାଆର୍)– ଆଲୋକିତ

/y/– ୟ – ଏହି ଧ୍ୱନି ସଘୋଷ ଅବୃତାକାର ତାଲବ୍ୟ ଅର୍ଦ୍ଧସ୍ୱର ଅଟେ । ପଦର ଆଦ୍ୟ ମଧ୍ୟ ଅନ୍ତ୍ୟ ସ୍ଥଳରେ ଏହା ଦେଖାଯାଏ ।
yermeg (ୟାର୍ମେଙ୍)– ପୁନଃଜନ୍ମ, ayo (ଆୟ)– ମାଛ, andaray (ଆଣ୍ଡାରାଇ)– ବାଇଗଣ

// – ଙ/ଙ୍ଗ – ଏହା ନାସିକ୍ୟ କଣ୍ଠ୍ୟ ଧ୍ୱନି ।
arte (ଙର୍ତେ)– ପ୍ରତିଧ୍ୱନି, rameg (ରାମେଙ୍ଗ୍)– ବିଲେଇ, gomaoŋg (ଗମାଙ୍ଗ)– ଧନୀ

/h/ – ଙ୍ଁ – ଏହା ସଂଘର୍ଷୀ କଣ୍ଠ୍ୟ ନାସିକ ଧ୍ୱନି ।
halaŋg (ଙ୍ଁାଲାଙ୍ଗ୍)– ଜନ୍ଦା, hanagod (ଙ୍ଁାନାଗଡ଼୍)– ଯାତ୍ରା

/w/ – ୱ – ଏହି ଧ୍ୱନି ସଘୋଷ ଓଷ୍ଠ୍ୟ ଅର୍ଦ୍ଧସ୍ୱର କୁହାଯାଇପାରେ । ପଦର ଆଦ୍ୟ ଏବଂ ମଧ୍ୟରେ ଏହାର ସ୍ଥିତି ।
wab (ୱାବ୍)– ଶାଗ, sarowan (ସାରୱାନ୍)– ବିଲ

ବ୍ୟଞ୍ଜନ ଯୁକ୍ତ ଧ୍ୱନିଗୁଡ଼ିକ ପଦର ଆଦ୍ୟରେ ଦେଖାଯାନ୍ତି । ପଦର ଶେଷରେ ଯୁକ୍ତ ପ୍ରାୟତଃ ଦେଖାଯାଏ । ଏହା ବ୍ୟତୀତ ଦୁଇଟି ଧ୍ୱନି ସଂକଳିତ ଯୁକ୍ତଧ୍ୱନି ପଦର ଆଦ୍ୟ ଏବଂ ମଧ ସ୍ଥାନରେ ହିଁ ଦେଖାଯାଏ ଏବଂ ତିନି ଅକ୍ଷର ସଂକଳିତ ଯୁକ୍ତଧ୍ୱନି ଶବ୍ଦର ମଧ୍ୟ ସ୍ଥିତିରେ ହିଁ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ–

ଆଦ୍ୟଯୁକ୍ତ ଧ୍ୱନି (inctial clusters)
Knalkal (କାନାଲ୍କଲ୍)– ଅସୁବିଧା, kna (କ୍ନା)– ବାଘ
ମଧ୍ୟଯୁକ୍ତ ଧ୍ୱନି (inctial Clusters)
nk-runku(ରୁଙ୍କୁ)– ଚାଉଳ, nn-tanimnna (ତାନିମ୍ନା)– ବିକ୍ରୟ, rs-sursu(ସୁର୍ଷୁ)– ସୋରିଷ
ତିନି ବ୍ୟଞ୍ଜନ ବିଶିଷ୍ଟ ଯୁକ୍ତଧ୍ୱନି (Cluster of three consonant)
ndr-sundrui (ସୁଣ୍ଡୁଇ)– ଝୁଡ଼ି, mbr-ombruta (ଅମ୍ବୁର୍ତ)– ଅମୃତଭଣ୍ଡା, rmm-yermmeg (ୟାର୍ମେଙ୍ଗ୍)– ପୁନଃଜନ୍ମ

**ଊଣାଅଧିକା ସଉରା ଗଣିତ ପରିମାଣ**

bo-tanipur(ବ–ତାନିପୋର୍)– ଦୁଇଟି ଆଙ୍ଗୁଠିରେ ଯେତିକି ଆସିବ ।
bo-sanidrub (ବ–ସାନିଡ୍ରୁବ୍)– ତିନି ଆଙ୍ଗୁଠିରେ ଯେତିକି ଆସିବ ।

bo-ganudrab (ବ–ଗାନୁଡ୍‌ରାବ୍)– ଚାରୋଟି ଆଙ୍ଗୁଠିରେ ଯେତିକି ଆସିବ ।
bo-loŋgsi (ବ–ଲଙ୍ଗସି) – ଦୁଷେ
bo-anadub (ବ–ଆନାଡୁବ୍)– ଆଞ୍ଜୁଳାଏ
bo-tanandam(ବ–ତାନାଣ୍ଡାମ୍)– ପ୍ରାୟ ୫ କେ.ଜି.
bo-ranunjag (ବ–ରାନୁନ୍‌ଜାଙ୍ଗ୍)– ପ୍ରାୟ ୧୦ କେ.ଜି.
bo-tiybab(ବ–ତିଙ୍ଗ୍‌ବାବ୍)– ଗୋଟିଏ ମୁଣ୍ଡ ବୋଜ ୨୫/୩୦ କେ.ଜି
bo-birdar (ବ–ବିଡ଼ାର)– ଏକ ଭାର ୩୫/୪୦ କେ.ଜି.

**ଜିନିଷର ମାପ ଓ ପରିମାଣ:**

b-gida (ବ–ଗିଡା)– ୧ ଗିଧା ପ୍ରାୟ ୧୨୫ ଗ୍ରାମ୍
b-sulla (ବ–ସୁଲ୍ଲା)– ୧ ସୁଲ୍ଲା ପ୍ରାୟ ୨୦୦ଗ୍ରାମ୍
bagusulla (ବାଗୁସୁଲ୍ଲା)– ୧ ବୁଡ଼ା ପ୍ରାୟ ୫୦୦ ଗ୍ରାମ୍
bagubuda (ବାଗୁବୁଡ଼ା)– ୧ ଅଡ଼ା ପ୍ରାୟ ୧୦୦୦ ଗ୍ରାମ୍ ୧ କେ.ଜି.
unjiada (ଉନ୍‌ଜିଆଡ଼ା)– ୧ ମାଣ ୪୦୦୦ ଗ୍ରାମ୍
ଏହା ବଡ଼ଗଡ଼ ମାଣରେ ୪୦୦୦ ଗ୍ରାମ୍ ହୁଏ କିନ୍ତୁ ଗଜପତି, ରାୟଗଡ଼ ମାଣ ତାହାଠାରୁ ଊଣା ।
ଗଜପତି ମାଣ– ୩୨୦୦ ଗ୍ରାମରେ ୧ ମାଣ
ରାୟଗଡ଼ା– ୩୦୦୦ ଗ୍ରାମକୁ ୧ ମାଣ
bokurdi madih (ବ–କୁଡ଼ି ମାଡ଼ିଞ୍ଛ) / bo-puti (ବ–ପୁତି)– ୨୦ ମାଣରେ ୧ ପୋଟି
bokurdi puti lian bogordisa (ବକୁଡ଼ି ପୁତିଲିଙନ୍ ବ ଗଡ଼ିସା/ ବତାଙ୍ଗ୍ ଜାର୍)– ୩୦ ପୋଟିରେ ୧ ଗଡ଼ିଶା

**ତରଳ ମାପ ଓ ଅଣମାପକ**

bo-go-ol (ବ–ଗ–ଅଲ୍) – ପ୍ରାୟ ୧୦୦ ମିଲିଗ୍ରାମ୍
bo-ku'u (ବ–କୁଉ) – ପ୍ରାୟ ୫୦୦ ମିଲିଗ୍ରାମ୍
bo-mayari (ବ–ମାୟାରି)– ପ୍ରାୟ ୧ ଲିଟର
bo-kurdata (ବ–କୁଡ଼ାତା)– ପ୍ରାୟ ୮/୧୦ ଲିଟର୍
bo-garinda (ବ–ଗାରିଣ୍ଡା)– ପ୍ରାୟ ୨୦/୨୫ ଲିଟର୍
bo-darinbasey (ବ–ଡାରିଞ୍ଛ ମ୍ବାସେଙ୍ଗ୍)– ପ୍ରାୟ ୪୦/୫୦ ଲିଟର

**ଦୂରତାର ମାପ ଓ ପରିମାଣ**

bo-aŋguli (ବ–ଆଙ୍ଗୁଲି)– ୧ ଅଙ୍ଗୁଳି
bo-dalsi/ bo-atalsi (ବ–ଡାଲ୍‌ସି / ବ–ଆତାଲ୍‌ସି) – ଏକ ପାପୁଲି
bo-pardsi (ବ–ପାଡ଼୍‌ସି)– ଏକ ତାଙ୍କଡ଼ / ଚାଖଣ୍ଡେ
bo-kumsi (ବ–କୁମ୍‌ସି) – ଏକ ମୁଠୁଣି

bo-santi (ବ– ସାନ୍ତି) – ଏକ ହାତ
bo-a-am (ବ–ଆମ୍) – ଏକ ଶର / ୨୦୦/୩୦୦ ମିଟର
bo-ataljiŋg (ବ–ଆତାଲଜିଙ୍ଗ୍)– ଏକ ପାଦ
bo-panajiŋg (ବ–ପାନାଜିଙ୍ଗ୍)– ଗୋଟି ପାଉଣ୍ଡ / ଗୋଟିଏ ପାଦ
bo-tanumpad (ବ–ତାନୁମ୍ପାଡ୍)– ଗୋଟିଏ ପାଉଣ୍ଡରୁ ଟିକିଏ ଅଧିକ
bo-birdimudgod (ବ–ବିଡ଼ିମୁଡଗଡ)–ଗୋଟିଏ ବିଡ଼ି ପୋଡ଼ା ଯେତିକି ଦୂରଯିବ ପ୍ରାୟ ୫୦୦ ମିଟର
bo-tanjinagod (ବ– ତାଞ୍ଜିନାଗଡ୍)– ଦାନ୍ତ ଘଷି ଯେତିକି ଦୂରଯିବ ପ୍ରାୟ ୧୦୦୦ ମିଟର
bo-rdualgod (ବ–ଡୁଆଲ୍‌ଗଡ୍)– କାମକୁ ଯିବା ବେଳର ରାସ୍ତା ପ୍ରାୟ ୨/୩ କି.ମି.
bo-uligod (ବ–ଉଲିଗଡ୍)– ଏକ ଓଳିର ବାଟ ପ୍ରାୟ ୧୫/୨୦ କି.ମି.
bo-dimagod (ବ–ଡିନାଗଡ୍)– ଏକ ଦିନର ରାସ୍ତା ପ୍ରାୟ ୪୦/୫୦ କି.ମି.

**ଅଣମାପକ ସମୟର ଗଣନା**

bo-raniyabmad (ବ–ରାନିୟାବ୍‌ମାଡ଼୍) – ଆଖି ପିଛୁଳା
bo-gordika (ବ–ଗଡ଼ିକା) – ଅଳ୍ପ ସମୟ ପ୍ରାୟ ୧/୨ ମିନିଟ୍
bo-sonid (ବ–ସନ୍‌ନିଡ୍) – ଅଳ୍ପ ସମୟ ୧୦/୧୫ ମିନିଟ୍
bo-ganarudih (ବ–ଗାଙ୍ଗାରୁଙ୍ଗଡିଞ୍ଜ) – ଗଙ୍ଗା ଚାଉଳ ଯେତିକି ସମୟରେ ସିଝେ
bo-kamburundih (ବ–କାମ୍ବୁରୁଙ୍ଗଡିଞ୍ଜ)– ଜନା ଚାଉଳ ଯେତିକି ସମୟରେ ସିଝେ ପ୍ରାୟ ୧ ଘଣ୍ଟା
bo-rogadin (ବ–ରଗଡିଞ୍ଜ) – କାହୁଲ ଯେତିକି ସମୟରେ ସିଝେ

**ଏକ ଦିନରେ ସମୟର ଗଣନା**

miylan kansimulan (ମିୟଲାଙ୍ଗ୍ କାନ୍‌ସିମୁଲାନ୍) – କୁକୁଡ଼ା ଡାକିବା ସମୟ ରାତି ୩ଟା
barlaŋg (ବାର୍‌ଲଙ୍) – ଦ୍ୱିତୀୟଥର କୁକୁଡ଼ା ଡାକିବା ସମୟ ରାତି ୪ଟା
erlan (ଏର୍‌ଲାଙ୍ଗ୍)– ତୃତୀୟଥର କୁକୁଡ଼ା ଡାକିବା ସମୟ ସକାଳ ୫ଟା
sukulsakal (ସୁକୁଲ୍ ସାକାଲ୍)– ମାଛି ମାଛି ଅନ୍ଧାର ସକାଳ ୫.୩୦ ମିନିଟ୍
asa-aran / atirsadan (ଆସାଆରାନ୍ / ଆତିର୍ ସାଡ଼ାନ୍)– ସକାଳ ୬ଟା
siryuŋgan (ସିର୍‌ୟୁଙାନ୍) – ସୂର୍ଯ୍ୟ ଉଦୟ ସମୟ ସକାଳ ୭ ଟା
ardual bilan (ଆଡୁଆଲ୍‌ବିଲାନ୍)– କାମକୁ ଯିବା ସମୟ – ୮ ଟା
tanjina oran (ତାଞ୍ଜିନା ଅରାନ୍)– ଚାଷ ସମୟରେ ଦାନ୍ତଘଷି ଖାଇବା ସମୟ – ୯ଟା
sadoran (ସାଡରାନ୍) – ହଳ ଫିଟାଇବା ସମୟ –୧୦ଟା
aroŋgubon (ଆରଙ୍ଗଗୁବାନ୍)– ଗାଈ ମଢା ନେବା ସମୟ– ୧୧ଟା
tinbabyuan (ତିଙ୍ଗ୍‌ବାବ୍‌ୟୁଙାନ୍)– ବେଳ ମୁଣ୍ଡ ଉପରେ ଥିବା ସମୟ– ୧୨ଟା
sardiyugan (ସାଡ଼ିୟୁଙାନ୍)– ବେଳ ଗଡ଼ିବା ସମୟ – ୧ଟା

ardluburan(ଆଡ଼ଲୁ ବୁରାନ୍)– ପାହାଡ଼ ପର୍ବତ ଟିକେ ଛାୟା ପଡ଼ିବା ସମୟ– ୨ଟା

imani sadluman (ଇମାନି ସାଡ଼ଲୁମ୍)– ମାଲୁଆ ସଉରା କାମ ଛାଡ଼ିବା ସମୟ– ୩ଟା

sadluman (ସାଡ଼ଲୁମାନ୍)– କାମ ଛାଡ଼ିବା ସମୟ– ୪ ଟା

amgantag (ଆମଗାନ୍‌ତାଙ୍ଗ୍)– ମନ୍ଦା ଆଣିବା ସମୟ– ୫ଟା

gannyugan (ଗାନ୍ନାୟୁଙ୍ଗାନ୍)– ବେଳ ବୁଡ଼ିବା ସମୟ– ୬ ଟା

gagana bilan (ଗାଗାନ୍ ବିଲାନ୍)– ଖାଇବା ସମୟ– ୭ଟା

dimonabilan (ଡିମନ୍‌ନାବିଲାନ୍)– ଶୋଇବା ସମୟ– ୮ଟା

miydum togalan (ମିୟଡୁମ୍ ତଗାଲାନ୍)– ପ୍ରଥମ ପ୍ରହର– ୯ଟା

bardum togalan(ବାର୍‌ଡୁମ୍ ତଗାଲନ୍)– ଦ୍ୱିତୀୟ ପ୍ରହର ୧୦ଟା ରୁ ୧୨ଟା

erdum togalan (ଏର୍‌ଡୁମ୍ ତଗାଲାନ୍)– ତୃତୀୟ ପ୍ରହର ରାତି ୧ଟା ରୁ ୩ ଟା

**ପୁରାତନ ମାସର ଗଣନା ୧୯୭୦ ପୂର୍ବେ:**

୧. gadsigai / gadlamgai (ଗାଡସିଡ଼୍‌ଗାଇ / ଗାଡ଼୍‌ଲାମ୍‌ଗାଇ)– ମାଣ୍ଡିଆକଟ ମାସ – ଜାନୁଆରୀ

୨. rusangai (ରୁସାନ୍‌ଗାଇ) – କାନ୍ଦୁଲତୁଳା ମାସ – ଫେବୃଆରୀ

୩. higbagai (ଛିଁବା ଗାଇ) – ମହୁଲଗୋଟା ମାସ – ମାର୍ଚ୍ଚ

୪. dulbagai (ଡୁଲବା ଗାଇ)– ଝୁର୍‌ମା କରିବା ମାସ – ଅପ୍ରେଲ

୫. lologai (ଲଲଗାଇ)– ଗୁବଳା କରିବା ମାସ– ମେ

୬. puyjigai (ପୁୟଜିଙ୍ଗ୍‌ଗାଇ)– ଗୁଛା କଡ଼ା ମାସ– ଜୁନ୍

୭. paorgai (ପାଅର୍‌ଗାଇ) – ଚାଷ ଆରମ୍ଭର ମାସ – ଜୁଲାଇ

୮. gusargai (ଗୁସାର୍‌ଗାଇ)– ଧାନରୁଆ ମାସ – ଅଗଷ୍ଟ

୯. saidigai / Tisargai (ସାଇଡ଼ିଙ୍ଗିଁଗାଇ / ତିସର୍‌ଗାଇ)– କାଙ୍ଗୁ ଖୁଣ୍ଟ ମାସ – ସେପ୍ଟେମ୍ବର

୧୦. gaigaidulgay (ଗାଇଗାଇ ଡୁଲଗାୟ୍)– କନ୍ଦା ଖୋଳି ଖାଇବା ସମୟ– ଅକ୍ଟୋବର

୧୧. arasargai (ଆରାସାର୍‌ଗାଇ)– ଧାନ ଫୁଲର ମାସ – ନଭେମ୍ବର

୧୨. gadgadgai (ଗାଡ଼୍ ଗାଡ଼୍ ଗାଇ)– ଧାନକଟା ମାସ– ଡିସେମ୍ବର

ରଙ୍ଗ (ରଅଙ୍ଗ୍)

je-e (ଜେ.ଏ) – ଲାଲ

yaga (ୟାଗା) – କଳା

ta-ar / palu (ତାଆର୍ / ପାଲୁ) – ଧଳା

kului (କୁଲୁଇ) – ଶାଗୁଆ

sansag (ସାଙ୍ଗ୍ ସାଙ୍ଗ୍)– ହଳଦିଆ
je-edaij (ଜେ– ଏଡାଇଜ୍)– ବାଇଗଣିଆ
pursulkardu (ପୁର୍ସିଲ୍କାର୍ଡୁ) – ପାଣ୍ଡୁବର୍ଣ୍ଣ
rumsag / je-esan (ରୁମ୍ସାଙ୍ଗ୍ / ଜେ–ଏ ସାଙ୍ଗ୍)– ଗାଢ଼ ହଳଦିଆ
jeman (ଜେମାଙ୍)– ନାରଙ୍ଗି
erdembod (ଏଡ଼େମ୍ବଡ) – ମାଟିଆ ବର୍ଣ୍ଣ

ଗଜପତି ସଉରାମାନଙ୍କ ଜୀବନଶୈଳୀରେ ଆଜି ବହୁ ପରିବର୍ତ୍ତନ ଘଟିଲେ ସୁଦ୍ଧା ସେମାନଙ୍କ କଥିତ ଭାଷାଗୁଡ଼ିକ ଏବେବି ଦୈନନ୍ଦିନ ଜୀବନରେ ସେମାନଙ୍କର ଉପଯୋଗିତା ହରାଇ ନାହାନ୍ତି । କିନ୍ତୁ, ଆଧୁନିକ ଶିକ୍ଷା ସଭ୍ୟତାର ସଂସ୍ପର୍ଶରେ ଆସି ଆଦିବାସୀ ଛାତ୍ର, ଛାତ୍ରୀ ଉଚ୍ଚଶିକ୍ଷା ଲାଭ କରି ମୁଖ୍ୟସ୍ରୋତରେ ଜୀବନ ଜୀଇଁବା ପାଇଁ ସହରି ସଭ୍ୟତା ଭିତରକୁ ଆପଣେଇଲେଣି । ସେମାନେ ଗ୍ରାମୀଣ ଜୀବନକୁ ପୁଣିଥରେ ଆପଣେଇ ନେବା ପାଇଁ କୁଣ୍ଠିତ ହେଉଥିବା ବେଳେ, ନିଜର ଭାଷାରେ ପରସ୍ପର କଥାଭାଷା ହେବା ମଧ୍ୟ ବନ୍ଦ ହେବାକୁ ବସିଲାଣି । ବର୍ତ୍ତମାନ ଯୁବକଯୁବତୀ ଓଡ଼ିଆ ଭାଷାରେ ଘରେ ବାହାରେ ସବୁ ସ୍ଥାନରେ କଥା ହେବାପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । ଏଣୁ ସଉରା ଭାଷାକୁ ବଞ୍ଚାଇବାକୁ ହେଲେ, ଲୋକମୁଖରେ ପ୍ରଚଳିତ ଭାଷାର ଅଧିକ ଗବେଷଣା, ବିଚାର ବିଶ୍ଳେଷଣ ହେବା ଆବଶ୍ୟକ ମନେହୁଏ ।

### ସହାୟକ ଗ୍ରନ୍ଥସୂଚୀ


୧. ମହାପାତ୍ର, ଡ. ଖଗେଶ୍ୱର, ମୁଖା ନଥିବା ମଣିଷ, ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ–୨, ୧୯୯୫, ପୃ. ୧୯ ।

୨. ରୌପ୍ୟଜୟନ୍ତୀ ସ୍ମରଣିକା–୨୦୧୩, ସଉରା ବାପ୍ଟିଷ୍ଟ ଖ୍ରୀଷ୍ଟିଆନ୍ ମଣ୍ଡଳୀ ସମ୍ମିଳନୀ ବେଥନୀ ବଙ୍ଗଳା ସେରଙ୍ଗ (ଗଜପତି), ଓଡ଼ିଶା ।

ସଉରା ଭାଷା ସଂପର୍କରେ ତଥ୍ୟ ପ୍ରଦାନକାରୀ ବ୍ୟକ୍ତି:

୩. ଶ୍ରୀନିବାସ ଗମାଙ୍ଗ, ଗ୍ରାମ–ବାଲିଆ ସାହି, ବୃତ୍ତି–ସଉରା ଭାଷା ଓ ସଂସ୍କୃତି ସାଧନ କର୍ମୀ, ବୟସ–୪୫ ।

୪. ସୁନାମ ଗମାଙ୍ଗ, ଗ୍ରାମ–ତୁରିପଦର, ବୃତ୍ତି–ଶିକ୍ଷକ, ଯୋଗ୍ୟତା– ଯୁକ୍ତ୨, ବୟସ–୩୭ ।

୫. ଇନାମ ଗମାଙ୍ଗ, ଗ୍ରାମ–ସାନାରାଗେଡ଼ି, ବୃତ୍ତି–ସି.ଆର୍.ସି.ସି., ବୟସ–୫୨ ବର୍ଷ ।

୬. ତିମି ରଇତ, ଗ୍ରାମ–ତୁରିପଦର, ବୃତ୍ତି–ଚାଷୀ, ବୟସ–୪୪ ବର୍ଷ ।



ଗବେଷକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଂଜବିହାର
ବ୍ରହ୍ମପୁର–୭୬୦୦୦୭




# ମାଟିର ମହାକବି ସାରଳା ଦାସ

ପ୍ରଫୁଲ୍ଲ କୁମାର ଦାସ

'ଏକ ଦେହେ ଉତ୍କଳର ବ୍ୟାସ ଓ ବାଲ୍ମୀକି
ତମେ ହିଁ ଜନମି ଥିଲ ହେ କବି ସାରଳା
ତମରି ଲେଖନୀ ତଳେ ବିରାଟ ଜାତିର
ସାହିତ୍ୟ ଓ ଇତିହାସ ଏକ ସଙ୍ଗେ ଢଳା ।'



ଆଦି କବି ସାରଳା ଦାସ ଓଡ଼ିଆ ଭାଷାରେ ଏକ ବିଧିବଦ୍ଧ କାବ୍ୟଶୈଳୀର ନିର୍ମାତା । ଗ୍ରୀକ୍ ସାହିତ୍ୟ ନିମନ୍ତେ ହୋମର ଏବଂ ଇଂରାଜୀ ସାହିତ୍ୟରେ ଚସରଙ୍କର ଅବଦାନ ସହିତ ଓଡ଼ିଆ ଭାଷା ଓ ସାହିତ୍ୟର ଶୁଦ୍ରମୁନି ସାରଳା ଦାସଙ୍କର ଅବଦାନକୁ ତୁଳନା କରାଯାଇପାରେ । ସାରଳା ଦାସଙ୍କର କାଳ ସମଗ୍ର ଭାରତବର୍ଷର ଅନ୍ୟାନ୍ୟ ପ୍ରାନ୍ତର ସାହିତ୍ୟ ନିମନ୍ତେ ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳର ବ୍ୟାସ ସାରଳା ଦାସ ଓଡ଼ିଆ ଭାଷାର ଆଦିକବି । କେଉଁ ସମୟରେ ଉତ୍କଳ ଏହି ମହାକବିଙ୍କର ମାଙ୍ଗଳିକ ଗାନରେ ମୁଖରିତ ହୋଇ ଉଠିଥିଲା, ତାହା ବର୍ତ୍ତମାନ ଆଉ ଜାଣିବାର କୌଣସି ଉପାୟ ନାହିଁ । ନିଜ ସଂପର୍କରେ କବିଙ୍କର ଆପାତତଃ ନିରବତାହିଁ ଏହାର କାରଣ । ଦେବୀ ଦେବତାର ଦେଶ ଭାରତବର୍ଷରେ ଅନ୍ୟାନ୍ୟ ଅନେକ କବିଙ୍କ ଭଳି ସାରଳାଙ୍କ କବିତ୍ୱ ସ୍ଫୁର୍ତ୍ତି ପଛରେ ମଧ୍ୟ ଏକ ଆତ୍ମିକ ଭିତ୍ତି ପ୍ରଚାରିତ ।

ଶୂନ୍ୟତା ମରୁ ଓଡ଼ିଆ ଭାଷା ନିମନ୍ତେ ସେ ବିଧିବଦ୍ଧ ଏକ ନୂତନ କାବ୍ୟ ଶୈଳୀ ପ୍ରସ୍ତୁତ କରିଯାଇଛନ୍ତି । ପୁଷ୍ପଲତାରେ ଯାହା ଆଶ୍ଚର୍ଯ୍ୟ ଜନକ, ବୈଚିତ୍ର୍ୟରେ ଯାହା ମନୋମୁଗ୍‌ଧକର, ପ୍ରତିଭାର ଖର ଦୀପ୍ତିରେ ଯାହା ଆଲୋକିତ, ଓଡ଼ିଆ ଭାଷାର ଚିର ଅନ୍ଧକାର କାବ୍ୟ ରାଜ୍ୟରେ ସାରଳା ଦାସଙ୍କର ମହାଭାରତ ହେଉଛି ଦୀପ୍ତିମନ୍ତ ଏକ ଆଲୋକ ସ୍ତମ୍ଭ । ନିଜ ପ୍ରତିଭା ନିମନ୍ତେ ସ୍ୱତନ୍ତ୍ରପଥ ପ୍ରସ୍ତୁତ କରିବାର ଉଦାହରଣ ତ କମ୍ ନୁହେଁ, ତେଣୁ ସାରଳା ଦାସଙ୍କୁ ନବ ଓଡ଼ିଆ କାବ୍ୟଶୈଳୀର ଭଗିରଥ ରୂପେ ଗ୍ରହଣ କରିନେଲେ କ୍ଷତି କ'ଣ ? ସାରଳା ଦାସ ଜଣେ ବିଚିତ୍ର କର୍ମା ଐତିହାସିକ ପୁରୁଷ ।

**ସାରଳାଙ୍କ ଭାଷା ନିଃସର୍ଗ ସୌନ୍ଦର୍ଯ୍ୟର ମନୋହର**

ସାରଳ ଦାସ ସାହିତ୍ୟ ସୃଷ୍ଟି କରିବାକୁ ଚାହିଁ ନଥିଲେ । ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା 'ଜୀବନର ଗାଥା' ନିବେଦନ ତାଙ୍କର ଭାଷା ଜନତାର ଭାଷା, ଗଦ୍ୟଧର୍ମୀ ତଥାପି ଲାଳିତ୍ୟପୂର୍ଣ୍ଣ । ସାରଳା ମହାଭାରତ ହେଉଛି ଅନାବିଷ୍କୃତ ଅନନ୍ତ ରତ୍ନ ସମୂହର ଏକ ଖଣି ବିଶେଷ ଓ ଓଡିଆ ମନୁଷ୍ୟର ମନର ଇତିହାସ । ଓଡିଆ ସାହିତ୍ୟର ବିଶିଷ୍ଟ ପ୍ରତିଭାଶାଳୀ ଆଦିକବି ସାରଳା ଦାସଙ୍କର ମହାଭାରତ ଏକ ପକ୍ଷରେ ଯେପରି ଅତୀତର ଐତିହାସିକ ଅନୁସନ୍ଧାନ ପାଇଁ ଏକ ବିଶ୍ୱକୋଷ ଅନ୍ୟ ପକ୍ଷରେ ସେହିପରି ଭୌଗୋଳିକ ଅୟନ ପାଇଁ ଏକ ଗ୍ଲୋବ୍ ବା ଆଟ୍‌ଲାସ । ମାଟିର ମହାକବି ଯେଉଁ ମାନଚିତ୍ର ଛାଡିଯାଇଛନ୍ତି, ତାହା ଯୁଗ ଯୁଗ ପାଇଁ ଓଡିଆ ସାହିତ୍ୟକୁ ଆଲୋକିତ କରିବ ଏଥିରେ ସନ୍ଦେହ ନାହିଁ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଭାଷାରେ, ସାରଳା ଦାସଙ୍କ କବିତାରେ ଭାଷା ସରଳା କୃଷକ କନ୍ୟା ପରି ସରଳ, ସ୍ୱାଭାବିକ ଓ ସାବଲୀଳ ଗତିରେ ନାଚି ନାଚି ଯାଇଛି । କୌଣସିଠାରେ କୃତ୍ରିମତାର ଗନ୍ଧସ୍ପର୍ଶ ନାହିଁ । କବି ଭାବିଚିନ୍ତି ଅକ୍ଷର ଯୋଡି ଲେଖୁନଥିଲେ ତାଙ୍କର ଲୌହ ଲେଖନୀ ଅକ୍ଲାନ୍ତ ଓ ଅବାଧ ବେଗରେ ଗତିକରି ଯାହା ଲେଖିଯାଉଥିଲା ତାହାହିଁ କବିତାରେ ପରିଣତ ହେଉଥିଲା । ଏହାହିଁ ତାଙ୍କର ଅସାଧାରଣ କବି ପ୍ରତିଭାର ବିଶେଷତ୍ୱ ।

ସାରଳାଙ୍କ ସାହିତ୍ୟ କୃଷିଭିତ୍ତିକ ଓ ପଲ୍ଲୀଭିତ୍ତିକ । ସାରଳା ମହାଭାରତ ଏ ଦେଶର ଓ ଭାଷାର ମହାକାବ୍ୟ ଚ ଗ୍ରୀସ୍‌ର 'ଇଲିୟାଡ' ଏବଂ 'ଓଡେସୀ' ସହିତ କେବଳ ତୁଳନୀୟ । ସବୁଜ ସାହିତ୍ୟିକ ଅନ୍ନଦା ଶଙ୍କରଙ୍କର ଭାଷାରେ ତିନିଗୋଟି ଜିନିଷ ବିଶ୍ୱଦରବାରରେ ପୂଜା ପାଇବାର ଯୋଗ୍ୟ । ସେଗୁଡିକ ହେଲା ଓଡିଶାର ଜଗନ୍ନାଥ ଧର୍ମ, କୋଣାର୍କ ଓ ସାରଳା ମହାଭାରତ । ତେଣୁ ଏହି ବିଚିତ୍ର କର୍ମା ବହୁ ଶାସ୍ତ୍ରଦର୍ଶୀ କୃଷକ କବିଙ୍କର ପାଦତଳେ ମଥା ଆପେ ଆପେ ନଇଁଯାଏ । କପିଳେନ୍ଦ୍ର ଦେବ ଓଡିଶାର ବିକ୍ରମାଦିତ୍ୟ । ସାରଳା ଦାସ ଓଡିଶାର କାଳି ଦାସ । ଜଣେ ଜାତି ନିର୍ମାତା ଆଉ ଜଣେ ସାହିତ୍ୟ ନିର୍ମାତା । ସାମ୍ରାଜ୍ୟ ବିସ୍ତାରରେ କପିଳେନ୍ଦ୍ର ଦେବ ଯେପରି ଓଡିଆର ପ୍ରାଣରେ ଜାତୀୟତାର ଅଗ୍ନିସ୍ରୋତ ବୁହାଇ ଦେଲେ, ସାହିତ୍ୟର ବିପୁଳ ବିଭୁତିରେ ସାରଳା ଦାସ ସେହିପରି ନୂତନ ଜୀବନର ଜାଗୃତି ପଲ୍ଲବିତ କଲେ । ସାହିତ୍ୟରେ ଜାତୀୟତାର ବହ୍ନି ବାଣୀ ଜଳାଇବା ପାଇଁ ସାରଳାଙ୍କ ଆଗରେ କପିଳେନ୍ଦ୍ର ଦେବ ଯେପରି ଥିଲେ ଆଗ୍ନେୟ ଅଙ୍ଗୀକାର, ଜାତୀୟ ଭାଷା ଓ ସାହିତ୍ୟର ଆଦର କରିବା ପାଇଁ ସାରଳା ଦାସଙ୍କ ସାହିତ୍ୟ ହୁଏତ ସେହିପରି ଥିଲା କପିଳେନ୍ଦ୍ର ଦେବଙ୍କ ଜୀବନର ଏକ ସମ୍ମାନିତ ସ୍ୱୀକୃତି । କପିଳେନ୍ଦ୍ର ଦେବ ସାମ୍ରାଜ୍ୟ ଦିଗ୍‌ବିଜୟୀ । ସାରଳା ଦାସ ସାହିତ୍ୟ ଦିଗ୍‌ବିଜୟୀ ଉଭୟଙ୍କ ଦିଗ୍‌ବିଜୟରେ ହୋଇଛି ଓଡିଆ ଜାତିର ଦିଗ୍‌ବିଜୟ ।

ସାରଳା ଦାସଙ୍କ ମହାଭାରତ ସୃଷ୍ଟି ପରିକଳ୍ପନାର ପୃଷ୍ଠଭୂମି ହେଉଛି ଓଡିଶା । ଯୁଗେ ଯୁଗେ ଓଡିଶା ଧର୍ମ ଦିଗରେ ବଡ ଉଦାର । ବହୁ ଧର୍ମର ସମନ୍ୱୟ ମଣ୍ଡପ ଏହି ଓଡିଶା, ସାରଳା ଦାସଙ୍କ ପୂର୍ବରୁ ଅଶୋକ ଏହି ଦେଶରେ ଧର୍ମରେ ଦୀକ୍ଷିତ ହୋଇଥିଲେ । ସାରଳା ମହାଭାରତ କେବଳ ଏକ ମହାପୁରାଣ ନୁହେଁ, ଓଡିଆ ଜାତିର ମହାଇତିହାସ । ଓଡିଶାର ରାଜନୀତି, ସମାଜ, ସଂସ୍କୃତି ଓ ଧର୍ମର ବିଶ୍ୱକୋଷ । ସାରଳା ଦାସ କେବଳ କବି ନୁହଁନ୍ତି । ଏ ଜାତିର ଗୌରବାବହ ପରଂପରାର ଜଣେ ଉତ୍ତର ରକ୍ଷକ । ସେ ବ୍ୟକ୍ତିବିଶେଷ ନୁହଁନ୍ତି । ସେ ଏ ଜାତିର ଏକ ଜାତୀୟ ଅନୁଷ୍ଠାନ । ସେ ଜାତିର ଚଷା । ଓଡିଆ ଜାତି ପ୍ରତି ଭଗବାନଙ୍କର ଏହା ଏକ ପ୍ରଚ୍ଛନ୍ନ ଆଶୀର୍ବାଦ । ତା' ହୋଇ ନ ଥିଲେ ସେ ହୁଏତ ସଂସ୍କୃତମୁଖୀ ମହାଭାରତ ସୃଷ୍ଟି କରିଥାନ୍ତେ । ଏ ମାଟିର ପୁଅ ସାରଳା ଦାସ ଏ ମାଟିର ଭାଷାରେ ଏ ମାଟିର ପୁଅ ଝିଅଙ୍କ ପାଇଁ ସୃଷ୍ଟି କଲେ ଏକ ମହାକାବ୍ୟ । ସେ ମହାକାବ୍ୟରେ ଯେଉଁମାନେ ରକ୍ତ ମାଂସ ଧରି ଓହ୍ଲାଇ ଆସିଲେ ସେମାନେ ମନେ ହେଲେ ଏଇ ମାଟିର ପୁଅ ଝିଅ । ସେ ମହାକାବ୍ୟ ହେଲା ଏ ଜାତିର ମହାଇତିବୃତ୍ତ । ସାହିତ୍ୟ ହେଉଛି ପରିବେଶ ଓ ପରିସ୍ଥିତିର ମୂଲ୍ୟବାନ ହିରଣ୍ମୟ କିରଣ ପରି ଓଡିଆ ଭାଷା ଓ ସାହିତ୍ୟର ପ୍ରଥମ ମହିମ୍ନ ଝଲକ ।

କିମ୍ବଦନ୍ତୀ ଅନୁମାନ ଓ ଉପକଥା ମଧ୍ୟରେ ସାରଳାଙ୍କ ଇତିହାସ ଅବଲୁପ୍ତ ତଥାପି ଇତିହାସର ସୀମା ଲଙ୍ଘନ କରି ସର୍ବକାଳୀନ ସାହିତ୍ୟ ସିଂହାସନରେ ସେ ମଣିମାଣିକ୍ୟ । ବିଲଙ୍କା ରାମାୟଣରେ ସିଦ୍ଧେଶ୍ୱର ଦାସ ମହାଭାରତରେ ଆରାଧ୍ୟଦେବୀ ଶାରଳାଙ୍କ ବରପୁତ୍ର ସାରଳା ଦାସ । ବୌଦ୍ଧତନ୍ତ୍ରର ବିଲୟ ଓ ସାରଳା ସାହିତ୍ୟର ଅଭ୍ୟୁଦୟ । ବାସେଳୀଙ୍କ ଦୟାରୁ ବଂଗ କବି ବଡୁ ଚଣ୍ଡୀ ଦାସ, ସରସ୍ୱତୀଙ୍କ କରୁଣାରୁ କବି ଗୁରୁ କାଳିଦାସଙ୍କ ପରି ଇଷ୍ଟଦେବୀ ଶାରଳାଙ୍କ ପ୍ରେରଣାରୁ ସାରଳା ଦାସ ଓଡିଆ ଭାଷାର ମହାକବି ଭାବରେ ପ୍ରତିଷ୍ଠିତ ।

ଗୋପିନାଥ ନନ୍ଦଙ୍କ ଭାଷାରେ ମୂଳ ଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ ରଖି ଅସାମାନ୍ୟ କଳ୍ପନା ଶକ୍ତି ଜ୍ଞାନ ଦିଗ୍‌ବଳୟରେ ପ୍ରବୀଣତାର ବଳରେ ବଳୀୟାନ ହୋଇ ଏ ବିରାଟ ଗ୍ରନ୍ଥ ଲେଖିଯାଇଛନ୍ତି । ସଂସ୍କୃତ ପ୍ରଭାବିତ ବ୍ରାହ୍ମଣ୍ୟ ସଂସ୍କୃତି ଓ ସାହିତ୍ୟ ବିରୁଦ୍ଧରେ ତାଙ୍କର କଳ୍ପନାର ପ୍ରଚଣ୍ଡ ପ୍ରତିଭାର ସାଂସ୍କୃତିକ ଅଶୀ ନିଷ୍କାସନରେ ଖର ଦୀପ୍ତିରେ ଓଡିଆଭାଷା ସଂସ୍କୃତି ଧାର୍ମିକ ଚେତନାର ବିରାଟ ବିରାଟ ବିଶାଳ ଓଡିଆ ଭାଷାର କାବ୍ୟ କୋଣାର୍କ ମୁକ୍ତିତୀର୍ଥର ଅନନ୍ତ ସାଗର । ତାଙ୍କ ରଚନାର ପ୍ରତି ଛତ୍ରେ ଛତ୍ରେ ସଦ୍ୟଗୋଲାପ ପରି ଆତ୍ମିକତା ବିକଶିତ । ମହାଭାରତ ସମଗ୍ର ଭାରତୀୟ ସାହିତ୍ୟରେ ଏକ ଅଭିନବ କୃତି । ରାଜନୈତିକ, ଐତିହାସିକ, ସାଂସ୍କୃତିକ ଓ ସାମାଜିକ ଜୀବନର ଏକ ବିଚିତ୍ର ବିଶ୍ୱକୋଷ । ସାହିତ୍ୟ ସଂସ୍କୃତି ଓ ସଭ୍ୟତାର ଏକ ଅମୂଲ୍ୟରତ୍ନ ଭଣ୍ଡାର ।

ସଂସ୍କୃତ ମହାଭାରତର ଏକ ପରମ୍ପରା ଅନୁସାରେ ବ୍ୟାସଙ୍କ ରଚିତ ୪ ଗୋଟି ଶ୍ଳୋକକୁ ନାରଦ ଦେବଲୋକରେ ୩୦ ଲକ୍ଷ ଶ୍ଳୋକରେ, ଅସିତ ଦେବଳ ପିତୃଲୋକରେ ୧୫ ଲକ୍ଷ ଶ୍ଳୋକରେ, ଶୁକ ଗନ୍ଧର୍ବ ଲୋକରେ ୧୪ ଲକ୍ଷ ଶ୍ଳୋକରେ ଓ ମର୍ତ୍ତ୍ୟରେ ବୈଶଂପାୟନ ୧ ଲକ୍ଷ ଶ୍ଳୋକରେ, ଓଡିଶାର ସାରଳାଙ୍କ ଲେଖନୀରେ ୧ ଲକ୍ଷ ୪୦ ହଜାର

ବହୁ ଶତାବ୍ଦୀ ପରେ ଜଣେ ପ୍ରକୃତ ଓଡିଆ ବୀର ପୁରୁଷଙ୍କ ରାଜତ୍ୱ କାଳରେ ଜନସାଧାରଣଙ୍କ ଓଡିଆ ଭାଷା ଓ ସାହିତ୍ୟ ପ୍ରତି ଅନୁରାଗ ଆସିବା ମଧ୍ୟ ସ୍ୱାଭାବିକ ହୋଇପଡିଥିଲା । ଏହି ଅନୁରାଗ ଉତ୍ସାହରୁ ଜାତ ହେଲା ଓଡିଶାର ପ୍ରଥମ ବିଶାଳ ସାହିତ୍ୟ ସାରଳା ମହାଭାରତ । ମହାଭାରତ ସୁକ୍ତିମାଳାର ଏକ ବିରାଟ ମହୋଦଧି । ଓଡିଆ କବି ସାରଳା ଦାସ ଜଣେ ସାଂସ୍କୃତିକ ନେତା । ସାରଳା ସାହିତ୍ୟ ଉତ୍ସବମୁଖୀ ରାତ୍ରିର ପ୍ରଦୀପ ମାଳା । ସାରଳା ଦାସ ଜଣେ ଯୁଗପୁରୁଷ ଓ ତାଙ୍କ କୃତି ଏକ ଯୁଗୋତୀର୍ଣ୍ଣ କୃତି । ତାଙ୍କ ଭାଷା ଓ ଶୈଳୀ ଏବଂ ମୂଲ୍ୟବୋଧ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ । ସମାଜରେ ସଂଯମ ଓ ଯବନିକା ସାଧନାରେ ଆଦର୍ଶ ପ୍ରତିଷ୍ଠିତ କରିବା ପାଇଁ ତାଙ୍କର ଲହୁ ଲେଖନୀ ବଜ୍ରଗମ୍ଭୀର ।

ସାରଳାଙ୍କ ମହାଭାରତରେ ନାରୀ ଘୋର କାମୋନ୍ମାଦିନୀ ଅକୁଣ୍ଠିତ ରତିକାଂକ୍ଷିଣୀ ଓ ପୁରୁଷ ଯେତେ କଠୋର ସାଧନା ନିର୍ଜିତ ହୋଇଥିଲେ ମଧ୍ୟ ନାରୀର ରତିରକ୍ଷା ନିକଟରେ ସଦା ସମର୍ପିତ । କାମ ପ୍ରପୀଡିତ ନରନାରୀଙ୍କର ଏକ ପ୍ରକାର ବହୁ ଅକୁଣ୍ଠିତ ଆଚରଣ ଅବଗୁଣ୍ଠିତ ବର୍ଣ୍ଣନାରେ ପୂର୍ଣ୍ଣ । ସାରଳା ଦାସ କେବଳ କବି ନୁହଁନ୍ତି । 'ମୁନି'ରୂପେ ମଧ୍ୟ ସମ୍ମାନିତ । ମହାଭାରତ ଶାରଳା ଦେବୀ ପୀଠରେ ଧର୍ମଗ୍ରନ୍ଥ ରୂପେ ନିତ୍ୟ ପଠିତ ହୁଏ ଯାହାର ଶ୍ରବଣ ଅସଂଖ୍ୟ ଓଡିଆଭାଷୀ ନରନାରୀଙ୍କର ଗତି ଓ ମୁକ୍ତିର କାରଣ ରୂପେ ବିବେଚିତ, ସେହି ସାରଳା ଦାସ ଜଣେ ସାଧାରଣ ମାନବ ନୁହଁନ୍ତି ।

ସାରଳା ଦାସ ଏବେ ସୁଦ୍ଧା ଏକ ଜୀବନ୍ତ ଅନୁଷ୍ଠାନ । ଅତିବଡ଼ୀ ଜଗନ୍ନାଥ ଦାସ ଆଜି ପ୍ରତ୍ୟେକ ଓଡିଆଭାଷୀର ପ୍ରାତଃ ସ୍ମରଣୀୟ । ସମୟର ଶଯ୍ୟାତଳେ ସମନ୍ୱୟର ଫଲ୍‌ଗୁ ସ୍ରୋତ ନିରବଚ୍ଛିନ୍ନ ଭାବରେ ଶାରଳା ସାହିତ୍ୟରେ ଗଙ୍ଗୋତ୍ରୀ କୁଳୁ କୁଳୁ ତାନରେ ସାମ୍ପ୍ରତିକ ସାହିତ୍ୟ ପର୍ଯ୍ୟନ୍ତ ଇତିହାସର ବହୁ ଘାତ ପ୍ରତିଘାତ ମଧ୍ୟରେ ବନ ଝରଣାସମ ବହି ଚାଲିଛି ।

ଶ୍ଳୋକରେ ପରିଣତ ହୋଇଅଛି । କେଉଁ ସୁପ୍ରାଚୀନ କାଳରୁ ମୂଳ ମହାଭାରତର ସ୍ଥୂଳ ଇତିବୃତ୍ତ ଏକ କ୍ଷୀଣତୋୟା ଗିରି ନିର୍ଝରିଣୀ ପରି ବାହାରି କାଳେ କାଳେ ବିଭିନ୍ନ ଆଂଚଳିକ ଓ ସଂସ୍କୃତି ପ୍ରବାହରେ ସ୍ଫିତ ହୋଇ ସମତଳ ପ୍ରଦେଶରେ ଯେପରି ଏକ ବିଶାଳ ଜଳସ୍ରୋତରେ ପରିଣତ ହୋଇଅଛି । କବିତ୍ୱ ଓ ସୃଷ୍ଟି ବୈଚିତ୍ର୍ୟରେ ସାରଳା ଦାସ ମଧ ଦେବଲୋକର ନାରଦ, ପିତୃଲୋକରେ ଅସିତ ଦେବଳ, ଗନ୍ଧର୍ବ ଲୋକର ଶୁକଦେବ ଓ ମର୍ତ୍ତ୍ୟଲୋକର ବୈଶଂ ପାୟନଙ୍କ ସହିତ ସମାନ ଆସନ ଦାବି କରନ୍ତି ।

ସାରଳା ମହାଭାରତ ଓଡିଆ ସାହିତ୍ୟ ଆକାଶର ଜାତୀୟ ମହାକାବ୍ୟ ଓ ଜୀବନ ବେଦ, ସଂପୂର୍ଣ୍ଣ ଲୋକ ଭାଷାରେ ରଚିତ ଏହି ମହାଭାରତ ଓଡିଆ ଜାତିର ମାନସ ରାଜ୍ୟରେ କ୍ରାନ୍ତିକାରୀ ବିପ୍ଳବ ସୃଷ୍ଟିକରି ବିଶ୍ୱ ସାହିତ୍ୟ ଶିର ଚୁମ୍ବନ କରିଛି । ପ୍ରାକୃତ ଭାଷାର ଏହି ମହାଭାରତ ଅସଂଖ୍ୟ କାହାଣୀର ପ୍ରଶାନ୍ତ ମହାସାଗର । ନିଜସ୍ୱ ରଙ୍ଗ ତୂଳିର ମୌଳିକତା ଫୁଟାଇ ସାରଳା ଦାସ ଅଭୁଲା ସ୍ମୃତି ହୋଇ ରହିଛନ୍ତି ।

ଗୋପୀନାଥ ନନ୍ଦଙ୍କ ଭାଷାରେ – ଏହି ମହିମା ଗ୍ରନ୍ଥକୁ ଧର୍ମତତ୍ତ୍ୱଜ୍ଞମାନେ ଧର୍ମଶାସ୍ତ୍ର ବୋଲି, ଆଧ୍ୟାତ୍ମ ଶାସ୍ତ୍ର କୋବିନ୍ଦମାନେ ବେଦାନ୍ତ ବୋଲି, ନୀତି ବିଚକ୍ଷଣମାନେ ନୀତିଶାସ୍ତ୍ର ବୋଲି, କବି ଭୂଷବମାନେ ମହାକାବ୍ୟ ବୋଲି, ଲକ୍ଷଣିକମାନେ ଲକ୍ଷଣଶାସ୍ତ୍ର ବୋଲି, ଐତିହାସିକମାନେ ଇତିହାସ ବୋଲି ଓ ପୌରାଣିକମାନେ ପୁରାଣ ସମୁଚ୍ଚୟ ବୋଲି କହିଥାନ୍ତି । ଯୁଗ ବିପ୍ଳବୀ ରସସ୍ରଷ୍ଟା ସାରଳା ଦାସ ମହାଭାରତକୁ ଉପନ୍ୟାସ ସୁଲଭ ଗରିମାରେ ବିଭୂଷିତ କରିଛନ୍ତି । ଦୀର୍ଘ ପାଂଚଶହ ବର୍ଷଧରି ବହୁ କବି ପୁରାଣକାର, ଲେଖକ, ଗାଳ୍ପିକ ତାଙ୍କର ପଥ ଦିସାରୀ । ଅସଂଖ୍ୟ ଆପ୍ତ ବଚନରେ ମହାଭାରତ ବିଶାଳ ସାହିତ୍ୟ ସୌଧ ଓ ସ୍ୱର୍ଣ୍ଣସେତୁ । ସାରଳାଙ୍କ ସମୟ ଓଡିଶାର ତେତିଶକୋଟି ଦେବୀଦେବତାର ଦେଶ । କୃଷକ କବି ସାରଳା ଦାସ ନୀତି କଥାର ସାଗର ସୃଷ୍ଟି କରି ଓଡିଆ କବିମାନଙ୍କୁ ସାହିତ୍ୟ ସ୍ରୋତରେ ଭସାଇ ଚାଲିଛନ୍ତି । କଳ୍ପନା ବିଳାସରେ ରସିକ କବି ଅତୁଳନୀୟ । କବି ଅନୁଭୂତି ପ୍ରଚୁର ଓଡିଆ ଭାଷାର ଗନ୍ତାଘର । ପ୍ରତିଭାର ଭୂଇଁ ଓଡିଶାରେ ପ୍ରତିଭାବାନ ସୁପୁରୁଷ ସାରଳା ଦାସ ଶୂଦ୍ରମୁନି ଭାବରେ ଗୌରବାନ୍ୱିତ । ଓଡିଶାର କବି ଓଡିଆ ଭାଷାକୁ ସମୃଦ୍ଧ କରିବା ପାଇଁ ସେ ରାଶି ରାଶି ଶବ୍ଦ ସୃଷ୍ଟି କରି ଯାଇଛନ୍ତି । ଓଡିଆ ସମାଜ ଜୀବନର ଚଳଣି, ପରଂପରା, ଇତିହାସ, କିମ୍ବଦନ୍ତୀ, କାହାଣୀ, ପୌରାଣିକ ଆଖ୍ୟାୟିକା ଭୌଗୋଳିକ ସଂପଦ ଏବଂ ବହୁ ମୌଳକ ବଚନିକା ତାଙ୍କ ଲୌହଲେଖନୀକୁ ଶତ ପ୍ରଶଂସା କରିଛି ଯୁଗ ଯୁଗ ପାଇଁ ବିଜୟ ବୈଜୟନ୍ତି ଉଡାଇଛି ।

ଭକ୍ତକବି ସାରଳା ଦାସ ଶାରଳାଙ୍କ କରୁଣାରୁ ମହାକବି । ସେ ନବ ଦିଗନ୍ତର ସନ୍ଧାନୀ । ଉଦ୍ଭଟ କଳ୍ପନାର ଆଶ୍ରୟରେ ସେ ଜାତିସ୍ମର । କପିଳେନ୍ଦ୍ର ଦେବଙ୍କ ଓଡିଶା ଯୁଦ୍ଧର ଓଡିଶା । ଦାଣ୍ଡୀ ବୃତ୍ତର ଆଦି ସ୍ରଷ୍ଟାଙ୍କ ସାହିତ୍ୟ ସୃଷ୍ଟିରେ ଯୁଦ୍ଧହିଁ ପ୍ରକୃତରେ ତାଙ୍କ ମୌଳିକତାର ମାନଚିତ୍ର । ସେଦିନ ସେ ଜାତିର ଥିଲା ଜୀବନ ପ୍ରତି ଅସରନ୍ତି ଶ୍ରଦ୍ଧା । ମାତୃଭୂମି ପ୍ରତି ଅହେତୁକ ମମତା, ସଂଗୀତ ଓ ନୃତ୍ୟ କୋଳରେ ଆତ୍ମବିଭୋର ହୋଇ ସ୍ୱପ୍ନ ଦେଖୁଥିଲା ସୁନ୍ଦରୀ ନାରୀର ଶୋକ ପାଶୋରା ପ୍ରଣୟ । ତରୁଣ କବିଙ୍କର ତରୁଣ ମନର ମହାଭାରତ ପ୍ରତ୍ୟେକ ଚରିତ୍ରକୁ ରକ୍ତ ମାଂସର ରଙ୍ଗ ତୂଳିରେ ଚିତ୍ରିତ କରି ଜନପଥର ଧୂଳି ଧୂସରିତ ଗସ୍ତାରେ ଓଡିଶାର ପାଣି ପବନରେ ଆଭିଜାତ୍ୟ ନାୟିକାମାନଙ୍କୁ ରୋଷେଇ ଶାଳାର ଧୂଆଁ ଓ ଗୃହର ବାସିପାଇଟିରେ କୋମଳ କରବଲ୍ଲବକୁ ଅପରିଚ୍ଛନ୍ନ ଓ କଠିନଭୂତ କରି ଦେଇଛନ୍ତି । ସାରଳାଙ୍କ ଜଗତ କୃଷକ ଜଗତ ।

ଓଡିଆ ଭାଷାର ମହାରଥି କର୍ଣ୍ଣଧାର ଯୁଗ ବିପ୍ଳବୀ ସାରଳା ଦାସ ଚିରସ୍ମରଣୀୟ ପ୍ରତିଭା । ଭାଗବତ ପ୍ରଣେତା ମହାପୁରୁଷ ଜଗନ୍ନାଥ ଦାସଙ୍କ ପରି ମହାଭାରତ ରଚୟିତା ମହାମନୀଷୀ ମହାକବି ସାରଳା ଦାସ ଓଡିଆ ଜାତିର ଚିର ନମସ୍ୟ । ଓଡିଆ ସାହିତ୍ୟ ଓ ଓଡିଆ ଜାତିକୁ ବିଶ୍ୱ

ସାହିତ୍ୟ ଦରବାରରେ ଏକ ସମ୍ମାନିତ ଆସନ ଦାବୀ କରିବାର ଗୌରବ ପ୍ରଦାନ କରିଅଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତକୁ ଛାଡି ଦେଲେ ସାରଳାଙ୍କ ମହାଭାରତ ହେଉଛି ଏକମାତ୍ର ଗ୍ରନ୍ଥ, ଯାହା ଉତ୍କଳୀୟ ଜନମାନସରେ ଅଲିଭା ହୋଇ ରହିଅଛି । ଉତ୍କଳର କବି ଗୁରୁ ପଦବାଚ୍ୟ ହିଁ ସାରଳା ଦାସଙ୍କର ଅମ୍ଳାନ ସ୍ମାରକୀର ଯଥାଯୋଗ୍ୟ’ ।

କୃଷକ କବି ସଂସ୍କୃତ ମହାକାବ୍ୟର ନାୟକ ନାୟିକାମାନଙ୍କୁ ହୈମାଳିକ ଉଚ୍ଚତାରୁ ଟାଣିଆଣି ଗ୍ରାମର ପଙ୍କିଳ ପଥ ଉପରେ ଚଲେଇ ପାରିଛନ୍ତି । ଯାହାର ଲେଖନୀ ସାହିତ୍ୟର ଅର୍ଥ ବୁଝିଥିଲା କେବଳ ‘ଜୀବନ’ । ସେ ସାହିତ୍ୟର ଅର୍ଥ ଦର୍ଶନ ଧର୍ମ ଓ ନୀତିଶିକ୍ଷା ବୋଲି ମାନି ନାହିଁ ସେ ପ୍ରତିଭା କୌଣସି ଆଦର୍ଶ ପ୍ରଚାର କରିବାର ଛଳନା କରିନାହିଁ ଆମ ତମ ପରି ନାରୀ ପୁରୁଷଙ୍କୁ ନେଇ ଗଳ୍ପ ଶୈଳୀରେ ରଚନା କରିଛି ଓଡିଆ ସାହିତ୍ୟର ଆଦିଗ୍ରନ୍ଥ ‘ମହାଭାରତ’ । ମୂଳ ମହାଭାରତର ତାତ୍ତ୍ୱିକ ଓ ଦାର୍ଶନିକ ଆଲୋଚନାକୁ ସଂପୂର୍ଣ୍ଣ ପୋଛି ଦେଇଛି ସାରଳା ମହାଭାରତ । ମୂଳ ମହାଭାରତର ଆଦ୍ୟପ୍ରାନ୍ତ ବିନ୍ଦୁ ଦୁଇଟିକୁ ଅପରିବର୍ତ୍ତିତ ରଖି ମଧ ବିନ୍ଦୁର ଓଡିଆ ମାଟିର ମହାକବି ପୂରା ସ୍ୱାଧୀନ ହୋଇ ଉଠିଛନ୍ତି । ଅନେକ କିଛି ହରାଇ ଅଧିକ କିଛି ନୂଆତଥ୍ୟ ଯୋଡି ପାରିଛନ୍ତି । ସାରଳା ମହାଭାରତ ସାମାଜିକ ଦ୍ୱନ୍ଦ୍ୱର ମହାନଦୀ ସୃଦଶ ଓ ନିମ୍ନ ଜନ ପାଇଁ ଗଭୀର ମମତାର ଗଙ୍ଗୋତ୍ରୀ । ଗଳ୍ପ ଗାଥା ଓ ଯାତ୍ରାର ସମନ୍ୱୟରେ ମନ୍ଦ୍ର ମୁଖର । ମହାଭାରତ ମହାସମରର ମହାକାବ୍ୟ କୁରୁପାଣ୍ଡବ ଯୁଦ୍ଧ ବିଶ୍ୱଯୁଦ୍ଧର ଧ୍ୱଂସକୁ ସ୍ମରଣ କରାଇ ଦିଏ । ଭାରତବର୍ଷରେ ଯେଉଁ ଯୁଦ୍ଧ ହୁଏ ତାହା ଧର୍ମଯୁଦ୍ଧ । ଏଠି ମଣିଷ ଜନ୍ମହୋଇ ଦେବତା ହୁଏ, ନାରୀ ହୁଏ ଦେବୀ ପ୍ରତିମ । ମର୍ତ୍ତ୍ୟ କେବଳ ଲୀଳା କ୍ଷେତ୍ର । ଏ ଗ୍ରନ୍ଥ ସୁପରିକଳ୍ପିତ ସୁଶୋଭିତ ଉଦ୍ୟାନ ନୁହେଁ, ଏହା ବରଂ ଗୋଟିଏ ବିରାଟ ଜଙ୍ଗଲ । ଓଡିଆରେ ୩ ଗୋଟି ପଦ୍ୟ ଓ ଗୋଟିଏ ଗଦ୍ୟ ମହାଭାରତ ଅଛି କିନ୍ତୁ ସାରଳାଙ୍କ ସୃଷ୍ଟି ହିଁ ଅଧିକ ଜନପ୍ରିୟ ।

କର୍ମ ଓ ଘଟଣାର ଏକ ବନ୍ୟାକ୍ରାନ୍ତ ସ୍ରୋତରେ ମହାଭାରତ ପରିପ୍ଲାବିତ । ପାଶ୍ଚାତ୍ୟ ଶିକ୍ଷିତ ରାଧାନାଥ ଓ ମଧୁସୂଦନ ସାରଳା ମହାଭାରତ ପାଖକୁ ଯାଇଛନ୍ତି ଉପାଦାନ ସଂଗ୍ରହ କରିବା ପାଇଁ । ଶୂଦ୍ରର କୀର୍ତ୍ତି ହିଁ ତାର ପରାଗତ ସତୀର୍ଥମାନଙ୍କ ଲେଖନୀକୁ ଖୋରାକ ଯୋଗାଇଛି । ପ୍ରାଚୀନ ଯୁଗର କବି ସାରଳା ଦାସଙ୍କ ନିକଟରେ ସମାଲୋଚକ, ସମୀକ୍ଷକ, କବି ଭାବୁକ, ପାଠକ, ଦାର୍ଶନିକ ଓ ସାଧାରଣ ଜନତା ପ୍ରଣତି ଜଣାଏ, ମୁଣ୍ଡ ନୁଆଁଏ । ସ୍ୱାଗତିକା ଜଣାଏ । ଶୃଙ୍ଗାର ରସ ପ୍ରଖର, ସୁକୁମାର ଲଳିତ ସୌନ୍ଦର୍ଯ୍ୟବୋଧରେ ସାରଳା ମହାଭାରତ ଅତୀବ କମନୀୟ ଏବଂ ଶୁଭ୍ର ଓ ସୁନ୍ଦର । ସାରଳା ଦାସ କେବଳ ଓଡିଆର ଆଦିକବି ନୁହଁନ୍ତି, ସାରାଭାରତର ପ୍ରଥମ ଗଣକବି ଓ ଗଣତାନ୍ତ୍ରିକ ସାହିତ୍ୟକାର । ତାଙ୍କ ସାଧନା ଓଡିଆରେ ନ ହୋଇ ଯଦି ଇଂରାଜୀରେ ହୋଇଥାନ୍ତା ତେବେ ସେ ହୋମର ବା ଚସରଙ୍କ ଭଳି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ହୋଇପାରିଥାନ୍ତେ । ହିନ୍ଦୀ ବା ବଙ୍ଗଳାରେ ହୋଇଥିଲେ ସେ ଭାରତର ଘରେ ଘରେ ପରିଚିତ ହୋଇଥାନ୍ତେ । ବିପ୍ଳବୀ ଲେନିନ୍ ସାମ୍ୟବାଦ ଶାସନର ପ୍ରବର୍ତ୍ତକ । ସାରଳା ଦାସ ଓଡିଆ ସାହିତ୍ୟରେ ତାଙ୍କ ସମୟର ଯେଉଁ ବିପ୍ଳବ ଆଣିଦେଲେ ତାହା ଏକ ସଫଳ ସୃଷ୍ଟି ହୋଇଥିବାରୁ ସାରଳା ଦାସ ଓଡିଆ ସାହିତ୍ୟର ଜନକ । ସେ କେଉଁଠାରେ ରୁଦ୍ର ଓ ଭୟଙ୍କର, କେଉଁଠାରେ ବୀଭତ୍ସ ଓ ବିକଟ ପୁଣି କେଉଁଠାରେ କାନ୍ତ କମନୀୟ ପ୍ରସାଦଗୁଣ ଯୁକ୍ତ ଓ କାବ୍ୟ ଐଶ୍ୱର୍ଯ୍ୟମୟ । ରୂପ କଳ୍ପରେ ମହାଭାରତ ବୈଚିତ୍ର୍ୟମୟ, କଳାଜୟୀ ତଥା କାଳଜୟୀ । ନିଜ ମାତୃଭାଷାରେ ନିଜ ମାଟିର ପୁଟ ଦେଇ ଆପଣା ମଣିଷର କାହାଣୀ କହିବା ପାଇଁ ଚେଷ୍ଟାକଲେ ସାରଳା ଦାସ । ଐଶ୍ୱର୍ଯ୍ୟର ଦାରିଦ୍ର୍ୟ ଭିତରେ ଛୁଟି ଉଠିଲା ଦାରିଦ୍ର୍ୟର ଐଶ୍ୱର୍ଯ୍ୟ । ପୁରାଣ ସାଧନା ଭିତରେ ବି କୃଷକ ସନ୍ତାନ ଥୋଇଗଲା ସାହିତ୍ୟର ଶାଶ୍ୱତ ଧାନଗଦା । ଦେବତାର ମନ୍ଦିର ଉପରେ ମାନବର ଧ୍ୱଜା ଉଡାଇ ବ୍ୟାସଦେବଙ୍କ ମହାଭାରତର ଖ୍ରୀ:ପୂ: ୧୫୦୦ ବର୍ଷର ପୁରାଣ ଚିତ୍ରକୁ

ପଂଚଦଶ ଶତାବ୍ଦୀର ଉତ୍କଳୀୟ ପରିବେଶରେ କଳ୍ପନାର ଆବରଣ ତଳୁ ବାସ୍ତବତାର ନିଛକ ଛବି ପ୍ରତ୍ୟେକ ଛତ୍ରରେ ବୈପ୍ଳବିକ ସ୍ୱରତୋଳି ନୀତିର ନିହାଣରେ ପାଲିସ କରି ମୌଳିକ ସାହିତ୍ୟ ସୃଷ୍ଟି କରିଛନ୍ତି ।

ଉତ୍କଳର ବ୍ୟାସ ସାରଳା ଦାସଙ୍କର ମହାଭାରତ ଶିଳାତୀର୍ଥ କୋଣାର୍କ ଭଳି ଅନ୍ୟ ଏକ 'ଲିପି କୋଣାର୍କ' 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ' ଲୋକକଥା ଓ ଗ୍ରାମ୍ୟ ଭାଷାରେ ମହାଭାରତ ପ୍ରମାଣିତ ଶବ୍ଦାଳଙ୍କାର ପରି ସାଡମ୍ବର ଭାରାକ୍ରାନ୍ତ ପରିଚ୍ଛଦ ପରିଧାନ ନକରାଇ ସରଳ ଶୁକ୍ଳ ବସନରେ ସେ ଯେଉଁ ରସ ସାହିତ୍ୟ ଉପସ୍ଥାପିତ କରିଛନ୍ତି, ତାହା ଅତୁଳନୀୟ । ଦୀର୍ଘ ୫୦୦ ବର୍ଷ ପୂର୍ବରୁ ସାରଳା ଦାସ ଯେଉଁ ଓଡିଆ ଭାଷାର ଚାରାଟିଏ ପୋତିଥିଲେ ତାହା ଆଜି ଓଡିଆ ସାହିତ୍ୟ ରାଜ୍ୟରେ ବିରାଟ ଓ ବିଶାଳ ଦ୍ରୁମରେ ପରିଣତ ହୋଇଛି । ସାରଳା ଦାସ ପ୍ରଗାଢ଼ ଭକ୍ତିରେ ପ୍ରେମିକର ଉନ୍ମାଦନା ନେଇ ତାଙ୍କ ସୃଷ୍ଟି ସଂପଦକୁ ବଳିଷ୍ଠ କରିଛନ୍ତି । ସଂସ୍କୃତ ମହାଭାରତ ପ୍ରସାଦ ମଧ୍ୟରେ ଓଡିଆ ମାଟିର ସଚ୍ଚ ସାଧକ ଓଡିଆ ଭାଷାରେ କେତେ କଥା କହି ନାହାନ୍ତି ସତେ!

ସାରଳା ଦାସ ସଂସ୍କୃତ ମହାଭାରତକୁ ଅନୁବାଦ ନକରି ରୂପାନ୍ତର କରିଛନ୍ତି । ସାରଳାଙ୍କ କୃତି ପ୍ରାୟ ସାରା ଓଡିଆ ଜାତି ପାଖରୁ ସ୍ୱୀକୃତ ପାଇଛି । ଆଦର୍ଶ ନାୟକ ପାଣ୍ଡବକୁଳ ତିଳକ ଧର୍ମରାଜ ଯଧିଷ୍ଠିର, ଦ୍ୱିତୀକୃଷ୍ଣ–ଧନଞ୍ଜୟ, ମହାବଳୀ ଭୀମା, ରୂପବାନ ନକୁଳ, ସର୍ବଦର୍ଶୀ ସହଦେବ, କାବ୍ୟ ନାୟିକା ରମଣୀ କୁଳ ତିଳକ ଦ୍ରୌପଦୀ, ଖଳନାୟକ ସମ୍ରାଟ୍ ଶକୁନି, ଇଂଜିନିୟର ମହାମାନୀ ମାନଗୋବିନ୍ଦ ଦୁର୍ଯ୍ୟୋଧନ ଓ ଅନ୍ୟାନ୍ୟ ବହୁ ଚରିତ୍ର ସମାବେଶରେ ସାରଳା ମହାଭାରତ ଭାରତବର୍ଷର ବିଶାଳ ଗ୍ରନ୍ଥ ଓ ବିଶ୍ୱବନ୍ଦନୀୟ ।

ଅଖିଳ ଜ୍ଞାନର ଗନ୍ତାଘର ପୁରାଣ ଶ୍ରେଷ୍ଠ ମହୋଦଧି ମହାଭାରତ । ମହାଭାରତର ଅମୀୟ ସୁଧାରସରେ ଉତ୍କଳର ପୁରପଲ୍ଲୀ ପ୍ଲାବିତ ହୋଇଛି । ଜଗତ ସ୍ତବ୍ଧ ଚକିତ ହୋଇଛି । କସ୍ତୁରିକା ମୃଗ ନିଜ ନାଭିସ୍ଥିତ କସ୍ତୁରୀର ସୁଗନ୍ଧରେ ବିଭ୍ରାନ୍ତ ହୋଇ ବନରୁ ବନାନ୍ତର, ଏହି ଅଭୂତପୂର୍ବ ମୂଳ ଉତ୍ସ ସୁରଭି ଖୋଜି ବୁଲିବା ପରି ମହାକବି ସାରଳା ଦାସ ନିଜର କୃତିତ୍ୱର ବିସ୍ମିତ ଓ ବିମୁଗ୍ଧ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ

